# ଅଲୌକିକ ଦର୍ପଣ

ଓଡ଼ିଆ ଉପନ୍ୟାସର ଏକ ଅନନ୍ୟ ସମାଲୋଚନା

ସଂପାଦନା

ଡକ୍ଟର ସଂତୋଷ କୁମାର ରଥ
ଶ୍ରୀ ଅରୁଣ କୁମାର ନାଏକ

ଲେଖକ ପରିଷଦ, ବଲାଂଗୀର

ବଲାଂଗୀର

# - ଅଲୌକିକ ଦର୍ପଣ -

ସମ୍ପାଦନା :

**ଡକ୍ଟର ସଂତୋଷ କୁମାର ରଥ**

**ଶ୍ରୀ ଅରୁଣ କୁମାର ନାଏକ**

ପ୍ରକାଶକ :

ଲେଖକ ପରିଷଦ, ବଲାଂଗୀର

ପ୍ରଚ୍ଛଦ :

**ଶ୍ରୀ ପଦ୍ମନାଭ ମିଶ୍ର**

ମୁଦ୍ରଣ :

**କଳାଶ୍ରୀ ଆର୍ଟ ପ୍ରିଣ୍ଟର୍ସ,**

ପାଟଣାଗଡ଼

ପ୍ରଥମ ପ୍ରକାଶ :

ଡ଼ିସେମ୍ବର ୩୧, ୧୯୮୮

ମୂଲ୍ୟ- **୩୫ ଟଂକା**

**ALAUKIKA DARPANA**

Editor :

Dr. Santosh Kumar Ratha

Shree Arun Kumar Naik

Publisher :

*Lekhaka Parishad, Bolangir*

Printers :

*Kalashree Art Printers,*

*Patnagarh*

First Edition :

***31st, December 1988***

Price- Rs. 35-00



ଲେଖନମୁଦ୍ରାରେ ତପଃଶୀଳ

ସବୁସମୟର

ଅଗଣିତ ତପସ୍ୱୀମାନଙ୍କ

ହାତରେ

ଲେଖକ ପରିଷଦ,
ବଲାଂଗୀର

# ସୂଚୀ

☐ ଓଡ଼ିଆ ଉପନ୍ୟାସ ଶହେଟି ଶରତ୍‌ର ଶିଶୁ । ସମୟର ପ୍ରତିଲୋମରେ ତା'ର ଆଦିରୂପ କେଉଁ ପ୍ରଗଳ୍‌ଭ ଗଳ୍ପସାଗରର ଅସରନ୍ତି ଗଳ୍ପରେ ଖୋଜା-ଯାଇପାରେ, କେଉଁ ଆଦିମ ଗଳ୍ପର ଉତ୍କଣ୍ଠିତ ମୁହୂର୍ତ୍ତରେ ଅସ୍ପଷ୍ଟ ଆଲୁଅପରି ଝିକ୍ ଝିକ୍ କରେ ଉପନ୍ୟାସର ଶାଶ୍ୱତ ଲକ୍ଷଣ, ତେବେବି ଓଡ଼ିଆ ଉପନ୍ୟାସ ରଚନାର ସଚେତନ ପ୍ରଚେଷ୍ଟା ଶହେ ବର୍ଷ ତଳର କଥା । ଉଣେଇଶ ଅକ୍ଟୋବର, ୧୮୮୮ ରେ ଉମେଶ ଚନ୍ଦ୍ର ସରକାର (୧୯୧୪) 'ପଦ୍ମମାଳୀ'ର ଭୂମିକାରେ ଲେଖିଥିଲେ :

"ଉତ୍କଳ ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ସ୍ୱକପୋଳକଳ୍ପିତ ଗ୍ରନ୍ଥ ରଚନା କରିବାର ଉଦ୍ୟମକୁ ଅସୀମ ସାହସିକତାର କାର୍ଯ୍ୟ ବୋଲିବାକୁ ହେବ । ଆମ୍ଭେ ଏ ଅସୀମ ସାହସିକତା- କାର୍ଯ୍ୟର ଅନୁଷ୍ଠାନ କରିଅଛୁଁ । ଉତ୍କଳଭଷାନଭିଜ୍ଞ ଆମ୍ଭେ ହାସ୍ୟାସ୍ପଦ ହେବୁ ଜାଣି ସୁଦ୍ଧା, ଏ ଅନୁଷ୍ଠାନରେ ବ୍ରତୀ ହୋଇଅଛୁଁ । ବ୍ରତ ସଫଳ ବା ନିଷ୍ଫଳ ହେଉ ଆମ୍ଭେ ଆଉ ପଶ୍ଚାଦ୍‌ପଦ ହୋଇ ନପାରୁଁ । ଜନମାନସର ପ୍ରୀତି ସମ୍ପାଦନ ଓ ଉତ୍କଳ ସାହିତ୍ୟର ଗୌରବ ବର୍ଦ୍ଧନକୁ ଲକ୍ଷ୍ୟ କରି ଅକୃତକାର୍ଯ୍ୟ ହେଲେହେଁ, ଏପରି ମହତ୍ କାର୍ଯ୍ୟର ଅନୁଷ୍ଠାନ କରିଥିଲୁ; ଏହା ଆମ୍ଭର ନୈରାଶ୍ୟର ସମୟରେ ଶାନ୍ତିପ୍ରଦାନ କରିବ ।

ଐତିହାସିକ ଘଟଣାବଳମ୍ବିତ ହୋଇ କୌଣସି ଉପନ୍ୟାସ ଉତ୍କଳ ଭଷାରେ ରଚିତ ହୋଇ ଥିବାର ଆମ୍ଭଙ୍କୁ ଜଣାନାହିଁ । ଉତ୍କଳ ଦେଶର ଇତି-ହାସ ପର୍ଯ୍ୟାଲୋଚନା କଲେ ଭବୁକ ଯୁବକ ଐତିହାସିକ ଉପନ୍ୟାସ ଲେଖିବାକୁ ଉପକରଣ ଅଭବ ଦେଖିବେ ନାହିଁ । ଆମ୍ଭେ କେବଳ ଏହି କ୍ଷୁଦ୍ର ଆୟତନ ଓ ଅପେକ୍ଷାକୃତ ଅଖ୍ୟାତନାମା ରାଜ୍ୟର ସ୍ୱଳ୍ପବ୍ୟାପୀ ଘଟନାକୁ ଅବଲମ୍ବନ କରି ଏ ଗ୍ରନ୍ଥ ରଚନା କରିଅଛୁଁ ଓ ଏଥିରେ ସମ୍ପୂର୍ଣ୍ଣ ମନୋରଥ ହୋଇ ନଥିଲେ, ଆମ୍ଭଠାରୁ ଅଧିକ କୃତବିଦ୍ୟ ଯୁବକ ଆମ୍ଭର ପ୍ରଦର୍ଶିତ ମାର୍ଗ ଅବଲମ୍ବନ କରି କୃତକାର୍ଯ୍ୟ ହୋଇ ପାରିବେ ଓ ତଦ୍ଦ୍ୱାରା ଉତ୍କଳ ଭଷାକୁ ସମଧିକ ଗୌରବାନ୍ୱିତ କରି ଆମ୍ଭର ନିଷ୍ଫଳତାର ସମୁଚିତ କ୍ଷତିପୂରଣ କରିବେ ।"

ପ୍ରାୟ ପଚିଶ ବର୍ଷ ପରେ ଦ୍ୱିତୀୟ ସଂସ୍କରଣ । ଭୂମିକାରେ ଲେଖାଥିଲେ : 'ପଦ୍ମମାଳୀ' ଉତ୍କଳଭାଷାର ଏକମାତ୍ର ଐତିହାସିକ ଉପନ୍ୟାସ । ପ୍ରାୟ ଅର୍ଦ୍ଧାର୍ଦ୍ଧ ଶତାବ୍ଦୀ ପରେ ପୁନଃ ପ୍ରକାଶିତ ହୋଇଥିଲେ ହେଁ, ପଦ୍ମମାଳୀ ପ୍ରତିଦ୍ୱନ୍ଦିନୀ କେହି ଉତ୍କଳ ଭାଷାର ଅଙ୍ଗପୁଷ୍ଟ କରିଥିବାର ଆମ୍ଭଙ୍କୁ ଜଣାନାହିଁ । ଦୁଇଗୋଟି ସମସାମୟିକ ଐତିହାସିକ ଘଟନାର ସମନ୍ୱୟରେ 'ପଦ୍ମମାଳୀ' ରଚିତ ହୋଇଅଛି । ନୀଳଗିରି ରାଜ୍ୟର କର୍ମଚାରୀମାନଙ୍କ ଦ୍ୱାରା ପାଞ୍ଚଗଡ଼ର ଆକ୍ରମଣ– ଏକଗୋଟି, ଅପରଟି ହରିହର ଭ୍ରମରବର ବାବୁଙ୍କ ଦ୍ୱାରା ନୀଳଗିରି ଆକ୍ରମଣ । ପୁରାତତ୍ତ୍ୱ ଅନୁସନ୍ଧିତ୍ସୁ ପାଠକ ସ୍ୱଳ୍ପଆୟାସ ବ୍ୟୟକଲେ, ଏହି ଐତିହାସିକ ଘଟନାଦ୍ୱୟର ମୌଳିକତା ଅବଗତ ହୋଇ ପାରିବେ । କ୍ରମେ ଅନ୍ୟାନ୍ୟ ଇତିବୃତ୍ତ ଗ୍ରନ୍ଥ ମଧ୍ୟରେ ସନ୍ନିବେଶିତ ହୋଇଅଛି; ଯଥା ନୀଳଗିରି ରାଜ୍ୟର ଇତିହାସ, ପାଞ୍ଚଗଡ଼ ନୀଳଗିରିର ଅଧିକାରରୁ ଚ୍ୟୁତହୋଇ ଗଭର୍ଣ୍ଣମେଣ୍ଟଙ୍କର ଖାସ୍‌ମାହାଲଭୁକ୍ତ ହେବା, ପାଞ୍ଚଗଡ ଲୁଣ୍ଠନକାରୀଙ୍କର ଓ ନୀଳଗିରି ଆକ୍ରମଣକାରୀଙ୍କର, ବାଲେଶ୍ୱର ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ହେନେରି ରିକେଟ୍‌ସଙ୍କ ଦ୍ୱାରା ବିଚାର ଇତ୍ୟାଦି । ଏ ସକଳ ବର୍ଣ୍ଣନାରେ ଏକ ପକ୍ଷରେ ଯେପରି ଇତିହାସର ଏକବର୍ଣ୍ଣର ଅପଳାପ କରିନାହୁଁ, ଅନ୍ୟ ପକ୍ଷରେ, ପାଠକମାନଙ୍କ ଚିତ୍ତରଞ୍ଜନ କରିବାକୁ ସମଧିକ ଯତ୍ନବାନ୍ ହୋଇଅଛୁଁ । ବର୍ତ୍ତମାନ ସଂସ୍କରଣରେ ପୁସ୍ତକ-ଖଣ୍ଡି ଅନେକ ପରିମାଣରେ ସଂଶୋଧିତ ଓ ପରିବର୍ଦ୍ଧିତ ହୋଇଅଛି, ସେପରି କରିବାରେ ତାହାର ଚିତ୍ତାକର୍ଷିତା ବର୍ଦ୍ଧିତ ହୋଇଅଛିକି ନା, ଏହା ପାଠକମାନେ ବିଚାର କରିବେ । କଳେବର ବର୍ଦ୍ଧିତ ହୋଇଥିବାରୁ ମୂଲ୍ୟମଧ୍ୟ କିଞ୍ଚିତ ବୃଦ୍ଧି କରିବାକୁ ବାଧ୍ୟ ହେଲୁ ।"

ବହୁ ଔପନ୍ୟାସିକଙ୍କର ମହାର୍ଘ ପ୍ରଚେଷ୍ଟା ତା' ପୂର୍ବରୁ ବିଫଳ ହୋଇଛି । ପତ୍ର ପତ୍ରିକାକୁ ଆଶ୍ରାକରି ଗଢ଼ି ଉଠୁଥିବା ଓଡ଼ିଆ ସାହିତ୍ୟର ଏହି ନୂତନ ପ୍ରଭାଗ ପ୍ରଥମ ପୂର୍ଣ୍ଣାଙ୍ଗ ରୂପ ପାଇବା ବିଳମ୍ବିତ ହୋଇଛି । 'ସୌଦାମିନୀ' (୧୮୭୭) ସେମିତି ଏକ ଅସମ୍ପୂର୍ଣ୍ଣ ଶିଳ୍ପ ପ୍ରତିମା ଯାହାର ସମ୍ପର୍କରେ ତାର ସ୍ରଷ୍ଟା ରାମଶଙ୍କର ରାୟ କହନ୍ତି : 'ସୌଦାମିନୀ' ଉପନ୍ୟାସ ଶେଷ ନୋହୁଣୁ ପତ୍ରିକାଟି (ଉତ୍କଳ ମଧୁପ, ୧୮୭୭–୭୮, ସମ୍ପାଦକ) ଗ୍ରାହକମାନଂଙ୍କ ରୀତିମତ ଦେୟ ଆଦାୟ ନ ହେବା ଯୋଗୁଁ କାଳ କବଳରେ ପଡ଼ିଥିଲା ।

ତତ୍କାଳୀନ ସ୍କୁଲ ବିଭାଗୀୟ ଡେପୁଟୀ ଇନ୍‌ସପେକ୍ଟରଙ୍କୁ ଉପନ୍ୟାସ ଖଣ୍ଡିକ ଦେଖାଇଥିଲି- ଆଶା ଥିଲା ଯେ ଏହା ବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଗୃହୀତ ହେଲେ ବ୍ୟୟ ଭାର ବହନକରି ପୁସ୍ତକାକାରରେ ଛପାଇବି, କାରଣ ସାଧାରଣ ପାଠକର ଅଭାବ ହେତୁ ଖର୍ଚ୍ଚ କରି ଛାପା କରିବା ବୃଥା । ଡେପୁଟୀ ଇନ୍‌ସପେକ୍ଟର ମହାଶୟ ପୁସ୍ତକ ରଚନାର ଭୂୟସୀ ପ୍ରଶଂସାକରି ଉପନ୍ୟାସ ପାଠ୍ୟ ପୁସ୍ତକ ହୋଇନପାରେ ବୋଲି ନିଗଣ୍ଡ କରିବାରୁ ମୁଁ ତାହା ପୁସ୍ତକାକାରରେ ଛାପା କରିବାକୁ ସାହସୀ ହୋଇନାହିଁ ଓ ତହିଁର ଶେଷାଂଶ କାଳକ୍ରମେ ହଜିଗଲା ।"

ଓଡ଼ିଆ ଉପନ୍ୟାସର ଆଦ୍ୟ ପ୍ରବାହ ଏମିତି ପାଠକୀୟ ଅନାଦୃତ ଓ ନିସ୍ପୃହ ସ୍ରଷ୍ଟାର ଅନୁତ୍ସର୍ଗୀକୃତ ପ୍ରଚେଷ୍ଟାରେ ମନ୍ଥର । ସନ୍ଦିଗ୍ଧ ଶିଳ୍ପରୂପ ଓ ଅନିଶ୍ଚିତ ଆଦର୍ଶ ବହନ କରି ସେ ସମୟର ଔପନ୍ୟାସିକତା ଯେମିତି କେଉଁ ମହାନ ସ୍ରଷ୍ଟାର ଭବ୍ୟ ଆଗମନକୁ ପ୍ରତୀକ୍ଷାଶୀଳ । ଏକ ସନ୍ଦିଗ୍ଧ ଓ ସଙ୍କ୍ରମଣଶୀଳ କାଳରେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଫକୀର ମୋହନ ସେନାପତିଙ୍କ (୧୮୪୩-୧୯୧୮) ଆବିର୍ଭାବ ।

କଥାନକ ଗଠନ, ଚରିତ୍ର ବିନ୍ୟାସ, କଥାୟନ ଓ ଅନ୍ୟାନ୍ୟ ଶୈଳ୍ପିକତା ଦୃଷ୍ଟିରୁ ଫକୀର ମୋହନ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ବିସ୍ମୟ । ସ୍ୱାଭାବିକ କଥକ ସୁଲଭ ଶୈଳୀ ମାଧ୍ୟମରେ ସେ ପ୍ରାଚୀନ ଓଡ଼ିଆ କଥା ପରମ୍ପରା ସହ ଆଧୁନିକ ଉପନ୍ୟାସ ଶିଳ୍ପର ସମନ୍ୱୟ ସ୍ଥାପନ କରିଛନ୍ତି । ସମକାଳୀନ ପାଠକୀୟ ରୁଚି ଓ ଓଡ଼ିଆ କଥନକଳାକୁ ସ୍ପର୍ଶ କରି ଭଳି ଶିଳ୍ପ ରୀତିରେ ଉପସ୍ଥାପନ କରି ବିଦେଶାଗତ ଏକ ନୂତନ ସାହିତ୍ୟିକ ପ୍ରଭାବରେ ସେ ଆଣିଛନ୍ତି ଅପୂର୍ବ ସିଦ୍ଧି । ଓଡ଼ିଆ ଉପନ୍ୟାସକୁ ଏକ ନିର୍ଦ୍ଦିଷ୍ଟ ଓ ନିଖୁଣ ଛାଞ୍ଚ ଫକୀର ମୋହନଙ୍କ ଦାନ । ଓଡ଼ିଆ ଉପନ୍ୟାସର ପ୍ରାରମ୍ଭିକ କାଳରେ ଆହୁରି କେତେଜଣ ସ୍ରଷ୍ଟା ଅନନ୍ୟତା ଦାବୀ କରନ୍ତି । ଗୋପାଳ ବଲ୍ଲଭ ଦାସଙ୍କରଚିତ 'ଭୀମ ଭୂୟାଁ' (୧୯୦୮), ଦୟାନିଧି ମିଶ୍ରଙ୍କ ରଚିତ 'ନୟନ-ତାରା' (୧୯୧୫) କୁନ୍ତଳା କୁମାରୀ ସାବତଙ୍କ 'ରଘୁ ଅରକ୍ଷିତ' (୧୯୨୮), କବି ନନ୍ଦ କିଶୋର ବଳଙ୍କ 'କନକଲତା' (୧୯୧୫) କାଳନ୍ଦୀ ଚରଣଙ୍କ ପ୍ରସିଦ୍ଧ ଉପନ୍ୟାସ ମାଟିର ମଣିଷ (୧୯୩୧), ଏକାଧିକ ଲେଖକଙ୍କ

ଲେଖାର ସମାବେଶରେ ଏକ ଗ୍ରୁପ୍ ଫଟୋଗ୍ରାଫ ପରି 'ବାସନ୍ତୀ' (୧୯୩୧) ଏବଂ ସମସ୍ତ ଚେଷ୍ଟା ସତ୍ତ୍ୱେ ଅସଂପୂର୍ଣ୍ଣ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'କଣାମାମୁଁ' ।

ଓଡ଼ିଆ ଉପନ୍ୟାସର ପ୍ରଥମ ଅର୍ଦ୍ଧ ଶତକର (୧୮୮୮ ରୁ ୧୯୩୮) ସିଦ୍ଧି ନିରୁତ୍ସାହକର । ନୂଆଁ ଗଢି ଉଠୁଥିବା ପାଠକ ସମାଜକୁ ଆଗ୍ରହାନ୍ୱିତ ଓ ଆକର୍ଷିତ କରିବା ପରି ଖୁବ୍ କମ୍ ଉପନ୍ୟାସ ସେ ସମୟରେ ଲେଖା ହୋଇଛି । ନୂତନ କାହାଣୀ ଅଥବା ଶୈଳିକ ବିଚିତ୍ରତାରେ ପାଠକୀୟ ମାନସିକତାକୁ ଆଚ୍ଛନ୍ନ କରିଛି ଓ କାଳୋତ୍ତୀର୍ଣ୍ଣ ହୋଇ ପାରିଛି ମାତ୍ର କେତୋଟି ଉପନ୍ୟାସ । 'ଲକଲଇତା ' (୧୯୧୬–୨୫) 'ମନେ ମନେ' (୧୯୨୬) 'ମଲଜହ୍ନ' (୧୯୨୮) 'ପ୍ରତିହିଂସା' (୧୯୩୧), 'ମାଟିର ମଣିଷ' (୧୯୩୧), 'ବାସନ୍ତୀ' (୧୯୩୧) 'ପ୍ରତିଭା' (୧୯୩୫), 'କଣାମାମୁଁ' (୧୯୩୭–୪୭) ଇତ୍ୟାଦି ସେ ସମୟରେ ଲେଖା ହୋଇଥିବା କେତୋଟି ଓଡ଼ିଆ ଉପନ୍ୟାସ ସାହିତ୍ୟର ସାରସ୍ୱତ ରତ୍ନ ।

ଓଡ଼ିଆ ଉପନ୍ୟାସର ପ୍ରଥମ ଅର୍ଦ୍ଧଶତକର ଶେଷାଂଶରେ ଉପନ୍ୟାସର ଅଭାବବୋଧ ସହୃଦୟ ସାହିତ୍ୟ ପ୍ରେମୀମାନଙ୍କୁ ମର୍ମାହତ କରିଥିଲା । ଏଣୁ ରାଜନୈତିକ ବ୍ୟସ୍ତତା ଭିତରେ ହରେକୃଷ୍ଣ ମହତାବ ସାହିତ୍ୟ ସାଧନା କରିଥିଲେ, ଉପନ୍ୟାସ ଲେଖୁଥିଲେ । ପ୍ରସିଦ୍ଧ ପାଶ୍ଚାତ୍ୟ ଉପନ୍ୟାସ ଗୁଡ଼ିକର ଛାୟାରେ ଗୋଦାବରୀଶ ମିଶ୍ର ଲେଖୁଥିଲେ 'ଘଟାନ୍ତର', 'ଅଭାଗିନୀ', ପରି କେତୋଟି ଉପନ୍ୟାସ । ଏହି ଅଭାବବୋଧ ହିଁ ପ୍ରେରଣିତ କଲା ତିନିଜଣ ମହାନ ସ୍ରଷ୍ଟାଙ୍କୁ : କାହ୍ନୁଚରଣ ମହାନ୍ତି (୧୯୦୬), ଗୋପୀନାଥ ମହାନ୍ତି (୧୯୧୪) ଓ ସୁରେନ୍ଦ୍ର ମହାନ୍ତି (୧୯୨୦) । ଓଡ଼ିଆ ଔପନ୍ୟାସିକତାର ଦ୍ୱିତୀୟାର୍ଦ୍ଧ ଏହି ମହତ୍ ତ୍ରୟୀଙ୍କ ଦାନରେ ସମୃଦ୍ଧ । ସମୟକ୍ରମେ ନୂତନ ପ୍ରତିଭାଙ୍କ ଆଗମନରେ ଓଡ଼ିଆ ଉପନ୍ୟାସ ସାହିତ୍ୟ ଏବେ ବର୍ଣ୍ଣିଳ ଓ ବିଚିତ୍ର ।

□ ଓଡ଼ିଆ ଉପନ୍ୟାସର ଶହେ ବର୍ଷ ବିତିଯାଇଛି । ଶହେ ବର୍ଷ ହେଲା ଓଡ଼ିଆ ଜାତିର ସ୍ୱରୂପ ଓ ସ୍ୱପ୍ନକୁ ରୂପାୟିତ କରି ଆସୁଛି ଓଡ଼ିଆ ଉପନ୍ୟାସ । ଏ ଅବସରରେ କିଛି ଅନ୍ତରଂଗ ଆଲୋଚନା ଆମର ଉଦ୍ଦେଶ୍ୟ । ସାହିତ୍ୟ ଆଲୋଚନାରେ ଏକ ତରଫା ବିଚାରର ଅନ୍ତ ନାହିଁ । ସ୍ରଷ୍ଟାଙ୍କୁ ଏକାନ୍ତ ଉପେକ୍ଷା କରି ସମାଲୋଚକୀୟ ସୁବିଧାରେ ସାହିତ୍ୟର ମୂଲ୍ୟାୟନ ଜାରି ରହିଛି । ସୃଜନ ପରେ ସ୍ରଷ୍ଟା ଏକ ଅବାନ୍ତର ଉପାଦାନ, ତା'ର ବ୍ୟକ୍ତିସତ୍ତାଠାରୁ କବିସତ୍ତା ହିଁ ଆମର ପ୍ରିୟ ଉପାଦେୟ, ଏପ୍ରକାର ବିଶ୍ୱାସ ପୁରକାଳରୁ ଗଢ଼ି ଆସୁଛି । ସୃଷ୍ଟି ସଂପର୍କରେ ସୃଜନ କର୍ମର ରହସ୍ୟ– ରୋମାଂଚ ସଂପର୍କରେ ପ୍ରଥମ ପୁଲକକୁ ଛାତିରେ ସାଇତି ରଖି ଲେଖକର ବ୍ୟକ୍ତିସତ୍ତା ଇତିହାସରେ ପୋତି ହୋଇଯାଇଛି ଚିରକାଳ ।

ଉପନ୍ୟାସ କ୍ଷେତ୍ରରେ ଏକଥା ଆହୁରି ମହନୀୟ ଓ ଆବଶ୍ୟକୀୟ । କାହିଁକି ନା ଅନନ୍ତ ଘଟଣା ସ୍ରୋତରୁ ଔପନ୍ୟାସିକ ହିଁ କାହାଣୀଟିଏ ବାଛେ, ଆପଣାର ମନ ମୁତାବକ ଗଢ଼େ । ଯେତିକି ପାଠକକୁ ଦିଏ ତତୋଧିକ ମାନସଲୋକରେ ଉହ୍ୟ ରଖେ, କେବେ ଜାଣତରେ କେବେ ପୁଣି ଅଜାଣତରେ । ସେହି ଉହ୍ୟଲୋକ, ସେହି ସମ୍ଭାବ୍ୟ ଜଗତ ସମସ୍ତଙ୍କ ପାଇଁ ଉହ୍ୟ ହିଁ ରହିଯାଏ । ଅନ୍ୟ କେଉଁ ଔପନ୍ୟାସିକ ଆଉ କେବେ ଅନ୍ୟ ଦିନେ ତାକୁ ଗୋଟେଇ ଆଣିବା ଅସମ୍ଭବ । ଅନନ୍ତ ଘଟଣାର ସ୍ରୋତରେ ଭିଡ଼ି ହୋଇଯାଏ ସେହି ସମ୍ଭାବନା । ଯଦି ଅନ୍ୟ କେବେ ତାହା ଆସେ ତାହା ଅନ୍ୟ ଏକ କାହାଣୀ, ଅନ୍ୟ ଏକ ସମ୍ଭାବ୍ୟ ଜଗତ, ଯହିଁରୁ କିଛି ଭିଡ଼ି ହୋଇ ଯିବ ହିଁ ଯିବ ପ୍ରାଚୀନ ଘଟଣାର ଅଲୌକିକ ସ୍ରୋତରେ ।

ଏ ଅନ୍ତରଂଗ ଆଲୋଚନା ତାକୁ ସଂଗ୍ରହ କରିବା ପାଇଁ ଏକ ସାମାନ୍ୟ ପ୍ରୟାସ । ଏ କର୍ମରେ ବିଫଳତା ଜାଣିହିଁ ଏହାର ଆରମ୍ଭ । ପ୍ରତିଟି ଔପନ୍ୟାସିକଂକୁ ଭେଟିଥିବା ଚରିତ୍ର ମୂଳତଃ ଜଣେ ପାଠକ । ସମାଲୋଚକର ସର୍ବଜ୍ଞାନ୍ତାପଣ ତା'ଠି ଅଭାବ । ତେବେ ନିଜର ବିଚାରବୋଧରେ ସବୁ ପାଠକ ଜଣେ ସମାଲୋଚକ ନୁହେଁ କି ? ଏଠି ବେଳେ ବେଳେ ତାହାହିଁ ହୋଇଛି । ସ୍ରଷ୍ଟା ପ୍ରତି ଅସୀମ ଶ୍ରଦ୍ଧାରୁ କେବେ ପୁଣି ଉଦ୍ଭୁରି ଆସୁଥିବା ଅବଦମିତ ସନ୍ଦେହରୁ ଜନ୍ମ ନେଇଛି ପ୍ରଶ୍ନ ସବୁ । ଆପଣଙ୍କ ଭିତରେ ବି କେବେ ଏଇ ପ୍ରଶ୍ନ ଉଠିଥିବ କିମ୍ବା ନିଜ ବିଚାରବୋଧରେ ତା'ର ଏକ ଉତ୍ତର ଖୋଜି ଦେଇଥିବ ।

□ ଲେଖକ ପରିଷଦର ଜନ୍ମ ୧୯୮୪ ରେ । ଯେତେଗୋଟି ଅଭିଜାତ ସାହିତ୍ୟ ଆସରରେ ଏହାର ଭୂମିକାକୁ ସୀମିତ ରଖିବା ପାଇଁ କେହି ବି ଗ୍ବହୁଁ ନଥିଲେ । ଯଦିଓ ଶ୍ରୀଯୁକ୍ତ ମନୋଜ ଦାସ, ଚନ୍ଦ୍ର ଶେଖର ରଥ, ଗଜେନ୍ଦ୍ର କିଶୋର ପଣ୍ଡା, ପ୍ରଫୁଲ୍ଲ କୁମାର ତ୍ରିପାଠୀ, କୃଷ୍ଣ ପ୍ରସାଦ ମିଶ୍ର, ଗଣେଶ୍ୱର ମିଶ୍ର ପରି ବହୁ ପ୍ରଖ୍ୟାତ ସାହିତ୍ୟିକଙ୍କୁ କୋଟୋଟି ଅବିସ୍ମରଣୀୟ ଆସରରେ ପାଇ ଆମେ ଧନ୍ୟ ହୋଇଛୁ । ଆମକୁ ପ୍ରେରଣିତ କରିଛି ସେମାନଙ୍କର ସାହଚର୍ଯ୍ୟ ଓ ଶ୍ରଦ୍ଧା । ସାହିତ୍ୟର ଦୂର ଦିଗନ୍ତ ଆଡକୁ ଅନ୍ୱେଷା ପାଇଁ ପ୍ରେରିତ କରିଛି ।

ଆମର ସୁଦୂର ଲକ୍ଷ୍ୟ ଆଡକୁ "ଅଲୌକିକ ଦର୍ପଣ" ଅନ୍ୟ– ଏକ ପଦକ୍ଷେପ । ଏହାର ପ୍ରସ୍ତୁତି, ବିନ୍ୟାସ, ପ୍ରଶ୍ନ ଓ ପ୍ରକାଶନ ସବୁ କିଛି ଏକ ମିଳିତ କର୍ମ । ସାକ୍ଷାତ୍‌କାର ସଂଗ୍ରହଠାରୁ ଅନୁଲିପି ଓ ପ୍ରୁଫ୍ ସଂଶୋଧନ ପର୍ଯ୍ୟନ୍ତ ସବୁବେଳେ ବହୁ ସତୀର୍ଥଙ୍କ ସହଯୋଗରେ ସମୃଦ୍ଧ । ସମ୍ମାନନୀୟ ଡକ୍‌ଟର ଅଜାମର ମଲ୍ଲ, ବନ୍ଧୁ ମନୋଜ କୁମାର ପଣ୍ଡା, ପ୍ରଦୀପ କୁମାର ମହାପାତ୍ର ଓ ଅଗ୍ରଜ ଦେବୀ ଦାସ ମିଶ୍ରଙ୍କୁ ଧନ୍ୟବାଦ ଦେବା ଅବାନ୍ତର, ଆମେ ସମସ୍ତେ ମିଶି ହିଁ 'ଅଲୌକିକ ଦର୍ପଣ'କୁ ପ୍ରସ୍ତୁତ କରୁଛୁ । ଅଗ୍ରଜ ପ୍ରତିମ ଶ୍ରୀଯୁକ୍ତ ସନାତନ ଠାକୁର ଓ ବନ୍ଧୁ ଗଗନ ମହାନ୍ତିଙ୍କ ଧୈର୍ଯ୍ୟ ଓ ନିଷ୍ଠା ଫଳରେ ହିଁ ଏ ସମସ୍ତ ସମ୍ଭବ ହୋଇଛି । କଳାଶ୍ରୀ ପ୍ରେସ, ପାଟଣାଗଡ ସତ୍ୱାଧିକାରୀ ଶ୍ରୀ ନବୀନ କିଶୋର ମେହେରଙ୍କ ପ୍ରଚେଷ୍ଟା ବହିଟିକୁ ସୁନ୍ଦରତର କରିଛି । "ଅଲୌକିକ ଦର୍ପଣ" କିଛି ପାଠକୀୟ ଜିଜ୍ଞାସାର ସମାପ୍ତି କରିପାରିଲେ ଆମ ସମସ୍ତଙ୍କ ଶ୍ରମ ସାର୍ଥକ ହେବ ।

ସଂତୋଷ କୁମାର ରଥ
ବଲାଂଗୀର

ବ୍ରଜ ବିହାରୀ ବହିଦାରଙ୍କୁ ସଚ୍ଚିଦାନନ୍ଦ ରାଉତରାୟ ଥରେ ଲେଖିଥିଲେ, ପ୍ରାୟ ପଚିଶ ବର୍ଷ ତଳେ : "ସୁଦୂର ବଲାଂଗୀରରେ ଆପଣ ସାଧନାରତ ।" ପ୍ରତିବାଦ କରିଥିଲେ ବ୍ରଜ ବିହାରୀ : "ସାହିତ୍ୟ ସାଧନାରେ ଦୂରତାର ପ୍ରଶ୍ନ ଅବାନ୍ତର ।" ତାପରେ ଏହି ଦୂରତା ବା କେଉଁଠୁ କେଉଁଠିକି । ସାହିତ୍ୟ କଣ କଟକ, ଭୁବନେଶ୍ୱରରେହିଁ ସୃଷ୍ଟି ହୁଏ ? ସାହିତ୍ୟ ସାଧନା ପାଇଁ ନଗର ନିକାଞ୍ଚନ ଏକା କଥା ।

ଏହି ବିଶ୍ୱାସର ସମ୍ବଳରେ ବଲାଂଗୀର ଜିଲ୍ଲା ଲେଖକ ପରିଷଦ ଓଡ଼ିଆ ଉପନ୍ୟାସର ଶତବାର୍ଷିକୀ ପାଳନ ପାଇଁ ପ୍ରାରମ୍ଭିକ ପ୍ରସ୍ତୁତି କରିଥିଲା ୧୯୮୬ ମସିହାରେ, ଆଜିକି ଦୁଇବର୍ଷ ତଳେ । ସୃଜନ କର୍ମରେ ଦୂରତାର ଯାହା ଭୂମିକା ଥାଉନା କାହିଁକି, ସାହିତ୍ୟ ଆଲୋଚନାବେଳେ ଏହି ଦୂରତାକୁ ଆମେ ମର୍ମେମର୍ମେ ଅନୁଭବ କଲୁଁ । ପ୍ରତିଟି ଔପନ୍ୟାସିକଙ୍କୁ ଚିଠି ଲେଖିବା, ଭେଟିବା, ତାଙ୍କଠୁ ମୂଲ୍ୟବାନ ଉତ୍ତରଟିଏ ପାଇବା ପାଇଁ ଦୀର୍ଘ ଅପେକ୍ଷା କରିବାବେଳେ ଦୂରତାହିଁ ଆମ ମଝିରେ ଛିଡା ହୋଇଛି । ଆମ ଚେଷ୍ଟାର ଅପୂର୍ଣ୍ଣତା ପଛରେ ଏହା ଏକତମ କାରଣ ।

ପାଠକୀୟ ସହୃଦୟତା ଓ ଔପନ୍ୟାସିକ ଶ୍ରଦ୍ଧା, ସାହିତ୍ୟ ସମାଲୋଚନାରୁ ଦୂରତା ଦୂରକରୁ ।

ବହୁ ଔପନ୍ୟାସିକ ଔପନ୍ୟାସିକାଙ୍କୁ ପ୍ରେରିତ ଏହି କେତୋଟି ପ୍ରଶ୍ନ ଓଡ଼ିଆ ଉପନ୍ୟାସର ଶତବାର୍ଷିକୀ ଅବସରରେ ଏକ ସର୍ବେକ୍ଷଣ ପାଇଁ ପ୍ରଚେଷ୍ଟା । ତାଙ୍କର ମୂଲ୍ୟବାନ ସମୟର ଅପବ୍ୟୟରେ ଉତ୍ତର ଦେଇଥିବା ଔପନ୍ୟାସିକ ଔପନ୍ୟାସିକାଙ୍କ ନିକଟରେ ଆମେ କୃତଜ୍ଞ । ପ୍ରଶ୍ନସବୁ ଏମିତି :

କ) ୧୮୮୮ ଠାରୁ ୧୯୮୮ ଦୀର୍ଘ ୧୦୦ଟି ବର୍ଷର ବ୍ୟବଧାନ । ଏହା ମଧ୍ୟରେ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ବହୁବିଧ ଉପନ୍ୟାସ ଲିଖିତ ହୋଇଛି । ଜଣେ ଔପନ୍ୟାସିକ ଭାବେ ଅନୁଭବ କରୁଛନ୍ତି କି ବିଗତ ୧୦୦ ବର୍ଷ ଭିତରେ ଯାହା କୁହାଯାଇଛି, ତା' ବାହାରେ ଅନୁକ୍ତ କାହାଣୀ ରହିଯାଇଛି ଯାହାକି ଉପନ୍ୟାସ ଭିତରକୁ ଆସିପାରିନି ?

ଖ) ସ୍ରଷ୍ଟାର ବ୍ୟକ୍ତିଗତ ଜୀବନାନୁଭୂତି ସହିତ ତାହାର ସୃଷ୍ଟିର ସମ୍ପର୍କ ଅବିଚ୍ଛେଦ୍ୟ । ଆପଣଙ୍କ ସୃଷ୍ଟିରେ ଆପଣଙ୍କ ଜୀବନର ବିପୁଳ ଅନୁଭୂତି କିପରି ପ୍ରତିଫଳିତ, କହିବେ କି ?

ଗ) ଲେଖକ ପାଠକ ପାଇଁ ମୁଖ୍ୟତଃ ଲେଖେ । ବିଗତ କିଛି ବର୍ଷ ହେଲା ଆମ ଭାଷାରେ ଉପନ୍ୟାସର ପ୍ରସାର ଓ ପ୍ରକାଶ ଆଶାନୁରୂପ ଘଟିନାହିଁ । ଆପଣ କଣ ମନେକରୁଛନ୍ତି ଯେ ପାଠକୀୟତା ଅଭାବରୁ ଉପନ୍ୟାସର ଦିନ କ୍ରମଶଃ ଶେଷ ହୋଇଗଲାଣି ।

ଘ) ଆପଣଙ୍କ ଉପନ୍ୟାସରେ କଥାବସ୍ତୁ ଓ ଶିଳ୍ପରୀତି ମଧ୍ୟରେ ଆପଣ କାହାକୁ ଅଧିକ ଗୁରୁତ୍ୱ ଦେଇ ଆସିଛନ୍ତି ?

ଙ) ବିଗତ ୧୦୦ ବର୍ଷ ଭିତରେ ଓଡ଼ିଶା, ଭାରତ ଓ ବିଶ୍ୱରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଛି । ସମୟକ୍ରମେ ସେ ଚିନ୍ତାଧାରା ସାହିତ୍ୟ ଜଗତକୁ ଅନୁପ୍ରବେଶ କରିଛି । ଉପନ୍ୟାସରେ ଏହି ସମୟଗତ ପ୍ରାଣସ୍ପନ୍ଦନ କିପରି ପରିସ୍ପନ୍ଦିତ ହୁଏ ଟିକିଏ ସୂଚନା ଦିଅନ୍ତୁ ।

ଚ) ଜଣେ ପ୍ରତିଷ୍ଠିତ ଔପନ୍ୟାସିକ କହନ୍ତି : ତାଙ୍କ ପାଇଁ ଉପନ୍ୟାସ ଲେଖା "ଗୋଟିଏ ପଥରକୁ ପାହାଡ ଉପରରୁ ଗଡେଇ ଦେଲା ପରି । ପ୍ରଥମରେ ଥାଏ କିଛି ପ୍ରୟାସ, ତାପରେ କାହାଣୀ, ଆହୁରି ଅନେକ ଛୋଟବଡ କାହାଣୀ ସହ ନିଜର ସମାପ୍ତି ଆଡକୁ ମୁହାଁଇଯାଏ ।" ଆପଣଙ୍କ ରଚନା ସମ୍ପର୍କରେ ନିଜସ୍ୱ ମତଟି କଣ ?

ଛ) ଆପଣଙ୍କ ଉପନ୍ୟାସ ବିରୁଦ୍ଧରେ ଆପଣଙ୍କ ପାଠକଗୋଷ୍ଠୀର ସବୁଠାରୁ ବଡ଼ ଅଭିଯୋଗଟି କଣ ? ପାଠକୀୟ ପ୍ରତିକ୍ରିୟାକୁ ଆପଣ କେମିତି ଗୁରୁତ୍ୱ ଦିଅନ୍ତି ?

ଜ) ଓଡ଼ିଆ ଉପନ୍ୟାସ ଶତବାର୍ଷିକୀ ପାଳନ ଅବସରରେ ଓଡ଼ିଶାର ପାଠକ ଓ ସହଲେଖକମାନଙ୍କ ପାଇଁ ଆପଣଙ୍କର ଶେଷ କଥାଟି କଣ ? □

ସେମାନେ ଲେଖୁଛନ୍ତି :

□ ନିତ୍ୟାନନ୍ଦ ମହାପାତ୍ର
ଖାରବେଳ ନଗର, ଭୁବନେଶ୍ୱର

କ) ଉପନ୍ୟାସ ସାମାଜିକ ଜୀବନର ପ୍ରତିଫଳନ ବହନ କରି ସୃଷ୍ଟି ହୋଇଥାଏ । ସୁତରାଂ ସମସ୍ତ ସମାନ ସାମାଜିକ ବୃତ୍ତିକୁ ଚିତ୍ରଣ କରିବା ପାଇଁ ଲେଖକ ସର୍ବଦା ଚେଷ୍ଟିତ । ମନୁଷ୍ୟ ଜୀବନର ଅନନ୍ତ କାହାଣୀ ବୋଲି କହିଲେ କେବଳ ଆଧ୍ୟାତ୍ମିକ ଚିନ୍ତାକୁହିଁ ବୁଝିବାକୁ ହେବ । ଆମ ଭଷାରେ ସଂସ୍କୃତ ଓ ପ୍ରାକୃତକୁ ମିଶାଇ ଯଦି ଚିନ୍ତା କରଯାଏ ତାହେଲେ ବୁଝିବାକୁ ହେବ ଯେ ଅନୁକ୍ତ କାହାଣୀ ବୋଲି କିଛି ନାହିଁ । କୌଣସି ବସ୍ତୁ ସମ୍ବନ୍ଧରେ ଅନୁକ୍ତ ହୋଇଥିବା ଚିନ୍ତା ମୋ

ଅନୁଭୂତିରେ ନାହିଁ କହିଲେ ଚଳେ । ତେବେ ଗୋଟିଏ କଥା ଏବେ ମନକୁ ଆସୁଛି, ତା ହେଉଛି ଓଡ଼ିଆ ଭଷାରେ ମୌଳିକ ରଚନାରେ ୟୁଟୋପିଆ [Utopia] ଜାତୀୟ ଲେଖା କ୍ୱଚିତ୍ ଦେଖା ଯାଇଥାଏ । ଏହି Utopian ଗ୍ରନ୍ଥମାନଙ୍କ ମଧ୍ୟରେ ଯେଉଁ ଅବାସ୍ତବ କଥାବସ୍ତୁ ପ୍ରୟୋଗ କରଯାଇଥାଏ ତା' ମଧ୍ୟରେ ଅତି ବାସ୍ତବ ବିଷୟ ଉତ୍‌ଥାପିତ ହୁଏ । ସେହି ଦିଗରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ହୋଇ ନାହିଁ ବୋଲି ଜଣାଯାଉଛି ।

ଖ) ଏହା ପାଠକ ଏବଂ ସମାଲୋଚକମାନଙ୍କର ଧ୍ୟେୟ । ଲେଖକର ମନୋବୃତ୍ତି ତା'ର ଶିଳ୍ପର ଆକୃତି ବା ପ୍ରକୃତି ବିଷୟରେ ସମାଲୋଚନା କରିବା ଦିଗକୁ ଦୃଷ୍ଟି ଦିଏ ନାହିଁ । ତେଣୁ ଏଭଳି ପ୍ରଶ୍ନ ମୋ ନିକଟରେ ଉତ୍ତର ଆଶା ରଖିବା ଅସମ୍ଭବ ।

ଗ) ଲେଖିବା ମୋର ସ୍ୱାଭବିକ ପ୍ରବୃତ୍ତି । ମୁଁ ଲେଖିଯାଏଁ, ଲେଖୁଥାଏଁ । କାହାରି ଭଲ ମନ୍ଦ କହିବାକୁ ଅପେକ୍ଷା କରେ ନାହିଁ । ତେବେ ଏକଥା ସତ୍ୟ ଯେ ମୋ ଲେଖା ସମ୍ବନ୍ଧରେ କାହାଠାରୁ ଭଲ କଥାଟିଏ ଶୁଣିଲେ ଆନନ୍ଦ ଲାଗେ । ଖରାପ ଲେଖା ବୋଲି କାହାଠାରୁ ଶୁଣିଥିଲେ ମୋର ଭବ କିପରି ହୋଇଥାଏ ସେକଥା ମୁଁ କହି ପାରିବି ନାହିଁ । ତେବେ ଧରି ନିଆଯାଉ ମୋର କୌଣସି ଲେଖାକୁ କେହି କେହି ନାପସନ୍ଦ କରି ଦିଅନ୍ତି ତାହା ଯେ ମୋର ନୂତନ ସୃଷ୍ଟି ସମ୍ବନ୍ଧରେ ପ୍ରତିକୂଳ ହେବ ସେ କଥା ମୁଁ ଭବି ପାରୁ ନାହିଁ । ଲେଖା ଗୋଟିଏ ପ୍ରବୃତ୍ତି । ସେ ପ୍ରବୃତ୍ତି ପୁଷ୍ଟ ହୁଏ ଉତ୍ତମ ଭବରେ ସମାଲୋଚିତ ହେଲେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ସମାଲୋଚିତ ହେଲେ ଯେ ସେ ପ୍ରବୃତ୍ତି ଲୋପପାଇ-ଯିବ ଏପରି ଧାରଣା ମୁଁ କରିପାରୁ ନାହିଁ । ଓଡ଼ିଆ ଭଷାରେ ଉପନ୍ୟାସ ସୃଷ୍ଟି ଅତି ଅଳ୍ପ କହିଲେ ଚଳେ । ତାର କାରଣ ଆମ ଦେଶରେ ସାକ୍ଷର ସଂଖ୍ୟା ଅତି ଅଳ୍ପ । ତାହା ଛଡା ସାକ୍ଷରମାନଙ୍କ ମଧ୍ୟରୁ ଅଧିକାଂଶ ସରକାରୀ ଚାକିରୀଭୁକ୍ତ । ଏମାନଙ୍କ ମଧ୍ୟରୁ ଯେଉଁମାନେ ଅଧିକ ଦରମା ଭୋଗ କରନ୍ତି ସେମାନଙ୍କ ଘରେ ଓଡ଼ିଆ ସମ୍ବାଦ ପତ୍ର ଛଡ଼ା ଓଡ଼ିଆର କୌଣସି ପୁସ୍ତକ ଦେଖିବାକୁ ମିଳେ ନାହିଁ । ତେଣୁ ଓଡ଼ିଆ ଉପନ୍ୟାସ, କବିତା କିମ୍ବା ପ୍ରବଂଧର

ପାଠକ ଅତି ଅଳ୍ପ କହିଲେ ଚଳେ । କେବଳ ମାତ୍ର ଶସ୍ତା ଉପନ୍ୟାସ ବା ଗୋଇନ୍ଦା ଶୃଙ୍ଖଳ୍ୟକର (Detective) ଉପନ୍ୟାସ ଏବଂ ସହଜ କାମଧର୍ମୀ ଉପନ୍ୟାସ ଗୁଡ଼ିକର ପ୍ରସାର ସଂଖ୍ୟା କ୍ରମଶଃ ବଢୁଥିବାର ଦେଖାଯାଏ । ଏହି ସବୁ ଗ୍ରନ୍ଥର ପ୍ରସାର ଶିଳ୍ପୋନ୍ନତି ସହରମାନଙ୍କରେ ବିଶେଷ ପରିଲକ୍ଷିତ ହୁଏ । ଏହି ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ରଚନାର ସ୍ୱାଗତିକା ଆଶା କରଯାଇ ନପାରେ । ତେବେ ଗୋଟିଏ କଥା ବିଚାର କଲେ ଆମର ଭବିଷ୍ୟତ ଯେ ଆଶାପ୍ରଦ ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟ ଜଗତରେ ଶିଶୁ ସାହିତ୍ୟ ପତ୍ରିକାମାନ ବିଶେଷ ଭାବରେ ପ୍ରସାର ଲାଭ କରୁଥିବା ଦେଖାଯାଏ । ଆମର ଭବିଷ୍ୟତ ଶିକ୍ଷିତ ବଂଶଧରମାନେ ଯଦି ଅଧିକ ଶିକ୍ଷା ପାଇବା ସଂଗେ ସଂଗେ ସେମାନଙ୍କ ଗୁରୁଜନମାନଙ୍କ ଭଳି ନିଜ ମାତୃଭାଷା ପ୍ରତି ବୀତସ୍ପୃହ ନ ହୁଅନ୍ତି ତେବେ ଓଡ଼ିଆ ସାହିତ୍ୟର ଉନ୍ନତି ସମ୍ଭାବନା ଆଶାନୁରୂପେ କରଯାଇପାରେ ।

ଘ) ଏହାର ଉତ୍ତର ଦେବା ଲେଖକ ପକ୍ଷରେ କଠିନ । ଦୁଇଟିରୁ କେଉଁଟିକୁ ଉଚ୍ଚ ସ୍ଥାନ ଦେବା ମାନସରେ ମୁଁ ସୃଷ୍ଟି କରି ନଥାଏ । ମୋର ସର୍ଜନାରେ କେତେବେଳେ କେଉଁଠି କେଉଁ ଅଂଶ ଗୁରୁତ୍ୱ ଲାଭ କରେ ତାହା ମୁଁ ଜାଣି ଶୁଣି କରିଥାଏଁ କି ନାହିଁ ମୋ ପକ୍ଷରେ କହିବା ଅସମ୍ଭବ ।

ଙ) ଏହା ସତ୍ୟ ଯେ ବହୁ ପରିବର୍ତ୍ତନ ସଂଘଟିତ ହୋଇଛି ଏବଂ ସମୟକ୍ରମେ ନୂଆ ଚିନ୍ତାଧାରା ଆସିଛି । ଉପନ୍ୟାସରେ ସମୟଗତ ପ୍ରାଣସ୍ପନ୍ଦନର ସୂଚନା ଦେବା ସହଜ ନୁହେଁ, କାରଣ ପ୍ରତ୍ୟେକ ଉପନ୍ୟାସରେ ସ୍ପନ୍ଦନର ସଂକ୍ଷିପ୍ତ ବା ବିସ୍ତାରିତ ସୂଚନା ଦେବା ସମ୍ଭବ ନୁହେଁ । ତେବେ ସ୍ପନ୍ଦନ ଯେ ରହିଛି ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ । ମାତ୍ର ସେ ସ୍ପନ୍ଦନର ଆଲେଖ୍ୟ ସହଜ ନୁହେଁ ।

ଚ) ଲେଖକଙ୍କର ଏ ଅନୁଭବ ପ୍ରତି ମୋର ସହାନୁଭୂତି ନାହିଁ । ମୋ ଜାଣିବାରେ ଉପନ୍ୟାସର ଧାରା ପ୍ରବହମାନ ସ୍ରୋତସ୍ୱିନୀ ପରି ପର୍ବତ ଉପରୁ ସମୁଦ୍ର ଗର୍ଭକୁ ଝରିଯାଏ । ସମୁଦ୍ରର ବିଶାଳତା ହିଁ ସୃଷ୍ଟିର ସାର୍ଥକତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଛ) ମୋର ପ୍ରଥମ ପ୍ରଶ୍ନର ଉତ୍ତର ଗୁଡ଼ିକରେ ଯାହା ହିଁ କହିଛି, ତାହାହିଁ ଏ ପ୍ରଶ୍ନରେ ମୋର ଉତ୍ତର ।

ଚ) ମୁଁ ଉପଦେଷ୍ଟା ଆସନରେ ନିଜକୁ ବସାଇବାକୁ ଚାହେଁ ନାହିଁ । ସହଲେଖକମାନଂକୁ ମୋର କିଛି କହିବାର ନାହିଁ । ପାଠକମାନଂକୁ ମୋର ଏତିକି ନିବେଦନ, ସେମାନେ ମୋତେ ବୁଝିବାକୁ ଚେଷ୍ଟା କରନ୍ତୁ । ଚେଷ୍ଟା କଲେ ମୋ ଲେଖାକୁ ବୁଝିବାଠାରୁ ମୋତେ ଆହୁରି ଭଲ ଭାବରେ ବୁଝି ପାରିବେ । ମୁଁ ମୋର ଆତ୍ମ-ଜୀବନ ଲେଖି ନାହିଁ, ଲେଖିବାକୁ ଚାହେଁ ମଧ୍ୟ ନାହିଁ । ମୋ ଲେଖାମାନଂକ ମଧ୍ୟରେ ଯଦି ମୋ ଜୀବନର ପ୍ରତିଫଳନ ହୋଇ ନଥାଏ ତା'ହେଲେ ତାହାକୁ ଲେଖା ମଧ୍ୟରେ ଗଣ୍ୟ କରିବାର ଦାବୀ ମୁଁ କରି ପାରିବି ନାହିଁ । ○

○ ଫତୁରା ନନ୍ଦ
ଡଗର ପ୍ରେସ, କଟକ

କ) ସ୍ୱାଧୀନ, ନିର୍ଭୀକ ଓ ନିରପେକ୍ଷ ଚିନ୍ତନ ବ୍ୟତୀତ ଆଉ ସବୁ କିଛି ବିଷୟ ଆମ ଉପନ୍ୟାସମାନଂକରେ ଜୁହା ସରିଛି ।

ଖ) ମୋ ଜୀବନରେ ଅନୁଭୂତି ଖୁବ୍ ବ୍ୟାପକ ବା ବିପୁଳ ନୁହେଁ । ପୁନଶ୍ଚ ମୋ ଜୀବନର ଅନୁଭୂତି କିପରି ପ୍ରତିଫଳିତ ହୋଇଛି, ତାହା ମୁଁ କହିବା ଅପେକ୍ଷା ପାଠକ ବା ଆଲୋଚକମାନଂକଠାରୁ ଶୁଣିବାକୁ ଇଚ୍ଛା କରେ ।

ଗ) ଉପନ୍ୟାସର ଦିନ ସରିନାହିଁ । ଓଡ଼ିଆ ଔପନ୍ୟାସିକ, ପାଠକର ଭାବ ଅପେକ୍ଷା ନିଜ ଭାବପ୍ରବଣତାକୁ ଅଧିକ ଗୁରୁତ୍ୱ ଦେଉଥିବାରୁ ଲୋକପ୍ରିୟତା ହରଉଛି ।

ଘ) ମୁଁ ଚରିତ୍ର ଓ କଥା ବସ୍ତୁକୁ ଅଧିକ ଗୁରୁତ୍ୱ ଦିଏ ।

ଙ) ସମୟର ସମସ୍ତ ପ୍ରଭାବ ଓ ଚିନ୍ତାଧାରାର ନୂତନତା ସତ୍ତ୍ୱେ ମଣିଷର ଅନ୍ତର୍ନିହିତ ଚିତ୍ରଣ ଉପନ୍ୟାସକୁ କାଳଜୟୀ କରେ ।

ଚ) ଆପଣଙ୍କ ପ୍ରତିଷ୍ଠିତ ଔପନ୍ୟାସିକଙ୍କ ମତଠାରୁ ମୋର ଧାରଣା ଭିନ୍ନ ବୋଲି ମୁଁ ସ୍ୱୀକାର କରୁଛି । ମଣିଷର ସମସ୍ୟା ସମୂହ ଜଟିଳ ଓ ତୁଙ୍ଗ । ସେ ସମସ୍ତକୁ ସରଳ କରି କାହାଣୀ ମାଧ୍ୟମରେ ଗଢ଼େଇ ଆଣି ପାଠକ ପାଖରେ ପହଞ୍ଚାଇ ପାରିଲେ ଉପନ୍ୟାସ ସଫଳ ହୁଏ ବୋଲି ମନେ କରେ ।

ଛ) ନାରୀ ଚରିତ୍ର ପ୍ରତି ଯଥେଷ୍ଟ ଗୁରୁତ୍ୱ ଦେଇ ନାହିଁ ଓ ଇତର ଜନୋଚିତ ଭଷାର ପ୍ରୟୋଗ କରିଛିବୋଲି ଲିଖିତ ଓ ମୌଖିକ ଅଭିଯୋଗମାନ ମୋର କର୍ଣ୍ଣଗୋଚର ହୋଇଛି । ଏ ଉଭୟ ଅଭିଯୋଗ ସତ୍ୟ । ମୋ ଜୀବନଧାରା ମଧ୍ୟରେ ନାରୀ ଚରିତ୍ର ଅଧ୍ୟୟନର ସୁଯୋଗରୁ ବଂଚିତ ହୋଇ ଥିବାରୁ ତାହାକୁ ଗୁରୁତ୍ୱ ଦେଇ ପାରି ନାହିଁ । ଦ୍ୱିତୀୟତଃ ମୋ ଲେଖାର ଅଧିକାଂଶ ଚରିତ୍ର ସମାଜର ଇତର ଶ୍ରେଣୀର ହୋଇଥିବାରୁ ସେମାନଂକ ଭଷା ମୋ ଲେଖାରେ ଆସିଯିବା ସ୍ୱାଭବିକ ।

ଜ) ମୋ ଶେଷ କଥାଟି କହି ଦେବାର ସମୟ ଆସି ନାହିଁ । □

**୫ ମହାପାତ୍ର ନୀଳମଣି ସାହୁ**
**ଶହୀଦ ନଗର, ଭୁବନେଶ୍ୱର**

କ] କୌଣସି ଭଷାର ସାହିତ୍ୟ ଯେତେ ବ୍ୟାପକ ଓ ବିଶାଳ ହେଲେ ବି ଜୀବନ ତା'ଠାରୁ ଅନନ୍ତ ଗୁଣରେ ପ୍ରସାରିତ ଓ ରହସ୍ୟପୂର୍ଣ୍ଣ । ଏହି ଶହେ ବର୍ଷ ମଧ୍ୟରେ ଓଡ଼ିଆ ଜାତି ଜାତୀୟ ସ୍ତରରେ ଓ ବ୍ୟକ୍ତିଗତ ସ୍ତରରେ ଯାହା କିଛି ଅଭିଜ୍ଞତା ଓ ଉପଲବ୍‌ଧି ଅର୍ଜନ କରିଛି, ଆମର ଶହେ ବର୍ଷ ଭିତରେ ଲେଖା କଥା ସାହିତ୍ୟରେ ତା'ର ଖୁବ୍ କମ୍ ଅଂଶ ନିଶ୍ଚୟ ପ୍ରକାଶ ପାଇଛି । ଏହା ଯେ କୌଣସି ଦେଶରେ କଥା ସାହିତ୍ୟ ପକ୍ଷରେ ସମାନ ସତ୍ୟ ।

ଖ] ମୋର  କେତେକ  କାହାଣୀ ଗ୍ରନ୍ଥର ମୁଖବଂଧରେ ମୁଁ ଏହାର ଉତ୍ତର ଦେଇ ସାରିଛି । ମୋର ସୃଷ୍ଟିରେ ମୋର ଜୀବନର ଅନୁଭୂତି ବ୍ୟତୀତ ଅନ୍ୟ କଥା କିଛି ନାହିଁ । ଏପରିକି ଯେଉଁ ଅସଂଖ୍ୟ ଘଟଣା ଓ ଚରିତ୍ର ଗୁଡ଼ିକ ମାଧ୍ୟମରେ  ମୋର କଥା ସାହିତ୍ୟ ପ୍ରକାଶିତ ହୋଇଛି ସେହି ଘଟଣା ଚରିତ୍ରମାନଂକ  ସହିତ ମୋର ଜୀବନର  ଆନ୍ତରିକ  ଯୋଗାଯୋଗ ରହିଛି, କେଉଁଠାରେ ପ୍ରତ୍ୟକ୍ଷ କେଉଁଠାରେ ବା ପରୋକ୍ଷ ଭାବରେ । କିନ୍ତୁ କଥା ସେଠି  ନାହିଁ ।  ମୋର   ଜୀବନାଦର୍ଶ ଓ ଜୀବନଚର୍ଯ୍ୟା   ଯଦି  ଏକ ନହୁଏ ଏବଂ ତା' ସଂଗେ ମୋର ସାହିତ୍ୟର ଯଦି ସମଗୋତ୍ରତା  ନଥାଏ ତେବେ ବୁଝିବାକୁ ହେବ ଯେ ଜୀବନ ସାରା ମୁଁ କେବଳ ମୋ  ଲେଖାରେ ବୃଥା ବକ୍‌ବାଜି କରିଛି । ମୋ ସାହିତ୍ୟ ଯେପରି ସାଂପ୍ରତିକ ଓ ଭବିଷ୍ୟତ  କାଳ ଆଗରେ ଖୋଲା ହୋଇ ପଡ଼ିଛି, ମୋ ଜୀବନ ମଧ୍ୟ ସେହିପରି ମୋର ସମସାମୟିକମାନଂକ ଆଗରେ ଖୋଲାହୋଇ ରହିଛି । ଭବିଷ୍ୟତରେ ମୁଁ ନଥିବି କିନ୍ତୁ ଯେଉଁମାନେ ମୋର ସାହିତ୍ୟ  ପଢ଼ିବେ  ସେମାନେ   ନିଶ୍ଚୟ ତା' ଭିତରୁ   ନାନାଦି  ଦୋଷ ଗୁଣରେ ପରିପୂର୍ଣ୍ଣ ଅଥଚ ମଣିଷ ଜୀବନର ସମୁନ୍ନତି ଚାହୁଁଥିବା ବ୍ୟାକୁଳ ହୃଦୟ ବ୍ୟକ୍ତିତ୍ୱଟିର ହୃଦ୍‌ସ୍ପନ୍ଦନ ଶୁଣି ପାରିବେ ।

ଗ] ଆମ ଭାଷାରେ ଉପନ୍ୟାସ କମ୍ ଲେଖା ଯାଇଛି ନୁହେଁ, ଭଲ  ଉପନ୍ୟାସ  କମ୍ ଲେଖା   ଯାଇଛି । ସେଥିପାଇଁ ଦାୟୀ ଆମର ପ୍ରକାଶକ ଗୋଷ୍ଠୀ ଏବଂ ଆମର ପାଠକ ଗୋଷ୍ଠୀ । ଯେଉଁ ଦେଶରେ ଗୋପୀନାଥ ମହାନ୍ତି ଓ ଶାନ୍ତନୁ ଆଚାର୍ଯ୍ୟଙ୍କର ଉପନ୍ୟାସ  ହଜାରେ ଖଣ୍ଡେ ବିକ୍ରୀ ହେବା ପାଇଁ ଚାରି ବର୍ଷ ସମୟ ଲାଗୁଛି, ସେ ଦେଶର   ପାଠକ ପାଠିକାଂକ ପାଇଁ କିଏ କାହିଁକି ଭଲ ଉପନ୍ୟାସ ଲେଖିବାର ପ୍ରେରଣା ଅନୁଭବ କରିବ ?

ଘ] ପ୍ରକୃତ କଥା ବୁଝିବାକୁ ହେଲେ କଥାବସ୍ତୁ ଓ ଶିଳ୍ପରୀତି ପୃଥକ୍ ନୁହନ୍ତି । ପ୍ରତ୍ୟେକ କଥାବସ୍ତୁ  ତା'ର  ସଂଗତ ପ୍ରକାଶ ଲାଗି ନିଜସ୍ୱ ଶିଳ୍ପ ରୀତିଟିଏ ସାଂଗରେ ଧରି ଆସିଥାଏ । ମହାଦେବ ଯଦି ତୁମର କଥାବସ୍ତୁ ହୁଅନ୍ତି ତେବେ  ସେ   ତାଙ୍କର ବାହନ   ଷଣ୍ଢକୁ  ଧରି  ନିଶ୍ଚୟ ଆସିଥିବେ । ଗଣେଶ ଯଦି ତୁମର ବିଷୟବସ୍ତୁ ତେବେ ସେ ମୂଷାଟିଏ ବ୍ୟତୀତ ଆଉ କୌଣସି ବାହନରେ ଆସିବେ   ନାହିଁ । ତେଣୁ ମୁଁ କଥାବସ୍ତୁ ସହିତ ମାତି ଥିଲା ବେଳେ ଶିଳ୍ପରୀତି ପ୍ରତି ସ୍ୱାଭାବିକ ଭାବେ ମନଯୋଗ ଦେଇଥାଏ ।

ଙ] ତୁମେ ଯେ କୌଣସି ସାଧାରଣ ଓଡ଼ିଆ ଉପନ୍ୟାସ ପଢିଲେ ବି ତା' ଭିତରେ ଏହି ପରିବର୍ତ୍ତନ ଲକ୍ଷ୍ୟ କରି ପାରିବ କିନ୍ତୁ ଚିନ୍ତାଧାରା କଥା ଯଦି ପଡ଼େ ତେବେ କାଳିନ୍ଦୀ ପାଣିଗ୍ରାହୀଙ୍କ 'ମାଟିର ମଣିଷ', 'ଲୁହାର ମଣିଷ', 'ଆଜିର ମଣିଷ'; ଗୋପୀନାଥ ମହାନ୍ତିଙ୍କର 'ମାଟି ମଟାଳ', 'ଲୟ ବିଲୟ', 'ଅମୃତର ସନ୍ତାନ'; ଶାନ୍ତନୁ ଆଚାର୍ଯ୍ୟଙ୍କର 'ଶତାବ୍ଦୀର ନଚିକେତା', 'ତିନୋଟି ଘଡିର ସକାଳ', 'ଦକ୍ଷିଣାବର୍ତ୍ତ', 'ଶକୁନ୍ତଳା'; ଚନ୍ଦ୍ରଶେଖର ରଥଙ୍କର 'ଅସୂର୍ଯ୍ୟ ଉପନିବେଶ'; ମୋ ନିଜର 'ତାମସୀ ରାଧା', ବିଭୂତି ପଟ୍ଟନାୟକଂକ କେତେକ ଉପନ୍ୟାସ ପଢିଲେ ଆମେ ଏ ବିଷୟରେ ଜାଣିପାରିବା ।

ଚ] ମୋର ଧାରଣା କୌଣସି ଗଳ୍ପ ବା ଉପନ୍ୟାସ ମୋ ଅଜାଣତରେ ମୋ ଅବଚେତନ ଭିତରେ ତାର ଆକୃତି, ତା'ର ଜୀବନ ଏବଂ ତାର ବିକାଶ ଓ ଅର୍ଥ ଧରି ଖୁବ୍ କ୍ଷୁଦ୍ର ଆୟତନଟି ଭିତରେ ବଢୁଥାଏ । ମୋର ଜାଗ୍ରତ ମନଯୋଗ ଭିତରକୁ ଆସିବା ପରେ ତାହା ସ୍ୱାଭବିକ ରୀତିରେ ତା'ର ସମଗ୍ର ବିକଶିତ ସ୍ୱରୂପ ଲେଖୁ ଲେଖୁ ଲାଭ କରେ ।

ଛ] ମୋ ଉପନ୍ୟାସ ବିରୁଦ୍ଧରେ କିଏ କ'ଣ କହେ ମୁଁ ଜାଣିନି କିନ୍ତୁ ମୋର କଥା ସାହିତ୍ୟ ସମ୍ପର୍କରେ କେତେକ ସମାଲୋଚକ ବାରମ୍ବାର କହି ଆସୁଛନ୍ତି ଯେ ମୁଁ ଅଯଥା କାହାଣୀ ଗୁଡ଼ିକୁ ଦୀର୍ଘ କରେ । ସେ ସଂପର୍କରେ ମୋର ମତ ହେଲା ମୁଁ ସମସ୍ତଙ୍କୁ ସନ୍ତୁଷ୍ଟ କରିବା ପାଇଁ ହାତୀଟାକୁ ଘୁଷୁରୀ ଭଳି କରି ପାରିବି ନି, କି ଘୁଷୁରୀକୁ ହାତୀ ଭଳି ଦେଖାଇ ପାରିବିନି । ମୋର ବହୁ ପାଠକ ଅଛନ୍ତି, ସେମାନେ ମୋର ପ୍ରିୟ କିନ୍ତୁ ମୁଁ ସମସ୍ତଙ୍କର ନିନ୍ଦା ପ୍ରଶଂସାକୁ ସମ୍ମାନର ସହିତ ଶୁଣେ ମାତ୍ର ଭିତରକୁ ନିଏ ନାହିଁ । ମୁଁ ମୋ ଭିତରର ସ୍ରଷ୍ଟା ପୁରୁଷ ପ୍ରତି ବିଶ୍ୱସ୍ତ ରହିବି, ଆଉ କାହା ପ୍ରତି ନୁହେଁ ।

ଜ] ପାଠକମାନଂକୁ ମୋର ଶେଷ କଥାଟି ହେଲା ଉତ୍କୃଷ୍ଟ ଓ ନିମ୍ନମାନର ଲେଖା ଭିତରେ ପ୍ରଭେଦ ଜାଣି ରଖନ୍ତୁ ଏବଂ ନିଜର ବୁଝାମଣାକୁ ଆହୁରି ଗଭୀର ଓ ଉଦ୍ଭାସିତ କରନ୍ତୁ । ମୋର ଯୁବ କଥାକାରମାନଂକୁ ଅନୁରୋଧ ଯେ ସେମାନେ ସମାଜ ଓ ଜୀବନ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ହୁଅନ୍ତୁ ଓ ଦାୟିତ୍ୱଶୀଳ ହୁଅନ୍ତୁ । ବିନା ଅଭିଜ୍ଞତାରେ ଓ ବିନା ଅଭୀପ୍ସାରେ ଉନ୍ନତ କଥାସାହିତ୍ୟ ସୃଷ୍ଟି ହୋଇ ପାରେନି ।

□ ଚନ୍ଦ୍ରଶେଖର ରଥ
ନୂଆପଲ୍ଲୀ, ଭୁବନେଶ୍ୱର

କ] "ଉକ୍ତ" ଅପେକ୍ଷା 'ଅନୁକ୍ତ' ର ବିସ୍ତାର ସବୁବେଳେ ବୃହତ୍ତର । ସମଗ୍ର ବିଶ୍ୱ ମାତ୍ର ଏକ ପାଦ । ବାକି ତ୍ରିପାଦ ଅବ୍ୟକ୍ତ । ବହୁ ସମ୍ଭାବନା ବିଗତ ଶହେ ବର୍ଷ ଭିତରେ ଅପ୍ରକଟ ରହିଗଲା ସାହିତ୍ୟ ପୃଷ୍ଠାରେ । କହି ବସିଲେ ତାଲିକା ଲମ୍ବି-ଯିବ ଶହେ ବର୍ଷ ।

ଖ] ଅଂଧାର ମାଟି ଭିତରୁ ଅମ୍ଳ, କ୍ଷାର, ତିକ୍ତ, କଷାୟ ରସ ଟାଣି ଗଛ ବଂଚେ, ପରିପୁଷ୍ଟ ହୁଏ । ଫୁଲରେ କିପରି ପରିସ୍ଫୁଟ ହୁଏ ତା' ଜୀବନର ରସ ? ପରିମାଣ କେତେ ?

ଗ] ପାଠକୀୟତା କ'ଣ ? ପାଠକର ଅଭାବ ବୋଲି କହୁ ନାହାନ୍ତି ! ପାଠକ କ'ଣ ପଢିବ ? ଲେଖା ହେଲେ ତ । ଉପନ୍ୟାସ ସରି ଆସୁଛି ମାନେ ଆଉ ଲେଖା ହେଉ ନାହିଁ । ଏହା ହିଁ ମୂଳ କାରଣ । ପଢିବା ତ ଢ଼େର ପଛକଥା ।

ଘ] କଥା କହିବାର ସହଜାତ ପ୍ରବୃତ୍ତିଟିଏ ଥିଲେ, ଉପନ୍ୟାସ ଏକ ସହଜ ଢଙ୍ଗରେ ନଦୀଧାର ପରି ବହିଯାଏ । ଅକୃତ୍ରିମ ବିନ୍ୟାସ ହିଁ ଶ୍ରେଷ୍ଠ ଶିଳ୍ପରୀତି ।

ଙ] ଚିନ୍ତାଧାର କିମ୍ବା ଭାବଧାରର ତରଙ୍ଗ ଯେତିକି ପ୍ରବଳ ଏବଂ ଶିଳ୍ପୀ ମାନସ ଯେତିକି ସ୍ୱଚ୍ଛ ପ୍ରବଣ ଏବଂ ଉନ୍ମୁକ୍ତ, ସେତିକି ବେଶୀ ଲକ୍ଷଣୀୟ ସେ ପ୍ରଭାବ ।

ଚ] ×× ×× ×× ××

ଛ] କଥା କଥା କେ ଦର୍ଶନ ଅନୁପ୍ରବେଶ କରି ଆସେ ବୋଲି କେହି କେହି କହନ୍ତି । ପୁଣି କହନ୍ତି ଯେ ସେହି କାରଣରୁହିଁ 'ଯନ୍ତ୍ରାରୂଢ' ଏବଂ 'ନବଜାତକ'ର ବୈଶିଷ୍ଟ୍ୟ । ପାଠକ ମନ୍ତବ୍ୟ ଏକ ସୌଖୀନ ବ୍ୟାପାର । ଗୁରୁତ୍ୱ କିମ୍ବା ଦାୟିତ୍ୱର ଘୋର ଅଭାବ । ବିଶେଷ ମନ୍ତବ୍ୟ ବା କାହିଁ ?

ଜ] ଶେଷ କଥା ଶୁଣିବାକୁ ଏତେ ବ୍ୟଗ୍ର କାହିଁକି ? ମୁଁ ତ' ଆଉ କିଛି କାଳ ଅଛି । ବର୍ତ୍ତମାନ ପାଇଁ କେବଳ ଏତିକି– 'ହେ ମୋର ଆତ୍ମୀୟ ସୋଦର ସବୁ, ଆହୁରି ପାଖେଇ ଆସ' !

☐ ରଜକିଶୋର ପଟ୍ଟନାୟକ
ତେଲେଂଗାବଜାର, କଟକ

କ) ଗତ ଶହେ ବର୍ଷର ଉପନ୍ୟାସରେ ୧୯୨୩ ମସିହାରେ ପ୍ରକାଶିତ, "ବାସନ୍ତୀ" ପୂର୍ବରୁ ଉପନ୍ୟାସ ନାହିଁ କହିଲେ ଚଳେ । ଫକୀରମୋହନ ଓ ଗୋପାଳ ବଲ୍ଲଭ ଦାସ ମହାଶୟମାନେ ସରକାରୀ ଚାକିରୀରେ ଥାଇ ବଂକିମ ଚନ୍ଦ୍ରଙ୍କ ଅନୁକରଣରେ ସାମାନ୍ୟ ଭାବରେ ସାମାଜିକ ସମସ୍ୟା, ସାମ୍ବାଦିକ ଦୃଷ୍ଟିକୋଣରୁ ଉପସ୍ଥାପନ କରିଛନ୍ତି । ଏହିଧାର ଶ୍ରୀଯୁକ୍ତ କାହ୍ନୁଚରଣ, ଶ୍ରୀଯୁକ୍ତ ଗୋପୀନାଥ ଇତ୍ୟାଦି ଅନୁସରଣ କରି ଯାଇଛନ୍ତି । ସେମାନଙ୍କ ପଦାଙ୍କ ଅନୁସରଣ କରି ଅଦ୍ୟାବଧି ସେହି ଶୈଳୀ ଚାଲିଛି । ତେଣୁ ମାନବିକ ଦୃଷ୍ଟିକୋଣରୁ ଉପନ୍ୟାସ ଓଡ଼ିଶାରେ ଲେଖା ହୋଇ ନାହିଁ, କାରଣ ନିଃସ୍ୱ ଲେଖକ ବାହାରି ନାହାନ୍ତି ।

ଖ) ନିଜର ଅନୁଭୂତି ଲେଖାରେ ପ୍ରକାଶକଲେ ଘରେ ସମସ୍ୟା ସୃଷ୍ଟିକରିବେ ଓ ସରକାର ଲେଖକକୁ ଦଣ୍ଡ ଦେବାକୁ ଚେଷ୍ଟା କରିବେ । ଓଡ଼ିଶା ଗୋଟିଏ ଅନଗ୍ରସର ରାଜ୍ୟ ହୋଇ ଥିବାରୁ ଏହାର ସାଂସ୍କୃତିକ ସ୍ତର କିରାଣୀ, ଅମିନ ବା ଚାହାଳୀ ମାଷ୍ଟର ସ୍ତରରୁ ଉପରକୁ ଯାଇ ପାରି ନାହିଁ । ମୋ ନିଜ ଲେଖା ମଧ୍ୟ ସେହି ଦୋଷରେ ଦୋଷୀ ।

ଗ) ଗତ କୋଡ଼ିଏ ବର୍ଷର ମାଟ୍ରିକ୍ୟୁଲେସନ୍ ବା H. S. C. ସ୍ତରରୁ ଅଧିକ ପଢିଥିବା ଲୋକଙ୍କ ମଧ୍ୟରେ ହଜାରେ ଜଣରେ ଜଣେ ପାଠକ ହେବାର ଶିକ୍ଷା ନେଉଛନ୍ତି । ପାଠକ ହେବାପାଇଁ ଯେଉଁ ପ୍ରକାରର ଜ୍ଞାନ ଓ ଅଜ୍ଞାନର ପୃଷ୍ଠଭୂମି ଦରକାର ତାହା ଓଡ଼ିଶାରେ ସମ୍ଭବ ହୋଇ ନି । ହଜାରେ ଜଣରେ ଜଣେ ଶହେଖଣ୍ଡ ଯେ କୌଣସି ଭାଷାର ଯେ କୌଣସି ଭଲ ବହି ପଢିଥିବା ଜଣା ପଡେ ନାହିଁ । ତେଣୁ ଓଡ଼ିଶାରେ ପାଠକ ସୃଷ୍ଟି ହେବାକୁ ଆଉ ଦଶ ବର୍ଷ ଲାଗିବ ।

ଘ) ମୋର ଲେଖା ନିଜର ଅପରିପକ୍ୱ ଅନୁଭୂତିରେ ଗୋଟାଏ ପ୍ରକାରର ଅଡୁଆ ତଡୁଆ ଗୁନ୍ଥା ହାରର ମାଳ । ତେଣୁ କଥାବସ୍ତୁ ଓ ଶିଳ୍ପ ରୀତି ଏଥିରେ ନାହିଁ । କେବଳ ସୁରେନ୍ଦ୍ର ମହାନ୍ତି ଶିଳ୍ପରୀତି ପ୍ରୟୋଗ କରିଛନ୍ତି ଓ କାହ୍ନୁ ଚରଣ କଥାବସ୍ତୁ ଉପରେ ଜୋର୍ ଦିଅନ୍ତି । ସେମାନଙ୍କ ଜ୍ଞାନ ଓ ଅନୁଭବ ପରିପକ୍ୱ ହେବା ଆଗରୁ ସେମାନେ ଲେଖା ସାରି ଦେଇଛନ୍ତି, ତେଣୁ ଲେଖାରେ ଏହାର ପ୍ରତିଫଳନ ନାହିଁ ।

ଙ) ଉଚ୍ଚସ୍ତରର ଭାବଧାର ଓ ଆଧୁନିକ ସମ୍ବାଦ ଓଡ଼ିଶାକୁ ଆସିନାହିଁ । ଓଡ଼ିଶା କହିଲେ ତୃତୀୟ ଶ୍ରେଣୀ ନାଗରୀକର ଦେଶକୁ ବୁଝାଉଛି । ପଚ୍ଚଶ ବର୍ଷ ତଳେ ଓଡ଼ିଶା ଚତୁର୍ଥ ଶ୍ରେଣୀ ନାଗରୀକଂକ ଦେଶ ଥିଲା । ତେଣୁ ମୋର ଲେଖା ଚତୁର୍ଥରୁ ତୃତୀୟ ଶ୍ରେଣୀ ମଧ୍ୟ । ସେ ସମୟର ସମୀକ୍ଷକ ହେଉଛନ୍ତି ଓଡ଼ିଆ ଅଧ୍ୟାପକ । ସେମାନେ ସମୀକ୍ଷା ସାହିତ୍ୟର ଚତୁର୍ଥ ଶ୍ରେଣୀରେ ଆଦ୍ୟାବଧି ଅଛନ୍ତି ।

ଚ) ଏହା ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରକୃତ ଚିତ୍ର । ଏଥିରେ ଇଂରାଜୀ ବଙ୍ଗଳା କିଛି ସଂସ୍କୃତ ମିଶି ପାହାଡରୁ ପଥର ଗଡାଇଲା ପରି ସାହିତ୍ୟ ସୃଷ୍ଟି କରାହୋଇଛି । ଏହାପରେ ଲେଖକ ଉନ୍ନତି କରିବାର ଆଶା ଦେଖାଯାଉ ନାହିଁ, କାରଣ ଓଡ଼ିଆ ବୋଲି ନିଜକୁ ବୁଝାଇବାକୁ ଖୁବ୍ ଅଳ୍ପ ସଂଖ୍ୟକ ଲୋକ ରାଜି ।

ଛ) ମୋର ଶେଷ ବହି ମୋତେ ସତୁରୀ ବର୍ଷ ହେଲା ବେଳେ ଲେଖା । ମୋର ସହପାଠୀଙ୍କ ପୁଅମାନେ ଉଚ୍ଚ ପଦବୀରେ ରହି ପେନ୍‌ସନ୍ ନେଇ ସାରିଛନ୍ତି । ତାଙ୍କ ପିଲାମାନେ ଓଡ଼ିଶାରେ ବର୍ଣ୍ଣାଶୁଦ୍ଧି ସ୍ଥିରକରି ପାରୁନାହାନ୍ତି । କାହାରି ଘରେ କୌଣସି ଲେଖକର ପ୍ରକାଶିତ ପୁସ୍ତକର ଦଶ ଭାଗରୁ ଭାଗେ ନାହିଁ । ସମସ୍ତେ ବହିର ପ୍ରଥମ ଦୁଇ ପୃଷ୍ଠା ଓ ମଲାଟ ପଢିଛନ୍ତି । ତେଣୁ ପାଠକୀୟ ପ୍ରତିକ୍ରିୟା ସମ୍ଭବ ନୁହେଁ । ଏହାର କାରଣ ହେଉଛି, ଲେଖକ ମଧ୍ୟ ସେହି ଶ୍ରେଣୀର ଜଣେ କଲମ-ନବୀସ । ଯେକୌଣସି ଉଚ୍ଚତର ବା ପ୍ରତିଷ୍ଠିତ ସାହିତ୍ୟରେ ସେ ନିଜର ନାମ ସାଧାରଣ ଭାବରେ ଜାହିର୍ କରି ପାରିବ ନାହିଁ । ଅଣଓଡ଼ିଆ ତାକୁ ନେବେ ନାହିଁ, ଓଡ଼ିଆମାନେ ମଧ୍ୟ ନେଇ ନାହାନ୍ତି ।

ଜ) ପ୍ରତ୍ୟେକ ଲେଖକ ବା ପାଠକ ଯାହା ହୋଇଥାଆନ୍ତୁ, ଲେଖକ ହେବାର ଓ ପାଠକ ହେବାର ଯୋଗ୍ୟତା ହାସଲ କରିବା ଉଚିତ । ଯେତିକି ଲୋକ ସେତିକିର କଥା ନ କହିଲେ କଟକରେ ରହି ପ୍ରଧାନ ମନ୍ତ୍ରୀଙ୍କୁ ସମାଲୋଚନା କରି, ପ୍ରଧାନ ମନ୍ତ୍ରୀଙ୍କ କୋଠିର ମାଳି ଆଉ ରୋଷେୟା ସାଂଗରେ ସଂଗାତ ବସିବା କାମ ଗ୍ଲାଇଥିବ ।



O ଶାନ୍ତନୁ କୁମାର ଆଚାର୍ଯ୍ୟ
ସହୀଦ ନଗର, ଭୁବନେଶ୍ୱର

କ) ଗତ ଔପନ୍ୟାସିକ ଶତାବ୍ଦୀ ଓଡ଼ିଆ ଉପନ୍ୟାସ ଦୃଷ୍ଟିରୁ ପ୍ରାୟତଃ ଏକ ନୀରବ ଓ ନିଃସ୍ତବ୍ଧ ଶତାବ୍ଦୀ । ଖୁବ୍ କମ୍ ଉପନ୍ୟାସ ଲେଖା ଯାଇଛି । ସେଥିରେ ମୁଖ୍ୟତଃ ସମ୍ଭ୍ରାନ୍ତ ବଂଶର ବା ଅଭିଜାତ ଶ୍ରେଣୀର ମନନଶୀଳତା ପ୍ରକାଶିତ ହୋଇଛି, କିନ୍ତୁ ଓଡ଼ିଶାର ଆତ୍ମା ଏ ଉପନ୍ୟାସ ଗୁଡ଼ିକରେ ଖୁବ୍ କ୍ଷୀଣ ସ୍ୱରରେ କଥା କହିଛି । ଉଦାହରଣ ସ୍ୱରୂପ – ଏକ ବିରାଟ ଭାରତୀୟ ବିପ୍ଲବ-ପର୍ବ ସମଗ୍ର ଦେଶ ପରି ଓଡ଼ିଶାକୁ ମଧ୍ୟ ଚାରି ଦଶନ୍ଧି ଧରି ଆଚ୍ଛନ୍ନ କରି ରଖିଥିଲେ ମଧ୍ୟ ଆମେ ଏଯାବତ୍ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ଓ ଓଡ଼ିଆ ଭାଷା-ଭାଷୀଙ୍କର ପ୍ରତ୍ୟକ୍ଷ ସହଯୋଗର ସଫଳ ଚିତ୍ର ପାଇ ନାହୁଁ । ଫକୀରମୋହନଙ୍କ ଠାରୁ କାଳିନ୍ଦୀ ଚରଣ, କାଳିନ୍ଦୀ ଚରଣଙ୍କ ଠାରୁ ଗୋପୀନାଥ ଓ ଗୋପୀନାଥଙ୍କ ଠାରୁ ସୁରେନ୍ଦ୍ର ମହାନ୍ତିଙ୍କ ପର୍ଯ୍ୟନ୍ତ ଯେଉଁ ଔପନ୍ୟାସିକ ଚିତ୍ର ଆମେ ପାଇ ପାରିଛୁ ସେଥିରେ ସଫଳତାର କାହାଣୀର ସ୍ୱର କ୍ଷୀଣ । "ମାଟିର ମଣିଷ"ର ବରଜୁ ଚରିତ୍ରକୁ ଛାଡ଼ି ଦେଲେ ଅନ୍ୟ ଉପନ୍ୟାସର ମୁଖ୍ୟ ଚରିତ୍ରମାନେ ଜୀବନର ବିଫଳତାର କାହାଣୀ ହିଁ କହିଛନ୍ତି । ଅଥଚ ଭାରତର ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବା ପ୍ରତ୍ୟେକଟି ବିପ୍ଳବୀ ଜଣେଜଣେ ସାଫଲ୍ୟମଣ୍ଡିତ ବ୍ୟକ୍ତି । ସେମାନେ ନୈରାଶ୍ୟରୁ ଜନ୍ମ ହୋଇ ସୁଦ୍ଧା ଇତିହାସକୁ ଦେଇ ଯାଇଛନ୍ତି ଆଶାବାଦ କିନ୍ତୁ ଆମର ଅଧିକାଂଶ ଉପନ୍ୟାସର ମୁଖ୍ୟ ନାୟକମାନେ ନୈରାଶ୍ୟରୁ ଜନ୍ମ ହୋଇ ନୈରାଶ୍ୟର ବୀଜ ବୁଣି ଅସ୍ତ ହୋଇ ଯାଆନ୍ତି ।

ଓଡ଼ିଆ ଜାତିର କାନ୍ଦଣାର ସ୍ୱର ଆମେ ଯଥେଷ୍ଟ ଶୁଣିଛୁ । ତା'ର ହର୍ଷଧ୍ୱନି ଶୁଣିବା ପାଇଁ ଆମେ ଅପେକ୍ଷା କରୁଛୁ । ସେହି ଦୃଷ୍ଟିରୁ ଅନୁକ୍ତ କାହାଣୀଟି କ'ଣ ତାହା ସହଜରେ ଅନୁମେୟ ।

ଖ) ମୋ ଉପନ୍ୟାସ ଗୁଡ଼ିକ ମୁଖ୍ୟତଃ ମୋ ନିଜ ଜୀବନର ଅନୁଭୂତିରୁ ଜନ୍ମ । "ନର କିନ୍ନର"ର ମୁଖ୍ୟ ଚରିତ୍ର ଜର୍ଜର ମାନସିକତା ମୋ ନିଜ ଅଂଗେ ନିଭେଇବା

କଥା । ଗୋଟିଏ ଦୃଷ୍ଟିରୁ ଜଳ୍ପ ମୁଁ ହିଁ ନିଜେ । ସେହିପରି "ଶତାବ୍ଦୀର ନଚିକେତା"ର ବିଭୁ ପ୍ରସାଦ, 'ଦକ୍ଷିଣାବର୍ତ୍ତ'ର ରଇକ୍‌କୋ ଏମାନେ ସମସ୍ତେ ଲେଖକର ଆତ୍ମିକ ପ୍ରତିଫଳନ । ସେମାନଙ୍କର ସମସ୍ୟା ହିଁ ଲେଖକର ସମସ୍ୟା । "ଶକୁନ୍ତଳା"ର ସ୍ଥାନ, କାଳ, ପାତ୍ର ଲେଖକର ନିଜସ୍ୱ ଜୀବନରୁ ପ୍ରାପ୍ତ ଅଭିଜ୍ଞତାରୁ ଉପଲବ୍‌ଧ୍ । ଯେଉଁମାନେ ଲେଖକର ଆତ୍ମଜୀବନ ସହିତ ପରିଚିତ ତାଙ୍କ ପାଇଁ 'ଶକୁନ୍ତଳା' ଉପନ୍ୟାସର ସ୍ଥାନ ଓ କାଳ ଅତ୍ୟନ୍ତ ବାସ୍ତବ । ଓଡ଼ିଶାର ତିନୋଟି ଅଂଚଳକୁ ନେଇ ଉପନ୍ୟସଟି ଲିଖିତ । ପ୍ରଥମଟି ପାରଳାଖେମୁଣ୍ଡିର ବସନ୍ତ ନିବାସ ଗଜ ପ୍ରାସାଦ ଓ ତତ୍ ସଂଲଗ୍ନ ଅଂଚଳ, ଦ୍ୱିତୀୟ ଅଂଚଳଟି ହେଲା ବାଂକୀ ସୁବର୍ଣ୍ଣପୁର ତଥା ଅଂଶୁପା ହ୍ରଦ ସଂଲଗ୍ନ ଅଂଚଳ, ତୃତୀୟଟି ଲେଖକର ମାମୁଁ ଘର ଦେବୀ ନଦୀ କୂଳର ପାର୍ବତୀପୁର (ଗୋବିନ୍ଦପୁର) ଅଂଚଳ । ଏ ସବୁ ଦୃଷ୍ଟିରୁ ପ୍ରତ୍ୟକ୍ଷ ଅନୁଭୂତି ହିଁ ଲେଖକର ଏକମାତ୍ର ସମ୍ବଳ । ଏହା ସହିତ ଚିନ୍ତାଶକ୍ତି ମିଶ୍ରଣରୁ ଉପନ୍ୟାସର ସୃଷ୍ଟି ।

ଗ) ଲେଖକ ବିଦଗ୍‌ଧ ପାଠକ ପାଇଁ ଲେଖେ । ଓଡ଼ିଶାରେ ବିଦଗ୍‌ଧ ପାଠକଂକ ସଂଖ୍ୟା କମି ଯାଇଛି ବୋଲି ମୋର ମନେ ହୁଏନା । ୧୯୬୨ ରେ 'ନର କିନ୍ନର' ଭଳି ଏକ ବୌଦ୍ଧିକ ଉପନ୍ୟାସ ଯେ ହଠାତ୍ ଲୋକପ୍ରିୟତା ଲାଭ କରିଥିଲା ଏହାହିଁ ତାର ପ୍ରମାଣ । ପରେ ପରେ ମୋର ସମସ୍ତ ମୁଖ୍ୟ ଉପନ୍ୟାସ ଯାହାକୁ ସାଧାରଣ ପାଠକ ବୁଝିବେ ବୋଲି ମୁଁ ଆଶା କରୁ ନଥିଲି, ସେ ଗୁଡ଼ିକ ପ୍ରାୟ ପ୍ରତ୍ୟେକ ଲୋକପ୍ରିୟତା ଅର୍ଜନ କରିଛନ୍ତି । ଏଥିରୁ ପାଠକୀୟତାର ଅଭାବରୁ ଉପନ୍ୟାସର ମୃତ୍ୟୁ ତଥ୍ୟ ପ୍ରମାଣିତ ହେଉନାହିଁ ବରଂ ଲୋକପ୍ରିୟତା ଲକ୍ଷ୍ୟରେ ଲେଖା ଯାଉଥିବା ଉପନ୍ୟାସ ଯୋଗୁଁ ଉପନ୍ୟାସର ଲୋକପ୍ରିୟତା କ୍ରମେ ଶେଷ ହୋଇ ଯାଇପାରେ ।

ଘ)/ଉଭୟ କଥାବସ୍ତୁ ଓ ଶିଳ୍ପରୀତି ଉପନ୍ୟାସ ପାଇଁ ଆବଶ୍ୟକ । କିନ୍ତୁ "କଥାଟିଏ କହୁଁ" ଆଉ ଉପନ୍ୟାସର କଥାବସ୍ତୁ ହୋଇ ରହିନାହିଁ । ଶିଳ୍ପରୀତି ପ୍ରତ୍ୟେକ ଶିଳ୍ପୀର ସ୍ୱତନ୍ତ୍ର ରୀତି । ଏଥିରେ Standard ଜିନିଷ କିଛି ନାହିଁ, ତେଣୁ ଔପନ୍ୟାସିକ ହିଁ ଜାଣେ ସେ କି କଥା କହିବ, କେତେ କଥା କହିବ ଓ ସେଥିପାଇଁ କି ଶୈଳୀ ତା' ହୃଦୟରେ ସ୍ଫୁରିବ । ଏହାକୁ ଅଂକ କଷି ଦେଖାଇ ଦେଇ ହେବ ନାହିଁ ।/

ଡ) ସମସାମୟିକ ଉପନ୍ୟାସରେ ପାଠକ ଯେଉଁ ମନନଶୀଳତା ଲକ୍ଷ୍ୟ କରୁଛି, ତାହାହିଁ ବିଶ୍ୱ ଚିନ୍ତାଧାରାର ଲକ୍ଷଣ । ଯେଉଁ ଉପନ୍ୟାସରେ ଜାତିଗତ, ଅର୍ଥନୀତିଗତ ଅଥଚ ଲୌକିକତାର ବର୍ଣ୍ଣନା ବାହୁଲ୍ୟ ସମସ୍ୟା ଦେଖିବାକୁ ମିଳେ ସେସବୁ ଆଂଚଳିକ ସାହିତ୍ୟ । ଯେଉଁଠି ସବୁ ବୈଷମ୍ୟ ମଧ୍ୟରେ ପୂର୍ଣ୍ଣାଙ୍ଗ ମାନବର ଆତ୍ମାର ବାଣୀ ପ୍ରତିଫଳିତ ତାହାକୁ ବିଶ୍ୱ ସାହିତ୍ୟ ବୋଲି କୁହାଯାଏ । ଯେମିତି ଶରତଚନ୍ଦ୍ର ଓ ରବୀନ୍ଦ୍ରନାଥଙ୍କ ତୁଳନା କଲେ ଆମେ ଦୁଇଟି ପୃଥକ ଚିନ୍ତାର ପ୍ରତ୍ୟକ୍ଷ ଚିତ୍ର ପାଉ, ସେମିତି ଆଂଚଳିକ ଓ ବିଶ୍ୱ ସାହିତ୍ୟର ସ୍ୱରୂପ ଉପଲବ୍ଧି କରଯାଇପାରେ । ଶରତଚନ୍ଦ୍ର ସାମାଜିକ ମଣିଷର ସମସ୍ୟା ଦିଅନ୍ତି କିନ୍ତୁ ରବୀନ୍ଦ୍ରନାଥ ପୂର୍ଣ୍ଣାଙ୍ଗ ମାନବର ଚିତ୍ର ଉପସ୍ଥାପନ କରନ୍ତି । ଶରତଚନ୍ଦ୍ର ଜନପ୍ରିୟ, ତଥାପି ଆଂଚଳିକ । ରବିନ୍ଦ୍ରନାଥ ବୌଦ୍ଧିକ କିନ୍ତୁ ବିଶ୍ୱକବି । ଏହି ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ଗୁଡ଼ିକର ଶ୍ରେଣୀ ବିଭଜନ କରଯାଇପାରେ । ଆମ ଉପନ୍ୟାସ ସାହିତ୍ୟରେ ସାମଗ୍ରିକ ମାନବ ତଥା ବିଶ୍ୱ ମାନବର ଚିତ୍ର ଏ ଯାବତ୍ ସ୍ପଷ୍ଟତର ହୋଇ ପାରି ନାହିଁ । ଆମେ ତଥାପି ଆଂଚଳିକ ଚିତ୍ର ହିଁ ଖୋଜି ଗ୍ଢଲିଛୁ । ସେଥିପାଇଁ ଉପନ୍ୟାସରେ ଲୋକ-ପ୍ରିୟତା ଘେନି କେତେ ବାଦାନୁବାଦ । ସ୍ୱାଧୀନତା ପରେ ଓଡ଼ିଶାର ଉପନ୍ୟାସରେ ବିଶ୍ୱର ସାମଗ୍ରିକ ଚିନ୍ତାଧାର ଅଧିକରୁ ଅଧିକ— ସ୍ପଷ୍ଟରୁ ସ୍ପଷ୍ଟତର ହେଉଛି ବୋଲି ମୋର ମନେ ହୁଏ ।

ଚ) ମୋ ଲେଖିବା ଢ଼ଂଗବି ଟିକିଏ ଭିନ୍ନ ପ୍ରକାରର । ନିଜ ଜୀବନର କୌଣସି ଏକ ମାର୍ମିକ ଅଭିଜ୍ଞତା ମୋତେ ଅସ୍ଥିର କଲେ ତା'ର କାରଣ ଅନୁସନ୍ଧାନ ପୂର୍ବରୁ ମୁଁ ପ୍ରଥମେ କିଛି ଲେଖି ପକାଏଁ । ଏଥିରେ ପ୍ରଥମ ବାକ୍ୟଟି ଯଦି ଏକ ସଫଳ ବାକ୍ୟ ମନେହୁଏ ତେବେ ଉପନ୍ୟାସ ପୁଆ କୁଆଁ ମେଲି ଆଗକୁ ଆଗକୁ ଲମ୍ବିଯାଏ । ସମସ୍ୟାମାନେ କାହାଣୀ ରୂପ ଧରି ବଳେବଳେ ଆସନ୍ତି, ଚରିତ୍ରମାନେ ନିଜର ଅପରିଚିତ ଜଗତରୁ ବାହାରି ଆସି ଉପନ୍ୟାସରେ ମିଶନ୍ତି । କ୍ରମେ ମଞ୍ଜିରୁ ଗଛ ଓ ଗଛରୁ ମହାଦ୍ରୁମ ଜାତ ହେଲା ପରି ଚରିତ୍ରମାନେ ଆପେ ଆପେ ବଢ଼ିଯିବା ପାଇଁ ନିଜସ୍ୱ ଦାବୀ ଉତ୍‌ଥାପନ କରନ୍ତି । ଏଥିରେ କୌଣସି ପ୍ରତିବଂଧକ ସୃଷ୍ଟି ହେଲେ ଉପନ୍ୟାସଟି ଅଧାରୁ ହିଁ ନଷ୍ଟ ହୋଇଯାଏ । ତାକୁ ଫୋପାଡ଼ି ଦେବା ଛଡା ଆଉ କିଛି କରିବାର ନଥାଏ ।

ଛ) ବଡ ଅଭିଯୋଗଟି ହେଲା ଦର୍ଶନ ବିରୁଦ୍ଧରେ । ଅଧିକାଂଶ ଲଘୁ ପାଠକ ଉପନ୍ୟାସରୁ ଦର୍ଶନ ଖୋଜନ୍ତି ନାହିଁ । କିନ୍ତୁ ଦର୍ଶନ ନଥାଇ ଉପନ୍ୟାସ କାହିଁ ? ପୃଥିବୀର ସମସ୍ତ ପ୍ରସିଦ୍ଧର ଭିତ୍ତି ଔପନ୍ୟାସିକର ଦର୍ଶନ ଉପରେ ହିଁ ପ୍ରତିଷ୍ଠିତ । ଆମର ସାଧାରଣ ପାଠକମାନେ ଉଚ୍ଚାଙ୍ଗ ଉପନ୍ୟାସ ବିରୁଦ୍ଧରେ ହିଁ ଅଭିଯୋଗ କରିଥାଆନ୍ତି । କିନ୍ତୁ ପରେ ଆଲୋଚନା ଜରିଆରେ ଦର୍ଶନଟି ଜଣା ପଡ଼ିଗଲେ ପାଠକ ପ୍ରତିବଂଧକ ଦୂର ହୋଇଯାଏ । ଏହା ସବୁ ଦେଶରେ ଘଟିଛି, ଏଠି ମଧ୍ୟ ଘଟୁଛି ।

ପାଠକୀୟ ପ୍ରତିକ୍ରିୟା ସ୍ୱାଗତଯୋଗ୍ୟ । କିନ୍ତୁ ମୋ ପାଇଁ ପାଠକୀୟ ପ୍ରତିକ୍ରିୟା ସର୍ବଦା ସ୍ୱାଗତଯୋଗ୍ୟ ହୋଇ ନାହିଁ । ଏହାର କାରଣ, ମୁଁ ସାଧାରଣତଃ ଉଚ୍ଚାଙ୍ଗ ଉପନ୍ୟାସକୁ ଗୁରୁତ୍ୱ ଦେଇ ଆସିଛି । ଦେଖା ଯାଇଛି ଯେ ପାଠକୀୟ ପ୍ରତିକ୍ରିୟା କ୍ରମଶଃ ବଦଳି ଯାଇଛି ଓ ଯାହା ମୂଳତଃ ଦୁର୍ବୋଧ୍ୟ କୁହାଯାଉଥିଲା, ତାହା କ୍ରମଶଃ ସୁବୋଧ୍ୟ ହୋଇଯାଇଛି । ମୋ ମତରେ ଏହାହିଁ ହେବା ଉଚିତ ।

ଜ) ଓଡ଼ିଶାର ସମସ୍ୟା ବର୍ତ୍ତମାନ ଏକ ଜଟିଳ ସାଂସ୍କୃତିକ ସମସ୍ୟା । ଏହାର ଦୁଇଟି ଦିଗ ଅଛି – ନିଜକୁ ଓଡ଼ିଆ ବୋଲି ଭବିବା ଓ ତା' ସହିତ ଏକ ବିଶ୍ୱ ସଂସ୍କୃତିର ଦାୟାଦ ରୂପେ ଭବିବା, ଆଂଚଳିକତା ଆମକୁ ଏ ଯାବତ୍ ଓଡ଼ିଆ କରି ରଖିଛି । ଏଥିରୁ ମୁକ୍ତି ପାଇବାକୁ ହେଲେ ଆମେ ଫକୀରମୋହନ ଯୁଗରୁ ମୁକ୍ତ ହୋଇ ଆମ ନିଜ ଯୁଗରେ ପାଦ ରଖିବା ଆବଶ୍ୟକ । □

❻ କୃଷ୍ଣ ପ୍ରସାଦ ମିଶ୍ର
ବାଣୀବିହାର, ଭୁବନେଶ୍ୱର

କ) କାରଣ ଅନେକ ଓ ଅନେକ ଜଟିଳ, କିନ୍ତୁ ଏକଥା ନିହାତି ସତ୍ୟ ଯେ ଗତ ଏକ ଶହ ବର୍ଷ ମଧ୍ୟରେ ଓଡ଼ିଶାରେ, ଭାରତରେ ଓ ଅନ୍ୟତ୍ର ଯାହା ସବୁ ମହତ୍ତ୍ୱପୂର୍ଣ୍ଣ ଘଟଣା ହୋଇଯାଇଛି ସେ ସବୁଥିରୁ ଅଧିକାଂଶ ଓଡ଼ିଆ ଉପନ୍ୟାସ ଭିତରକୁ ଆସି ନାହାନ୍ତି ।

ଖ) ମୋର ଦୁଃଖ ଯେ କାନାଡ଼ାରେ ମୁଁ ମୋର ସ୍ତ୍ରୀ ଓ ପୁଅ ସହ ଚାରିବର୍ଷ ରହିଥିଲେ ମଧ୍ୟ କାନାଡା ଓ ଉତ୍ତର ଆମେରିକାର ଅନୁଭବକୁ ନେଇ କୌଣସି ଉପନ୍ୟାସ ଲେଖି ପାରିନି । 'ମୃଗତୃଷ୍ଣା'ରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଅନୁଭୂତି, 'ଫିହକଟୀ' ରେ ବାଣପୁରରେ କଟାଇଥିବା ବାଲ୍ୟ ଜୀବନର ଓ 'ନେପଥ୍ୟ'ରେ ବିବାହର ଓ ଚାକିରୀ ଗ୍ରହଣ କରିବା ପୂର୍ବ ଜୀବନର କେତେକ ଅନୁଭୂତି ବର୍ଣ୍ଣିତ ହୋଇଛି ।

ଗ) ହଁ, ଆପଣଙ୍କ ବିଚାର ସହ ମୁଁ ପୂର୍ଣ୍ଣ ଏକ ମତ । "ଓଡ଼ିଆ ପାଠକ କାହାନ୍ତି ? ଏଠି ଅଛନ୍ତି „ବଂଗଳା ପାଠକ", "ହିନ୍ଦୀ ପାଠକ", "ତେଲୁଗୁ ପାଠକ" ନହେଲେ "ଇଂରେଜୀ ପାଠକ" ।

ଘ) କଥାବସ୍ତୁ ଓ ଶିଳ୍ପରୀତି ଉଭୟ ମୋ ପାଇଁ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ବସ୍ତୁତଃ ଶିଳ୍ପରୀତି ଉପରେ ଜୋର୍ ଦେବା ବେଳକୁ ମୁଁ କ୍ଷୁଦ୍ର ଗଳ୍ପକୁ ଆକୃଷ୍ଟ ହୋଇ ପଡ଼ିଲି ।

ଙ)"ସମୟଗତ ପ୍ରାଣସ୍ପନ୍ଦନ" ଓଡ଼ିଆ ଗଳ୍ପରେ ଯେପରି ହୋଇ ପାରିଛି ଉପନ୍ୟାସରେ ସେପରି ହୋଇ ପାରିନି । କାହ୍ନୁଚରଣ, ଗୋପୀନାଥ, ଶାନ୍ତନୁ ଆଚାର୍ଯ୍ୟଙ୍କ କେତୋଟି ଉପନ୍ୟାସ ଓ ଗଣେଶ୍ୱର ମିଶ୍ରଙ୍କ କେତୋଟି ଛୋଟ ଉପନ୍ୟାସ ଏ ଦୃଷ୍ଟିରୁ ଉଲ୍ଲେଖ ଯୋଗ୍ୟ । କିନ୍ତୁ ଏହି ଦୃଷ୍ଟିରୁ ସୁରେନ୍ଦ୍ର ମହାନ୍ତିଂକ ଉପନ୍ୟାସ ଗୁଡ଼ିକୁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରିବାକୁ ହେବ ।

ଚ) ଗୋଟିଏ ପ୍ରକାର ଉପନ୍ୟାସ ପାଇଁ ଏହା ଏକ ମଡେଲ ହୋଇପାରେ । ସବୁ ଉପନ୍ୟାସରେ ନୁହେଁ । ମହାପାତ୍ର ନୀଳମଣି ସାହୁଙ୍କ "ଅଭିଶପ୍ତ ଗନ୍ଧର୍ବ"କୁ ଉପନ୍ୟାସ ଭାବି ପଢନ୍ତୁ ଦେଖିବେ କିପରି ଏ ମଡେଲ୍ ଭାଂଗି ଯାଇଛି ।

ଛ) ମୁଁ କାହିଁକି ଆଉ ଉପନ୍ୟାସ ଲେଖୁନାହିଁ ଏତିକି ହିଁ ମୋ ବିରୁଦ୍ଧରେ ମୋର ସାହିତ୍ୟିକ ବଂଧୁ ଓ ପାଠକ ବନ୍ଧୁମାନଙ୍କର ଅଭିଯୋଗ । ଲେଖିବି, ନିଶ୍ଚୟ ଲେଖିବି, ଏହା କହି ମୁଁ ସେମାନଙ୍କୁ ଆଜିଯାଏଁ ଶାନ୍ତ କରି ରଖିଛି । ଜୀବିକା ଓ ଜୀବନ ଜଂଜାଳ ଭିତରେ ଗପ ଲେଖିବା ପାଇଁ ସମୟ ପାଇ ଯାଇଛି, କିନ୍ତୁ ଉପନ୍ୟାସ ପାଇଁ ନୁହେଁ । ଏଥିପାଇଁ ମୁଁ ଦୁଃଖିତ ଓ ଚିନ୍ତିତ ।

ଜ) ଡକ୍‌ଟର ନୃସିଂହ ଚରଣ ପଣ୍ଡା ଓଡ଼ିଆ ଉପନ୍ୟାସ ଆକାଶରେ ଏକ ମହାନ ଜ୍ୟୋତିଷ୍କ ହୋଇ ଦେଖା ଦେଇଛନ୍ତି । ତାଙ୍କର "ସପ୍ତସିନ୍ଧୁ" ଓ "ଚଣ୍ଡାଶୋକ" ଉପନ୍ୟାସ ଗୁଡ଼ିକୁ ପଢି ପ୍ରତ୍ୟେକ ଓଡ଼ିଆ ଏହି ପ୍ରତିଭଶାଳୀ ଔପନ୍ୟାସିକଙ୍କୁ ସମ୍ମାନ ଦେଖାନ୍ତୁ ।

ଶତ ବାର୍ଷିକୀ ଉପଲକ୍ଷେ ମୁଁ ନିଜେ ୧୯୮୮ ରେ ମୋର ନୂଆ ଉପନ୍ୟାସଟି ପ୍ରକାଶ କରିବି ।



○ ବିଭୂତି ପଟ୍ଟନାୟକ
୩୪ ଲୁଇସ୍ ରୋଡ, ଭୁବନେଶ୍ୱର

କ) ଗତ ଶହେ ବର୍ଷ ମଧ୍ୟରେ ଆମର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଜୀବନରେ ଯେଉଁ ସବୁ ଅଭୁତପୂର୍ବ ପରିବର୍ତ୍ତନ ଘଟିଛି ; ଆମ ଉପନ୍ୟାସରେ ତାର ଆଂଶିକ ପ୍ରତିଫଳନ ମାତ୍ର ଘଟିଛି । ଆମର ଅଧିକାଂଶ ଔପନ୍ୟାସିକ ମଧ୍ୟବିତ୍ତ ଶ୍ରେଣୀର ଲୋକ, ତେଣୁ ମଧ୍ୟବିତ୍ତ ଦୃଷ୍ଟିର ଦର୍ପଣରେ ହିଁ ଆମ ସମାଜ – ବିପ୍ଳବର ଛବି ଉପନ୍ୟାସରେ ପ୍ରତିବିମ୍ବିତ ହୋଇଛି । ଅନ୍ତ୍ୟଜ ଶ୍ରେଣୀର ଆଶା - ଆକାଂକ୍ଷା, ସେମାନଙ୍କ ଜୀବନ ସଂଗ୍ରାମର କାହାଣୀ ଆମ ଉପନ୍ୟାସରେ ଯେ ଅନେକାଂଶରେ ଅବ୍ୟକ୍ତ ରହି ଯାଇଛି; ଏ କଥା ଅସ୍ୱୀକାର କରି ଲାଭ ନାହିଁ । ଅଥଚ ଏହି ଅନ୍ତ୍ୟଜ ଶ୍ରେଣୀର ଲୋକେ– ହରିଜନ, ଗିରିଜନ, ମିସ୍ତ୍ରୀ, ମୂଲିଆ, ନୋଳିଆ, ଖାଦାନର ଶ୍ରମିକ, କୃଷି କ୍ଷେତର ଚାଷୀ, ଯୁଦ୍ଧ

କ୍ଷେତ୍ରରେ ସୈନିକ ଯେଉଁମାନେକି ଆମ ସାମାଜିକ ଅଗ୍ରଗତିରେ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରନ୍ତି – ସେମାନେ ଆମ ଉପନ୍ୟାସର ନେପଥ୍ୟରେ ରହି ଯାଉଛନ୍ତି ।

ଖ) ଉପନ୍ୟାସ ହେଉଛି ସାମାଜିକ ମଣିଷର କାଳ୍ପନିକ ଇତିହାସ । କିନ୍ତୁ ଏ କଳ୍ପନା ଆକାଶ କଇଁଆ ନୁହେଁ । ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ ସହିତ ସାମାଜିକ ମଣିଷର ଜୀବନ ଯାପନ ପ୍ରଣାଳୀ, ତାର ଚିନ୍ତା ଓ ଚେତନାରେ ପରିବର୍ତ୍ତନ ଘଟେ । ଏହି ପରିବର୍ତ୍ତନର ଧାରକୁ କଳା ରୂପ ଦେବା ସାହିତ୍ୟ ସ୍ରଷ୍ଟାର କର୍ତ୍ତବ୍ୟ । ନିଜ ଅନୁଭୂତି ଓ ଉପଲବ୍ଧିର କଷଟି ପଥରରେ ଲେଖକ ସମାଜରେ ଘଟୁଥିବା ଘଟଣାକୁ ପରଖ କରି ନେଇ ତାକୁ ଚରିତ୍ର ଓ କାହାଣୀ ମାଧ୍ୟମରେ ଉପନ୍ୟାସରେ ପରିବେଷଣ କରେ । ସମାଜ ପରିବର୍ତ୍ତନର ଏହି ମୌଳିକ ଧାରକୁ ଯିଏ ଯେତେ ଭଲ ଭାବରେ ବୁଝିପାରେ ; ତାର ଉପନ୍ୟାସର ଚରିତ୍ର ସେତେ ଆଧୁନିକ ହୋଇ ପାରନ୍ତି । ସାମାଜିକ ଗତିଶୀଳତାକୁ ବାଦ୍ ଦେଇ ସାହିତ୍ୟରେ କୌଣସି ଆଧୁନିକତା ଆସିପାରେ ନାହିଁ । ସେଥିପାଇଁ ସ୍ରଷ୍ଟାର ବ୍ୟକ୍ତିଗତ ଜୀବନାନୁଭୂତି ପର୍ଯ୍ୟାପ୍ତ ନୁହେଁ , ଏଥିଲାଗି ଲୋଡା ତାର ଗଭୀର ଅନ୍ତର୍ଦୃଷ୍ଟି, ଜୀବନ ଓ ଜଗତ୍ ସମ୍ପର୍କରେ ଏକ ପ୍ରଗତିଶୀଳ ସ୍ୱଚ୍ଛ ଦୃଷ୍ଟିକୋଣ । ଏଥିପାଇଁ ବ୍ୟକ୍ତିଗତ ଅନୁଭୂତି ସହିତ ତାକୁ କଳ୍ପନାର ମିଶ୍ରଣ ଘଟାଇବାକୁ ପଡ଼େ ।

ମୁଁ ଯେଉଁ ଚରିତ୍ର ମାନଙ୍କ ସହିତ ଏକାତ୍ମ ହୋଇ ନପାରେ ; ସେମାନଙ୍କୁ ନେଇ ଉପନ୍ୟାସ ଲେଖେ ନାହିଁ । ଏହା ହିଁ ମୋ ଉପନ୍ୟାସର ପ୍ରଧାନ ଶକ୍ତି ପୁଣି ପ୍ରଧାନ ଦୁର୍ବଳତା ।

ଗ) ଔପନ୍ୟାସିକ ନିଜେ ନିଜର ପାଠକ ସୃଷ୍ଟି କରେ – ତେଣୁ ପାଠକୀୟତାର ଅଭାବ ଉପନ୍ୟାସ ସୃଷ୍ଟିର ପ୍ରତିବଂଧକ ହୋଇ ନପାରେ । ମୋର "ବଧୂ ନିରୁପମା" ଉପନ୍ୟାସର ପ୍ରଥମ ଏଗାର ଶହ କପି ଛ ମାସ ମଧ୍ୟରେ ବିକ୍ରୀ ହୋଇ ଯାଇଥିଲା । ଗୋବିନ୍ଦ ଦାସଙ୍କ 'ଭଗ୍ନାଂଶ' ଉପନ୍ୟାସ ପ୍ରକାଶନ ବେଳେ ମଧ୍ୟ ତାହାହିଁ ଘଟିଥିଲା ବୋଲି ସେ ଉପନ୍ୟାସର ପ୍ରକାଶକଙ୍କଠାରୁ

ଶୁଣିଛି । ସୁରେନ୍ଦ୍ର ମହାନ୍ତିଙ୍କ "ଶତାବ୍ଦୀର ସୂର୍ଯ୍ୟ" ମଧ୍ୟ ଆଶାତୀତ ଦ୍ରୁତଗତିରେ ବିକ୍ରୀ ହୋଇ ଯାଇଥିଲା । ତେଣୁ ଭଲ ଉପନ୍ୟାସର ପାଠକ ନାହାନ୍ତି – ଏହା ପ୍ରଶ୍ନର ନୁହେଁ – ଅପପ୍ରଶ୍ନର ବୋଲି ମୋର ଧାରଣା ।

ଘ) ଉପନ୍ୟାସର ବିଷୟବସ୍ତୁ ଅନୁସାରେ ତା'ର ଭାଷା, ଶୈଳୀ ବଦଳି ଯାଏ । 'ସୁଲତାନା' ଭଳି ଐତିହାସିକ ଉପନ୍ୟାସ ରଚନା କଲାବେଳେ ମୁଁ ଯେଉଁ ଆଳଙ୍କାରିକ ଭାଷା ବ୍ୟବହାର କରିଛି, 'ଓଦା ମାଟିର ସ୍ୱର୍ଣ୍ଣ' କିମ୍ବା 'ଏଇ ଗାଁ ଏଇ ମାଟି' ଭଳି ଗ୍ରାମ–ଭିତ୍ତିକ ଉପନ୍ୟାସରେ ସେଇଭଳି ଭାଷା ବ୍ୟବହାର କରିଥିଲେ ତାହା ଗ୍ରାମ୍ୟ ପରିବେଶ ସୃଷ୍ଟି କରିବାରେ ନିଶ୍ଚୟ ଅନ୍ତରାୟ ହୋଇ ଥାଆନ୍ତା । ପରିବେଶ ସୃଷ୍ଟି କରିବାରେ ପ୍ରକାଶ ଭଂଗୀ ଓ ଭାଷା ମୁଖ୍ୟ ଅଂଶ ଗ୍ରହଣ କରେ । ତେଣୁ ଉପନ୍ୟାସର ଶିଳ୍ପରୀତି ତାର କାହାଣୀ ପରିବେଶକୁ ଅନୁସରଣ କରେ । 'କେଶବତୀ କନ୍ୟା', 'ଦିନ ଯାଏ ଚିହ୍ନ ରହେ' ଭଳି ମନସ୍ତାତ୍ତ୍ୱିକ ଉପନ୍ୟାସ ଲେଖିଲାବେଳେ ଚିଠି, ଡ଼ାଏରୀ , ଆତ୍ମକଥନ ପ୍ରଭୃତି ବିଭିନ୍ନ ଆର୍ଟ ଫର୍ମ ମୁଁ ଯେପରି ବ୍ୟବହାର କରିଛି 'ପ୍ରେମିକା' ଭଳି ପ୍ରେମୋପନ୍ୟାସ ଲେଖିଲା ବେଳେ 'ଉପକ୍ରମ', 'ପରିଶିଷ୍ଟ' ପ୍ରଭୃତି ପ୍ରବନ୍ଧ-ଶୈଳୀକୁ ସେହିଭଳି ସ୍ୱଚ୍ଛନ୍ଦରେ ବ୍ୟବହାର କରିଛି । ଓଡ଼ିଆ ଔପନ୍ୟାସିକମାନଙ୍କ ମଧ୍ୟରେ ମୁଁ ବୋଧହୁଏ ଉପନ୍ୟାସରେ ସର୍ବାଧିକ ନୂତନ ରୀତିର ପରୀକ୍ଷା ନିରୀକ୍ଷା କରିଥିବା ଲେଖକ । କିନ୍ତୁ ମୋର ଉପନ୍ୟାସ ; ରୀତି ସର୍ବସ୍ୱ ବୋଲି କେହି କହି ପାରିବେ ନାହିଁ । କେଉଁ ଶୈଳୀ ସାହାଯ୍ୟରେ ଉପନ୍ୟାସର ଭାବ ବସ୍ତୁକୁ ସ୍ୱଚ୍ଛନ୍ଦରେ ପାଠକ ପାଖରେ ପହଞ୍ଚାଇ ଦେଇ ହେବ ; ଏଇ ଭାବନା ହିଁ ମତେ ନୂତନ ରୀତିରେ ଉପନ୍ୟାସ ଲେଖିବା ପାଇଁ ପ୍ରଲୁବ୍ଧ କରିଛି – ପାଠକ ମନରେ ଚମକ ସୃଷ୍ଟି କରିବା ପାଇଁ ନୁହେଁ ।

ଙ) ଗତ ଏକ ଶତାବ୍ଦୀ ମଧ୍ୟରେ ନୂତନ ବୈଜ୍ଞାନିକ ଆବିଷ୍କ୍ରିୟା, ଗମନାଗମନର ସୁବିଧା, ରେଡ଼ିଓ, ଟେଲିଭିଜନ୍‌ର ପ୍ରସାର ଫଳରେ ପୃଥିବୀର ଭୌଗୋଳିକ ଦୂରତ୍ୱ ଅନେକ ପରିମାଣରେ ହ୍ରାସ ପାଇଛି । ଫଳରେ ଆମେ କେବଳ ପ୍ରାଦେଶିକ କିମ୍ବା ଜାତୀୟ ଚେତନା ନୁହେଁ ; ଆନ୍ତର୍ଜାତିକ ଭାବନା ଦ୍ୱାରା

ପ୍ରଭାବିତ ହୋଇଛନ୍ତି । ବିଶେଷ କରି ଇଂରେଜ ଭାଷାର ସହାୟତା ଯୋଗୁ ୟୁରୋପ, ଆମେରିକା, ଆଫ୍ରିକା ଓ ଲାଟିନ୍ ଆମେରିକାର ଉପନ୍ୟାସ ଭାବନା ସହିତ ମଧ୍ୟ ଆମେ ସୁପରିଚିତ । ତେଣୁ ଅନେକ ଭାରତୀୟ ଔପନ୍ୟାସିକ ବିଂଶ ଶତାବ୍ଦୀର ୟୁରୋ – ଆମେରିକାନ୍ ଦର୍ଶନ, ସାହିତ୍ୟ ଭାବନା ନେଇ ଉପନ୍ୟାସ ଲେଖିଲା ବେଳେ ଯେଉଁ ସାଧାରଣ ଭାରତୀୟମାନଙ୍କ ପାଇଁ ସେମାନଙ୍କର ଲେଖା ; ସେ ପାଠକ ଅଷ୍ଟାଦଶ – ଊନବିଂଶ ଶତାବ୍ଦୀର ଭାବ– ଜଗତରେ ଅଟକି ରହିଥିବା କଥା ଭୁଲି ଯାଉଛନ୍ତି । ଫଳରେ ପାଠକ ଓ ଲେଖକଙ୍କ ମଧ୍ୟରେ ଦୂରତ୍ୱ ସୃଷ୍ଟି ହୋଇଛି ; ଅନ୍ୟ ଏକ ପୃଥିବୀର ପ୍ରାଣ ସ୍ପନ୍ଦନକୁ ଆମ ଦେଶର ଲୋକଙ୍କ ପ୍ରାଣରେ ଆରୋପ କରିବା ଦ୍ୱାରା ସେ ସ୍ପନ୍ଦନ ମଧ୍ୟ ଉଷ୍ଣତା ଓ ଆବେଦନ ହରାଇ ବସୁଛି । ଦ୍ୱିତୀୟ ମହାଯୁଦ୍ଧର ପ୍ରଚଣ୍ଡ ଆଘାତରେ କ୍ଷତାକ୍ତ ୟୁରୋପର ଅସ୍ତିବାଦୀ ଦର୍ଶନକୁ ଅହିଂସ ସଂଗ୍ରାମରେ ସ୍ୱାଧୀନତା ଲାଭ କରିଥିବା ଭାରତୀୟ ଚରିତ୍ରଠାରେ ଆରୋପ କରି ଉପନ୍ୟାସ ଲେଖିଲେ ; ତାହା ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇପାରେ ; କିନ୍ତୁ ସାଧାରଣ ପାଠକ ମନରେ ତାହା କୌଣସି ଗଭୀର ଆଲୋଡନ ସୃଷ୍ଟି କରିପାରେ ନାହିଁ । ବର୍ତ୍ତମାନ ସମୟର ସ୍ପନ୍ଦନକୁ କେବଳ ନିଜ ଭିତରେ ଅନୁଭବ କରିବା ଉପନ୍ୟାସର ଧର୍ମ ନୁହେଁ ; ବର୍ତ୍ତମାନ ସମୟକୁ ଅତିକ୍ରମ କରି ଭବିଷ୍ୟତ ସମୟର ସାମଗ୍ରୀକୁ ନିଜ ମଧ୍ୟରେ ସଂଚୟ କରିଯିବା ହେଉଛି ତାର ବର୍ତ୍ତମାନ ସମୟର ଲକ୍ଷ୍ୟ ।

୮) ପ୍ରତି ଲେଖକର ଉପନ୍ୟାସ ଲେଖିବାର ବାଗ ଅଲଗା ଅଲଗା । କାହା ପାଇଁ କଥାବସ୍ତୁ ବଡ, କାହା ପାଇଁ ଭାବବସ୍ତୁ ମୁଖ୍ୟ । କିଏ ପାଠକକୁ ମନ୍ତ୍ରମୁଗ୍ଧ କରି ରଖିବା ଲାଗି କାହାଣୀ ଓ ଚରିତ୍ରକୁ ନେଇ ସୃଷ୍ଟିର ଖେଳରେ ମାତେ ; ଏକ ଛୋଟ ଭାବନାକୁ ମହତ୍ତ୍ୱପୂର୍ଣ୍ଣ କରି ପାଠକ ହୃଦୟରେ ଦୀର୍ଘସ୍ଥାୟୀ ସ୍ଥାନ ଲାଭ କରିବା ଲାଗି ଆଉ ଅବା କିଏ ଇଟା ଉପରେ ଇଟା ଥୋଇ ; ଭାଷାର ବାଲି ସିମେଣ୍ଟ ବୋଳି ଉପନ୍ୟାସର ମନ୍ଦିର ତୋଳି ବସେ । କେମିତି ଉପନ୍ୟାସ ଲେଖା ହୋଇଛି ସେଇଟା ବଡ କଥା ନୁହେଁ ; ବଡ କଥା ହେଲା ସମାଜକୁ

ଆଗେଇ ନେବାରେ ସେଥିରେ କି ଉପାଦାନ ରହିଛି – ଏ ସମସ୍ୟା -- କଣ୍ଟକିତ ପୃଥିବୀରେ ବାସ କରୁଥିବା ପାଠକ ମନରେ ପ୍ରତିକୂଳ ପରିବେଶ ସତ୍ତ୍ୱେ ବଂଚି ରହିବାର ନିଶା ସେ ଉପନ୍ୟାସ କେତେ ତିଆରି କରି ପାରୁଛି ।

ଛ) ମୁଁ ପାଠକକୁ ପ୍ରଭାବିତ କରିବାକୁ ଚାହେଁ – ପାଠକ ଦ୍ୱାରା ପ୍ରଭାବିତ ହେବା ପାଇଁ ନୁହେଁ । ମୁଁ ମୋ ଉପନ୍ୟାସର ସାର୍ଥକତା ଓ ଦୁର୍ବଳତା – ଏ ଦୁଇଟି ଦିଗ ବିଷୟରେ ଖୁବ୍ ସଚେତନ । ପାଠକର ଅଭିଯୋଗ ପ୍ରତି ସେଥିପାଇଁ ମୁଁ ଉଦାସୀନ । ○

ପ୍ରତିଭା ରାୟ
ତୁଳସୀପୁର, କଟକ- ୮

କ) ପ୍ରାଚୀନ ପୃଥିବୀରେ ଜଡ, ଚେତନ ଏବଂ ଅବଚେତନରେ ଯାହା କିଛି ପ୍ରତି ମୁହୂର୍ତ୍ତରେ ଘଟିତ ହୁଏ ତାହା ପୃଥିବୀର ପ୍ରାରମ୍ଭ କାଳରୁ ଲେଖା ଯାଇଥିଲେ ମଧ୍ୟ ଅନେକ କିଛି ଅନୁକ୍ତ ରହି ଯାଇଥାନ୍ତା । ମାତ୍ର ଶହେବର୍ଷର କାହାଣୀରେ ଅନେକ କିଛି ଅନୁକ୍ତ ରହିଯିବା ଅତ୍ୟନ୍ତ ସ୍ୱାଭାବିକ କଥା । ଲେଖକ ଯାହା ବ୍ୟକ୍ତ କରେ ତା'ଠାରୁ ବେଶୀ ଭାଗ ଅବ୍ୟକ୍ତ ରହିଯାଏ ।

ଖ) ଅନୁଭୂତି ଦୁଇ ପ୍ରକାର – ପ୍ରତ୍ୟକ୍ଷ ଏବଂ ପରୋକ୍ଷ । ଲେଖକ ଦୁଇଟି ପ୍ରକାର ଅନୁଭୂତି ଉପରେ ନିର୍ଭର କରିଥାଏ । ମୁଁ ଯେଉଁ ଆଧୁନିକ ସମାଜରେ ବାସକରେ ସମାଜରେ ଆଧୁନିକ ମଣିଷ ଯେଉଁ ପ୍ରକାର ମାନସିକ ଦ୍ୱନ୍ଦ, ଜୀବନ ସଂଗ୍ରାମ ଓ ସଂଘାତର ସମ୍ମୁଖୀନ ହୁଏ, ଯେଉଁ ଯେଉଁ ସମସ୍ୟାର ସାମ୍ନା କରେ ତାକୁହିଁ କଥା ଓ କାହାଣୀରେ ବ୍ୟକ୍ତ କରିଛି । ଉଦାହରଣ ସ୍ୱରୂପ 'ଦେହାତୀତ' ଉପନ୍ୟାସ ମୋର ପ୍ରତ୍ୟକ୍ଷ ଅନୁଭୂତି ଜଡ଼ିତ ଘଟଣା ଉପରେ ଆଧାରିତ । ଏହି ଉପନ୍ୟାସରେ ମୁଁ ଏକ ମୁଖ୍ୟ ଚରିତ୍ର ଭାବରେ ଭୂମିକା ଗ୍ରହଣ କରିଛି । ସେହିପରି 'ଆଶାବରୀ' , 'ଉପନାୟିକା' , 'ପୂର୍ଣ୍ଣତୋୟା' ଉପନ୍ୟାସ ମୋ

ପରୋକ୍ଷ ଅନୁଭୂତି ଉପରେ ଆଧାରିତ । ଘଟଣାଗୁଡ଼ିକର ସତ୍ୟତା ଅଛି, କିନ୍ତୁ ମୁଁ ପ୍ରତ୍ୟକ୍ଷ ଭାବରେ ଏଗୁଡ଼ିକ ସହ ଜଡ଼ିତ ନୁହେଁ । ପରୋକ୍ଷ ଅନୁଭୂତିକୁ ଆପଣାର କରି ନେଇ ପ୍ରତ୍ୟକ୍ଷ ଅନୁଭୂତିର ରୂପ ଦେବା ପାଇଁ ଲେଖକ ଚେଷ୍ଟା କରିଥାଏ ।

ଗ) କୌଣସି କାଳେ ପାଠକ, ଲେଖକ ସୃଷ୍ଟି କରେ ନାହିଁ । ଲେଖକ ହିଁ ପାଠକ ସୃଷ୍ଟି କରିଥାଏ । ଆପଣ ଯଦି ଭାବୁଛନ୍ତି ପାଠକୀୟତାର ଅଭାବ ପରିଲକ୍ଷିତ ହେଉଛି ତେବେ ଏହାର କାରଣ ଲେଖକୀୟତାର ଅଭାବ । ଉପନ୍ୟାସର ଦିନ, କାଳ ଶେଷ ହେବ ନାହିଁ; ଏ ବିଶ୍ୱାସ ମୋର ରହିଛି । ଲେଖକ ଯେତେବେଳେ ଲେଖା ଆରମ୍ଭ କରିଥାଏ ତାହା ଅନ୍ତଃପ୍ରେରଣାରୁ ହିଁ ଆରମ୍ଭ କରିଥାଏ । ପରେ ପାଠକହିଁ ତାର ପ୍ରେରଣା ହୋଇଯାଏ ।

ଘ) ଉଭୟଙ୍କୁ । କଥାବସ୍ତୁ ଯଦି ଉପନ୍ୟାସର ପ୍ରାଣ ହୁଏ, ଶିଳ୍ପରୀତି ହେଉଛି ତା'ର ଆଧାର – ଠିକ୍ ଆତ୍ମା ଏବଂ ଶରୀର ପରି । ଆତ୍ମାହୀନ ଶରୀର ଯେପରି ସ୍ପନ୍ଦନ ହୀନ; ଶରୀରହୀନ ଆତ୍ମା ସେପରି ଦୁର୍ବୋଧ୍ୟ । କାହାଣୀ ହିଁ ଶିଳ୍ପରୀତି ସ୍ଥିର କରେ । ଆତ୍ମା ଶରୀରକୁ ବାଛି ନିଏ ।

ଙ) ବିଶ୍ୱ ସାହିତ୍ୟ, ଭାରତୀୟ ସାହିତ୍ୟ କିମ୍ବା ଓଡ଼ିଆ ସାହିତ୍ୟର କଥା ଆପଣ ପଚାରୁଛନ୍ତି, ତାହା ପ୍ରଶ୍ନରେ ସ୍ପଷ୍ଟ ନୁହେଁ । ତେବେ ଓଡ଼ିଆ ସାହିତ୍ୟର କଥା ଦୃଷ୍ଟାନ୍ତକରେ ବିଚାର କରାଯାଉ । କାହ୍ନୁଚରଣ, 'ବୃକବାବୁ', ଗୋପିନାଥଙ୍କର 'ମାଟି ମଟାଳ', ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର 'ଶକୁନ୍ତଳା' ପ୍ରତିଭା ରାୟଙ୍କର 'ନୀଳତୃଷ୍ଣା'ଓ'ସମୁଦ୍ରର ସ୍ୱର' ଇତ୍ୟାଦି ଉପନ୍ୟାସକୁ ବିଚାରକୁ ନିଆଯାଇପାରେ । ଆହୁରି ମଧ୍ୟ ବହୁ ଲେଖକଙ୍କ ଉପନ୍ୟାସରେ ସମୟର ସ୍ପନ୍ଦନ ଅନୁଭୂତ ହୁଏ, ସେଗୁଡ଼ିକ ଏଠାରେ ଆଲୋଚନା ସମ୍ଭବ ନୁହେଁ ।

ଚ) ଏହି ପ୍ରତିଷ୍ଠିତ ଔପନ୍ୟାସିକଙ୍କ ଶେଷ କଥାଟି ସହ ମୁଁ ଏକମତ କିନ୍ତୁ ପ୍ରଥମ କଥାଟି ସହ ନୁହେଁ । ମୋ ଅନୁଭୂତି ଯାହା କହେ ପ୍ରୟାସ କରି କାହାଣୀ ସୃଷ୍ଟି କରାଯାଇପାରେ ନାହିଁ । ସମସ୍ୟାଟିଏ, ଯନ୍ତ୍ରଣାଟିଏ, ଆଇଡ଼ିଆଟିଏ ବା କାହାଣୀଟିଏ କେତେବେଳେ କେଉଁ କ୍ଷଣରେ ଅନୁଭୂତିର ବେଳାଭୂମିରୁ ଅନୁଭବର

ଅନ୍ତଃସ୍ଥଳକୁ ଇଂଫ ଦିଏ, ଲେଖକ ସେ ମୁହୂର୍ତ୍ତରେ ଗଣକ ହୋଇପାରେ ନାହିଁ । ତା' ପରେ ଆସେ ପ୍ରୟାସ । କିପରି କେଉଁ ଦିଗରେ ଗତିକରି ସ୍ରୋତର ଅନୁକୂଳରେ ବା ପ୍ରତିକୂଳରେ ସମୁଦ୍ର ଲଂଘିବାକୁ ହେବ ତାରି ପ୍ରୟାସ ଭିତରେ ଅନେକ ଛୋଟ ବଡ କାହାଣୀର ଆହୁତି ସାହାଯ୍ୟରେ ମୁଖ୍ୟ କାହାଣୀଟି ପରିସମାପ୍ତି ଦିଗକୁ ଆଗେଇ ଯାଏ ।

ଛ] "ନାରୀ ଚରିତ୍ର ଦିଗରେ ମୁଁ ଯେତେଟା ସମ୍ବେଦନଶୀଳା, ପୁରୁଷ ଚରିତ୍ର ଚିତ୍ରଣ ଦିଗରେ ନୁହେଁ । ନାରୀ ଚରିତ୍ରକୁ ଶକ୍ତିଶାଳୀ କରି ପୁରୁଷ ଚରିତ୍ରକୁ ଦୁର୍ବଳ କରିବା ମୋ ଉପନ୍ୟାସର ସ୍ୱଭବ ।" ଏହାହିଁ କେତେକ ପାଠକଂକର ମୋ ପ୍ରତି ମୁଖ୍ୟ ଅଭିଯୋଗ । ମୁଁ ସର୍ବଦା ପାଠକର ପ୍ରତିକ୍ରିୟାକୁ ଯଥେଷ୍ଟ ଗୁରୁତ୍ୱ ଦିଏ । ମୋ ପାଇଁ ମୁଁ ଲେଖେ; ପାଠକ ବୁଝୁ କି ନବୁଝୁ ଏ ପ୍ରକାର ବିଶ୍ୱାସର ବଶବର୍ତ୍ତୀ ମୁଁ ନୁହେଁ । ମାତ୍ର ପାଠକର ଏହି ଅଭିଯୋଗଟିକୁ ପୂର୍ଣ୍ଣ-ପ୍ରାଣରେ ମୁଁ ମାନି ନେଇ ପାରେ ନାହିଁ । ଯେଉଁମାନେ ଏ ପ୍ରକାର ଅଭିଯୋଗ କରନ୍ତି ସେମାନେ ମୋର 'ପରିଚୟ' ଉପନ୍ୟାସର ଜଗୁ, 'ମେଘମେଦୁର'ର ଅମ୍ବୁଜ, 'ସମୁଦ୍ରର ସ୍ୱର'ର ନୀଳଗ୍ରୀବ, 'ନୀଳତୃଷ୍ଣା'ର କଳିଂଗ, ବିପ୍ଳବ ଓ ମନୀୟ ମିଆଁ, 'ପୂଣ୍ୟତୋୟା'ର ନିଶୀଥ, 'ଆଶାବରୀ'ର ଅଭିଳାଷ, 'ଶିଳା-ପଦ୍ମ'ର ନରସିଂହ ଦେବ, କମଳ ମହାରଣା, 'ଦେହାତୀତ'ର ଓଁକାର ଏବଂ 'ଯାଜ୍ଞସେନୀ'ର ଶ୍ରୀକୃଷ୍ଣ ଓ କର୍ଣ୍ଣଙ୍କ ଚରିତ୍ରକୁ ଅବହେଳା କରି ଏପରି ମନ୍ତବ୍ୟ ଦେଇଛନ୍ତି ବୋଲି ମୁଁ ମନେ କରେ । ଶରତ ଚନ୍ଦ୍ରଙ୍କ ନାରୀ ଚରିତ୍ରମାନେ ମଧ୍ୟ ଅତ୍ୟନ୍ତ ଶକ୍ତିମୟୀ ଏବଂ ବେଳେ ବେଳେ ପୁରୁଷଠାରୁ ମଧ୍ୟ ଅଧିକ ଶକ୍ତିଶାଳୀ । ହୁଏତ ତାଙ୍କ ପ୍ରତି ଏ ଅଭିଯୋଗ ଲଗୁହୁଏ ନାହିଁ, କାରଣ ସେ ପୁରୁଷ । ମାତ୍ର ସ୍ରଷ୍ଟା ମାନସ ନାରୀ ନୁହେଁ ବା ପୁରୁଷ ନୁହେଁ । ସ୍ରଷ୍ଟା ମାନସ ଲିଂଗ ଭେଦରେ କୌଣସି ଚରିତ୍ର ପ୍ରତି ପକ୍ଷପାତ ବିଗ୍ଭର କରିପାରେ ନାହିଁ; କାରଣ ପ୍ରତ୍ୟେକ ଚରିତ୍ର ହେଉଛି ସ୍ରଷ୍ଟାର ସନ୍ତାନ ।

ଜ] ଶେଷ କଥାରେ ମୁଁ ବିଶ୍ୱାସ କରେ ନାହିଁ । □

○ ପ୍ରସନ୍ନ କୁମାର ମିଶ୍ର

ଗ୍ରହିନୀ ଚୌକ, କଟକ—୩

କ) ଅନେକ ବିଷୟବସ୍ତୁ ଅଛି— ଯାହା ଉପନ୍ୟାସରେ ରୂପାୟିତ ହୋଇନି । କହିବାକୁ ଗଲେ— ଓଡ଼ିଆ ଉପନ୍ୟାସ ଅତି ସୀମାବଦ୍ଧ ପରିସର ଭିତରେ ହିଁ ଚଳପ୍ରଚଳ ହୋଇଛି । ଗଣ-ଜୀବନର ଗଭୀର ଓ ବ୍ୟାପକ ଅନୁଭବ ଭିତରକୁ ଉପନ୍ୟାସ ଆଉ ଗଲା କେଉଁ ଦିନ ? କେତେ ଜଣ ବା ଉପନ୍ୟାସ ଲେଖୁଛନ୍ତି ? ଏପରିକି ନିଟୋଳ ନିଚ୍ଛୁଟା ସେକ୍ସ୍ ମଧ୍ୟ ଉପନ୍ୟାସ ଭିତରକୁ ଅଣାହୋଇନି । ମୁଁ ପିଲାବେଳେ "ବଢି ପାଣିର ଦାନ୍ତ" ନାମରେ ଉପନ୍ୟାସଟିଏ ଲେଖିଥିଲି ବୋଲି ଆମ ଭାଷାର ଇଜ୍ଜତ ରହିଛି । ନହେଲେ ଏତେ ବଡ ଏକ ପ୍ରାକୃତିକ ବିପର୍ଯ୍ୟୟ (ଗଣ-ଜୀବନର ଚିର ଶତ୍ରୁ) ବନ୍ୟା ବିଷୟରେ ଉପନ୍ୟାସଟିଏ କାହିଁ ? ହଜାର ହଜାର ଶରଣାର୍ଥୀ ଓଡ଼ିଶାକୁ ଆସିଲେ —ରହିଲେ ଦଣ୍ଡକାରେ, ଚନ୍ଦ୍ର ଗିରିରେ, ଜମ୍ମୁରେ । ସେ ସବୁ ଅଂଚଳରେ ଏକ ନୂଆ ସଂସ୍କୃତି ଗଢିଉଠିଲା । ହେଲେ, —ପାଠକକୁ ସେଇ ସବୁର ଭିତ୍ତିରେ ଉପନ୍ୟାସଟିଏ କିଏ ଦେଲେ ? ଜାତୀୟ ଜୀବନର 'ହିରୋ' ଓ ସାଂସ୍କୃତିକ— ନାୟକମାନଂକୁ ଭିତ୍ତି କରି ଉପନ୍ୟାସ (ଯଥା— "କୁଳବୃଦ୍ଧ") କେଇ ଖଣ୍ଡ ଅଛି ?

ଖ) କହି ପାରିବିନି । କହିବା ଅନୁଚିତ ମଧ୍ୟ । ସେ ବିଷୟରେ ଭାବି ମୁଁ କାହିଁକି ସମୟ ନଷ୍ଟ କରିବି କହିଲେ ?

ଗ) ଦିନ ଶେଷ ହୋଇ ନି । ନୂଆ ଦିନ ଆରମ୍ଭ ହେଉଛି । ଯୁଗାନ୍ତର । ପାଠକ ନୂଆ ମାଲ୍ ଖୋଜୁଛନ୍ତି ।

ଘ) ମୁଁ ନିଜକୁ ପ୍ରକାଶ କରେ ମାତ୍ର । ଲେଖିବା ବେଳେ କଥା ବା ଶୈଳୀ ବିଷୟରେ ଭାବେନା । ନ ଭାବିବାଟି ହିଁ ମୋର ରୀତି ।

ଙ) ଆପଣ ଏ ପ୍ରଶ୍ନ ସମୀକ୍ଷକଙ୍କୁ ପଚାରନ୍ତୁ । 'ସ୍ପନ୍ଦନ' କଥା ରୋଗୀକୁ ପଚାରିଲେ କେମିତି ହେବ ? ସେ କଥା ଡାକ୍ତର ଷ୍ଟେଥିସ୍ ଲଗାଇ କହିବେ । ରୋଗୀ

ଗେଗଟା ଭେଗେ, ଲେଖକ ଉପନ୍ୟାସ ଭେଗେ । ଗେଗଟା ପୁରୁଣା କାଳିଆ କିମ୍ବା ଫୁ- ପରି ନୂଆ- ସେ କଥା ଡ଼ାକ୍ତର (ସମୀକ୍ଷକ) କହିବେ ।

ଚ) ପ୍ରଥମେ ଉଠାଇ ଆସେ ମେଘ । ପାହାଡ ଡାକେ– ରେ ମେଘ ! ଆ, ଆ । ମେଘ ଅଂଧାର କରି ଆସେ, କୁଦେ, ନାଚେ, ବିଜୁଳି ମାରେ । ତା'ପରେ ଗ୍ଲଛିଯାଏ । କିନ୍ତୁ ଶୁଖିଲା ପାହାଡରେ ଅନେକ ଛୋଟ ଛୋଟ ପାଣିର ଧାର ବା ଝରଣା ବାହାରି ପଡନ୍ତି । ସେମାନେ ପୁଣି ମିଶି ଯାଆନ୍ତି, ବଡ ଝରଣା ହୋଇ ଯାଆନ୍ତି– ବଡ ଝରଣାମାନେ ମିଶି ହୁଅନ୍ତି ନଈ । ତେବେ ନଈଟିଏ ତିଆରି ହେବା ଯାଏଁ ଧୈର୍ଯ୍ୟ ଧରି ନପାରିଲେ ଉପନ୍ୟାସ ଲେଖା ହୁଏନି । ମଜା କଥା ହେଉଛି –ପାହାଡ ନିଜେ ସେ ନଈଟାରେ ଗାଧୋଇ ପାରେ ନି ।

ଛ) ପାଠକମାନେ ଉଦାସୀନ । ଯେଉଁମାନେ ପଢ଼ିଛନ୍ତି କିଛି ଅଭିଯୋଗ କରିଛନ୍ତି । ଯେମିତି, ଜଣେ 'ବଢ଼ି ପାଣିର ଦାନ୍ତ' ପଢ଼ି (୧୯୬୧) କହିଲେ– 'ନ' ବର୍ଷ ଝିଅଟା' (ଭୂମି) ଅଛି । ଲୋକେ ଏ ବହି କିଣିବେ ନି । ମୁଁ କହିଲି- ପିଲଟାର ବୟସ ମୁଁ କିପରି ବଦଳେଇ ଦେବି ? ବହି ବରଂ ଛପା ନହେଉ । ସତକୁ ସତ 'ଆସନ୍ତା କାଲି' ରେ ଧାରାବାହିକ ଭବେ ବାହାରି ଥିଲେ ବି ବହି-ଆକାରରେ 'ବଢ଼ି ପାଣିର ଦାନ୍ତ' ସେତେବେଳେ ଛପା ହୋଇ ପାରିଲା ନାହିଁ । ଏଥିପାଇଁ କିଏ ଦାୟୀ ! ମୁଁ–ନା– ଅନ୍ୟମାନେ ! ପାଠକମାନଂକ ଅଭିଯୋଗ ଭରି ମଜା ଲଗେ– ମୁଁ ସେସବୁକୁ 'ହ୍ୟୁମର୍' ଶ୍ରେଣୀରେ ନେଇଯାଏ, ତେଣୁ ବାଧେ ନି ।

ଜଣେ ପାଠକ 'ଅସୁର' ପଢ଼ି ଲେଖିଲେ- ଆଜ୍ଞା ଏ ବିଜୟାଦେବୀଙ୍କୁ କେଉଁଠୁ ପାଇଲେ ? ମୁଁ କିଛି ଉତ୍ତର ଦେଲି ନି । କାରଣ ମୁଁ ଯେଉଁଠୁ ବିଜୟାଦେବୀଙ୍କୁ ଆଣିଲି, ଯଦି ସେ ଖୋଦ୍ ସେଠିକି ଦଉଡନ୍ତି– ବିଜୟାଦେବୀ ତାଙ୍କୁ ମିଳନ୍ତୁ ବା ନମିଳନ୍ତୁ– ମୋ ଉପନ୍ୟାସ ବିକ୍ରୀ ବନ୍ଦ ହୋଇଯିବ । ମୋ ଗୋପନ କଥା ମୁଁ କାହିଁକି ପାଠକଂକୁ କହିବି ?

ତେବେ ଅଜବ ପ୍ରଶ୍ନ ପଗ୍ଲରିବା ପାଠକଂକର ଗୋଟାଏ ସଉକି । ଆଉ କେତେକ– ଭୁସ୍ ପଣ୍ଡିତ ଥାନ୍ତି ସେମାନେ ଦି-ଗ୍ଲରିଟା ସମୀକ୍ଷା ବହି ପଢ଼ି-

ଥାନ୍ତି । ସେଇ ଅନୁସାରେ ପ୍ରଶ୍ନ ପଗ୍ଭରିଯାନ୍ତି । ବୁଝନ୍ତି ନାହିଁ– ପ୍ରତି ଲେଖକର ମନ ଭିତରେ ଗୋଟାଏ ଗୋପନ ଆଖଡ଼ା ଗ୍ଭଲିଛି । ଯାହା ବିଷୟରେ କୌଣସି ଟେର୍ ଏ ପର୍ଯ୍ୟନ୍ତ ସମୀକ୍ଷକମାନେ ପାଇ ନାହାନ୍ତି ।

ଙ) ସମସ୍ତେ ଭଲ ଭବେ ଲେଖନ୍ତୁ । ଦେଶୀ ଢାଞ୍ଚାରେ ଲେଖନ୍ତୁ । ପାଠକଂକ ରୁଚି ଅନୁସାରେ ନଲେଖି ସେମାନଂକ ରୁଚି ପରିବର୍ତ୍ତନ ପାଇଁ ଲେଖନ୍ତୁ । ବର୍ତ୍ତ-ମାନ ପନ୍ଦର ବର୍ଷ ପାଇଁ ଇଉରୋପୀୟ ଉପନ୍ୟାସ ପଢ଼ିବା ବନ୍ଦ କରନ୍ତୁ । ଏସିଆର ସାହିତ୍ୟ ଆଡ଼କୁ ଦୃଷ୍ଟି ପକାନ୍ତୁ । ଆମ ଲୋକଂକୁ ଗ୍ଭହାନ୍ତୁ । ଇଂରେଜିଆ ବିଗ୍ଭର ନୀତି ବିରୁଦ୍ଧରେ ସେମାନେ ବିକ୍ଷୋଭ କରନ୍ତୁ । ଦାସତ୍ୱଟା ଆଗ ଯାଉ । ଦାସତ୍ୱ ନଗଲେ ଯେତେ ଯାହା ଲେଖିଲେ ବି ଓଡ଼ିଆ ଉପନ୍ୟାସ ହାତ ଯୋଡ଼ି ଠିଆ ହୋଇଥିବ । ନିଜ ପାଇଁ ସ୍ୱାଧୀନ ଓ ଗୌରବଜନକ ମଞ୍ଚ-ଟିଏ ଗଢ଼ିବାକୁ ହେଲେ ଯେଉଁ ଆତ୍ମିକ ବିଦ୍ରୋହ ଦରକାର– ଲେଖକମାନେ ତାହା ଆରମ୍ଭ କରନ୍ତୁ । "ଆତ୍ମିକ ବିଦ୍ରୋହର ଅନ୍ୟନାମ ଦଗ୍ଧ ବା ଗୋପନ–ଦହନ ।"



☐ ଦେବ୍ରାଜ ଲେଙ୍କା
ମାର୍କେଟ ବିଲ୍ଡ଼ିଂ, ଭୁବନେଶ୍ୱର

କ] ଅନୁକ୍ତ ରହିଯାଇଛି ବହୁ କଥା : କିଛି ମୋର କଥା, କିଛି ତୋର କଥା, କିଛି ତାର କଥା, କିଛି ସେମାନଙ୍କର କଥା; କିଛି ଅଂକା ବଂକା ଜୀବନ ରାସ୍ତାର ଉଠାଣି ଗଡ଼ାଣିର କଥା; ଲୁହ ଛିଟିକାର ଧାରେଧାରେ ରହିଯାଇଛି ଶହେ ବର୍ଷ ପଦାଂକର ହା' ହତାଶ ଭରା ଜୀବନ ଯନ୍ତ୍ରଣାର ରୁଦ୍ଧ କଇଁ କଇଁ... ......, ଯାହା ହଜାର ବର୍ଷକୁ ଟପି ଗ୍ଭଲିଥିବ ବର୍ଷ ଲକ୍ଷେ ପର୍ଯ୍ୟନ୍ତ ଏବଂ କାହାଣୀ ଧାଡ଼ିର ଯାତ୍ରା ଲଗାତର୍ କାଏମ୍ ରହିଥିବ କାଳର ସେ ବୂନ୍ଦା ପର୍ଯ୍ୟନ୍ତ– ଜୀବନର ରେଳ ଭଳି ଗ୍ଭଲେ- ଝୁକ୍......ଝୁକ୍......ଝୁକ୍......ଝୁକ୍......ଝୁକ୍......ଝୁକ୍ ।

ଖ) ଫୁଲ ସାଥୀରେ ରେଶ ରେଶ ବାସ୍ନା, ଆଖି ସାଥୀରେ ତେର୍ଚ୍ଛା ତେର୍ଚ୍ଛା ଛୁରୀ, ଓଠ ସାଥୀରେ ଗୁଲାଲ୍ ହସର କିଛି ଜମାଣିଆ ମଲ୍ଲୀଫୁଲ ରେଶ୍ନୀ ଅଥବା ଖଇର ତାତିଲା ଖଇି ସାଥୀରେ ଛାଇର ସୁଆଦିଆ ମିଠେଇ ପରି, ପାପ ପୁଣ୍ୟ ପରି, ଦୁଃଖ ସୁଖ ପରି, ମୋ ଜୀବନର ବିପୁଳ ଅନୁଭୂତି– ରେ ଅକ୍ଷର........, ରେ ଶବ୍ଦ........., କେତେ ତୁ ଚନ୍ଦନ କରି ମାଖୁଛୁରେ......, ମୋ ଜୀବନର ଲୁହ ଭରା ଗୀତିଧାରେ ତୁ କେତେ ସାବ୍ଜା ହସ ଛୁଟାଇଛୁରେ......, ସେହି ଅକ୍ଷର, ଶବ୍ଦ, ଭଷା ଓ ଚେତନା ଭିତରେ ମୁଁ ନିଜେ ହିଁ ନବାବ୍ ପରି ଠିଆ ହୋଇଛି, ବିଲକୁଲ୍ ନିଜେ, ଆଉ କେହି ନାହିଁ, ମୁଁ ନିଜେହିଁ ବହୁଧା ବିଭକ୍ତ ହୋଇ ମୋରି ଖେଳ ମୁଁ ନିଜେ ଦେଖୁଛି, ମୋର ଅଭିନୟ ମୁଁ ନିଜେ ହିଁ ଦେଖୁଛି । ସମ୍ରାଟ ବେଶରେ ମୁଁ, ଭିକାରୀ ବେଶରେ ମୁଁ, ପ୍ରେମିକ ବେଶରେ ମୁଁ, ପ୍ରେମିକା ବେଶରେ ମୁଁ, ତ୍ୟାଗୀ ବେଶରେ ମୁଁ, ଚୋର ବି ମୁଁ, ଭୋଗୀ ବେଶରେ ମୁଁ, ପୋଲିସ୍ ବି ମୁଁ– ଏବଂ ମୁଁ– ଏବଂ ମୁଁ...........

ଗ) ଉପନ୍ୟାସର ଦିନ ଶେଷ ହୋଇ ନାହିଁ ବନ୍ଧୁ....., ଭରା ସମୁଦ୍ରର ଅସଂଖ୍ୟ ଲହରୀମାଳା ତାର ଶେଷ ମାଳାକୁ ତୁମ ପାଇଁ ପଠାଇ ନାହିଁ ଅବା ବିଭୋର ଆକାଶରେ କୋଟି କୋଟି ତାରାର ଫୁସ୍ ଫାସ୍‌ର କଥା ସରି ନାହିଁ– ସରି ନାହିଁ, କିମ୍ବା ଲି- ଲି- ଇସ୍‌ମସ୍– ଟୋକୀ– ଠୋସ୍‌ର ଥମ୍ ଥମ୍ ବାଜର ଅସଂଖ୍ୟ ନେଳୀ ନେଳୀ ସ୍ୱପ୍ନ ସରି ଆସି ନାହିଁ– ଆସି ନାହିଁ, ନାଚୁଣୀ ମହାନଦୀର ଭରା ରୂପ ଜୁଆରର ଧୂମ୍ ଲିଭି ଯାଇ ନାହିଁ- ଯାଇ ନାହିଁ; ଏଦିନ ବି ଅନେକ, ଏ ଗତି ବି ଅନେକ, ଏ ସ୍ୱପ୍ନ ବି ଅନେକ, ଏ ଆଶା ବି ଅନେକ; ଏ ପୃଷ୍ଠା ବି ଅନେକ, ଏ କଥା ବି ଅନେକ; ଏ ଫୁଲ ଗୋଟିଏ ନୁହେଁ ବନ୍ଧୁ......, ଏ ହେଉଛି ଫୁଲ ଆଉ ଫୁଲର ବିସ୍ତର, ଏ କଥା ଗୋଟିଏ ନୁହେଁ, ଏ ହଜାର ଗତିର ହଜାର କଥାର ତାଜା ବେଫିକର ମୋର୍ଚ୍ଚା..........., ଡ଼ିଙ୍ଗ୍ ଡ଼ୁଙ୍ଗ୍..........., ଡ଼ିଙ୍ଗ୍‌ସ୍– ଡ଼ିଙ୍ଗ୍‌ସ୍........., ମୋର କଲମ ମୁନରୁ ଥୋପା ଥୋପା ହୋଇ ଝରି ପଡୁଛି, ମୁଁ ଶାନ୍ତିକରୁ ଉପନ୍ୟାସକାରକୁ ଉଠୁଛି ।

ଘ) ଶିଳ୍ପୀ କହିଲା– ମାଟି ଦେ'- ମାଟି ଦେ'......, ପଥର ଦେ'– ପଥର ଦେ'......, ଏ ମାଟିକୁ ମୁଁ ମୋର ଆଙ୍ଗୁଠିର ଛାଞ୍ଚରେ ଧରି ରଖି ପ୍ରତିମା ଗଢ଼ିବି, ଏ

କଠିନ ପଥରରେ ଏକ ନିଖୁଣ୍ ନ୍ୟଗ୍ରୋଧ ପରିମଣ୍ଡଳାର ଦେହର ଲହୁଣୀକୁ ଆହୁରି କଅଁଳ କରି ଦେବି ! ମାଟି ଆଂଗୁଠିକୁ ସଲାମ୍ କଲା ଆଉ ଆଂଗୁଠି ବି ମାଟିକୁ ସଲାମ୍ କଲା । ପଥର ଓ ନିହାଣ– ମୁଗୁର ଆନନ୍ଦରେ କୋଳାକୋଳି ହେଲେ ଏବଂ ବିଶୁ ମହାରଣା କୋଣାର୍କରେ ସୃଷ୍ଟି କଲା ଏକ ବେନ୍‌ଜିର୍ ଝିକ୍ ମିକ୍............

ଡ) ବେଦନା ବା ଲୁହର ଗୁମ୍‌ସୁମ୍ ବଳୟ ଭିତରେ ବିଭୀଷିକାମୟୀ ୧୮୬୬ ଯେଉଁ ହା'ହା'କାର କରି ମଥା କୋଡ଼ି ଥିଲା, କଇଁଆଁ ଗଛର ନଥିଲା ପତ୍ରର ଗଣ୍ଡିଭଙ୍ଗା ଶାଖାତଳେ ଶନାତନ ଢଳିପଡ଼ିଲା ପୋକମାଛିପରି, ସେ ସନାତନ ପୁଣି ବସିଛି ଛେଲୁଆ ଧରି, କାଠି ପରି ହାତକୁ ତାର ମେଲେଇ ଡକା ପାରିଛି–ଭତ ଦେ'– ଭତ ଦେ'........, ୧୯୮୬ର ହାଣ୍ଡିକଳା ପଡ଼ୁ ନଥିବା କଳାହାଣ୍ଡିର ଥୁଣ୍ଟା ଠକ କଟବଟ ମୂଳେ; ଖାକୀର ବୟୋନେଟ୍ ନାହିଁ, ବରଂ ରହିଛି ଖଦ୍ଦଡ଼ର କୁଖ୍ୟାତ କପଟତା, ୟୁନିଅନ୍ ଜ୍ୟାକ୍‌ର ଡୁଃ..... ଡାଃ..... ଆଓ୍ବାଜ୍ ନାହିଁ, ବରଂ ରହିଛି ବିଭିନ୍ନ ସିମ୍ବଲ୍‌ଧାରୀ ପତାକାର ରାଜନୈତିକ ଶୀତଳ କତୁରୀ, ଯାହା ଛାତିର ଦୁକ୍‌ଦୁକିକୁ ଗୋଇଠା ମାରିଲା ବେଳେ, ସେ ଦୁକ୍‌ଦୁକିର ଯନ୍ତ୍ରଣା ଅସ୍ପଷ୍ଟ, ଅଯନ୍ତୀ ଶବ୍ଦ ଉପନ୍ୟାସକାରର କଲମ ମୁନକୁ ଥରାଇ ଦେଇଛି, ସେ କଲମ ମୁନ ବହୁ ବାଦ–ବିସମ୍ବାଦର ପରୀକ୍ଷା ନିରୀକ୍ଷା ଭିତରେ ଗତି କରି, ତାର ଉପନ୍ୟାସର ଗତିଧାରାକୁ ଅସୁମାରୀ ଘଣ୍ଟା ଟିକ୍ ଟିକ୍ ସ୍ୱରରେ ମିଶାଇ ଦେଇଛି ।

ଚ) ବିଲ୍‌କୁଲ୍– ବିଲ୍‌କୁଲ୍........ ! ସେ ପ୍ରତିଷ୍ଠିତ ଔପନ୍ୟାସିକ ଏକଦମ୍ ହିଁ ଖାସ୍ କଥା କହିଛନ୍ତି । ମୁଣ୍ଡ ଭିତରେ ଗୋଟିଏ ଲର୍ଜସେଲ ଇଣ୍ଡଷ୍ଟ୍ରି ପୂରାଇବା ଯାହା, ଉପନ୍ୟାସ ଲେଖିବା ତାହା । ହୁଏତ ଉପନ୍ୟାସକାର ଗୋଟିଏ ଗାଈଆଳ, ତାର ଗୋରୁ ଗାଈଙ୍କୁ ଗୋଠରୁ ଫିଟାଇ ଚରାଇବାକୁ ନେଇଛି, ଅଥଚ ଅମଣିଆ, ହୁରୁଡା ଗାଈ ଗୋରୁମାନେ ହାଠାତ୍ ଦୌଡ଼ିବାକୁ ଆରମ୍ଭ କଲେ, କିଏ ବଣରେ ପଶିଗଲା କାହାର ଦେଖାନାହିଁ, କିଏ ପୂରା ହଜିଗଲା ତ କିଏ ଗଛମୂଳେ ଶୋଇ ପାକୁଳି କରୁଛି ଆଦୌ ଉଠୁ ନାହିଁ । ଗାଈଆଳ ଶ୍ରାନ୍ତ କ୍ଳାନ୍ତ ହୋଇ ତାର ଠେକା ଫିଟାଇ ଝାଳ ପୋଛୁଛି, ଗାଈମାନଙ୍କୁ ନାଁ ଧରି ଡାକୁଛି, ବେଳ ହୋଇ ଯାଇଛି ରଡ ରଡ ଖେକରେ କରଡ଼ି ଜଳୁଛି, ଅଥଚ ବଣରେ ଛପି ଯାଇଥିବା ଗାଈ

ଗୋରୁଙ୍କର ଦେଖା ନାହିଁ । କ'ଣ କରିବ ସେ ? ପୁଣି ସବୁ ଗୋରୁଗାଈଙ୍କୁ ଏକାଠି କରି ଘରକୁ ସେ ନେବ କେମିତି ? ନିଶ୍ଚୟ ହିଁ ସେ ସେମାନଙ୍କୁ ଘରକୁ ନେବ । ବଣରେ ଖୋଜି ଖୋଜି ସେ ତାର ହଜିଲା ନିଧିକୁ ପାଇବ ହିଁ ପାଇବ । ଅମଣିଆ ଦାମୁଡ଼ିକୁ ଠେଙ୍ଗାରେ ପିଟି ସେ ବୋଲ ମନାଇବ । ଗାଈଗୋରୁ ବୁଡି ଯାଉଥିବା ସୂର୍ଯ୍ୟର ନାରଂଗୀ କିରଣରେ ଖରରେ ଧୂଳି ଉଡାଇ ଘରକୁ ଚାଲିଥିବେ ଛନ ଛନ ହେଇ– ଲାଂଜ ଟେକି– ହମ୍ବାରଡ଼ି ଦେଇ ଏବଂ ସେ ତା'ର ବଇଁଶୀରେ "ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର" ଗୀତ ବୋଲୁଥିବ । ତାହା ହିଁ ତାର ବିଜୟ । ତାର ଠେକାରେ ହିଁ ଗେଣ୍ଡାଳିଆର ପର ବିଜୟର ନିଶାଣ ହେଇ ଖୋଷା ହେଇଛି ।

ଛ) ମୁଁ ମୋର ପାଠକ ଗୋଷ୍ଠୀଙ୍କଠାରୁ ବହୁ ପ୍ରଶଂସା ପୂର୍ଣ୍ଣ ଚିଠି ପାଏ । ସେପରି କିଛି ଅଭିଯୋଗ ସେମାନଙ୍କର ମୋ ପାଖରେ ନାହିଁ ।

ଜ) ପାଠକ ଓ ସହଲେଖକ ବନ୍ଧୁଗଣ... , ମୋର ଶେଷକଥା– ହାଃ...... ହାଃ...... ଶେଷ କଥା ବର୍ତ୍ତମାନ ପାଇଁ କିଛି ହିଁ ନାହିଁ, କାରଣ କଥା ଯାହା ପୂର୍ବରୁ ଆପଣଙ୍କ ସାଥୀରେ ତାହା ବିଳମ୍ବିତ ଆଳପ ପରି, ଦ୍ରୁତ ଲୟର ଧୂନ୍ ଆସି ନାହିଁ ହେ ବନ୍ଧୁ...... ମୋ ଜୀବନର କଥା ସରିତ ସାଗର ବେଳାରେ, ତଗନାର ତୋଫାନ ଆସିବ ସେହିଦିନ, ଯେଉଁ ଦିନ ମୁଁ ସ୍ୱର୍ଗଦ୍ୱାରରେ ନୁହେଁ, ମୋ ଧରା ସ୍ୱର୍ଗ ମୋ ଗାଁ କୁଶପଙ୍ଗୀର ଅରଖ, ଗୁକୁଣ୍ଡା, ଅଗର ବଣର ଅରମା ମଶାଣୀ ଭୂଇଁରେ ଝରିଯିବି ଭଙ୍ଗା କଲମର ଭଙ୍ଗା ଅକ୍ଷର ପରି, ମୋ ଦେହରେ ଯେତେବେଳେ ନିଆଁ ଲାଗିଯିବ ବିଦାୟ ବେଳାରେ ମେଲାଣି ଦୀପାଳି ଧରି, ଯେତେବେଳେ ମୋର ଶେଷ ନିଶ୍ୱାସ ଗାଇ ଉଠିବ– ଫୁଲର ବାସ୍ନାର ଇତି ନାହିଁ, ପକ୍ଷୀର କାକଳୀର ବି ଇତି ନାହିଁ, ସୂର୍ଯ୍ୟର ଜ୍ୟୋତିରେ ବି ଇତି ନାହିଁ, କଥା ସରିତ ସାଗର ଉର୍ମିର ବି ଇତି ନାହିଁ ଆଉ ଚନ୍ଦନ କାଠର ବୋଇତରେ ରୂପା ଧବ୍ ଧବ୍ କ୍ଷୀରେଦରୀ ପାଲ ଉଡାଇ ଅସ୍ତାଚଳର ସୀମାରେଖା ଆର ପାରିକୁ ଯିବା ପାଇଁ ଆହୁଲା ମାରୁଥିବା ଲେଖକର ଶେଷ ନିଃଶ୍ୱାସରେ କସ୍ତୁରୀର ବି ଇତି ନାହିଁ । ○

□ ବିଜୟିନୀ ଦାସ
ଡଗରପଡା, କଟକ

କ) ଗୋଟିଏ ଶତାବ୍ଦୀର ଅବଦାନ ସାହିତ୍ୟର କ୍ରମ ବିକାଶ ପାଇଁ କିଛି କମ୍ ନୁହେଁ । ସାହିତ୍ୟ ବିଶେଷ କରି ଉପନ୍ୟାସ ସାହିତ୍ୟରେ ଏହି ସମୟର ପାଦଚିହ୍ନ ସ୍ପଷ୍ଟ ଭବେ ବାରି ହୋଇଥାଏ । ତଥାପି ଅନେକ କଥା ଅକୁହା ରହିଯାଏ ଓ କହିଲେ ମଧ୍ୟ ଅବୁଝା ରହିଯାଏ । ଏହି "ଅକୁହା" ଓ "ଅବୁଝା" ଭିତରେ କହିବାର ବୁଝିବାର ସମ୍ପର୍କ ସ୍ଥାପନ ହିଁ ତ ସାହିତ୍ୟ । ଅସୀମ ସମୟକୁ ସମ୍ପୂର୍ଣ୍ଣ ରୂପେ ବାନ୍ଧି ରଖିବ, ଏମିତି ଶକ୍ତି କାହାର ବା ଅଛି ? ଯଶୋମତୀ ମା'ଙ୍କ ଭଳି ଯେତେ ଦଉଡ଼ି ଯୋଡୁଥିଲେ ମଧ୍ୟ ସେଇ " ବେନି ଆଂଗୁଳି ନିଅଣ " ରହିଯାଉ ଥିବା ସେଇ ଅନୁକ୍ତ ଓ ଅଶ୍ରୁତ କାହାଣୀକୁ ରୂପାୟିତ କରିବାର ପ୍ରୟାସରେ ହିଁ ତ ଉପନ୍ୟାସର ଅନ୍ୱେଷଣ ପର୍ବ ।

ଖ) ସ୍ରଷ୍ଟା ମାନସର ଅବିକଳ ପ୍ରତିଫଳନ ହିଁ ତା'ର ସୃଷ୍ଟିରେ ହୋଇଥାଏ, ଏହା ସାର୍ବଜନୀନ ସତ୍ୟ । ତେବେ କୌଣସି ରହସ୍ୟ ରୋମାଞ୍ଚ ଉପନ୍ୟାସର ଲେଖକ ଯେ ଜଣେ ଡ଼ିଟେକ୍ଟିଭ୍ ନିଶ୍ଚୟ ହୋଇଥିବ, ଏକଥା ସତ୍ୟ ନୁହେଁ । ମୋ' ବ୍ୟକ୍ତିଗତ ଜୀବନର ଅନୁଭୂତିରେ କୌଣସି ବୈଚିତ୍ର୍ୟ ନାହିଁ । କିନ୍ତୁ ଅନେକ ଚରିତ୍ରର ବୈଚିତ୍ର୍ୟପୂର୍ଣ୍ଣ ଜୀବନାନୁଭୂତି ସହ ସମ୍ପର୍କ ସ୍ଥାପନର ଦୁର୍ବାର ଇଚ୍ଛା ହିଁ ମୋ ରଚନାକୁ ବୈଚିତ୍ର୍ୟମୟ କରି ପାରିଛି । ଉଦାହରଣ ସ୍ୱରୂପ ମୋର ଗୋଟିଏ ଉପନ୍ୟାସ ( ଅଜ୍ଞାତ ଅଧ୍ୟାୟ ) ର କଥା କହେ । ସେଥିର ଚରିତ୍ର ମାନେ– ସଚ୍ଚୋଟ ଡ଼ାକ୍ତର ପୁଲକ ପଟ୍ଟନାୟକ, ଦେଶ ସେବକର ନାମାବଳୀ ଝୁଲାଇ ଜଘନ୍ୟ ଅପରାଧ ସହ ସମ୍ପୃକ୍ତ ରାମ ଦୟାଲ ଶର୍ମା ବା' ପ୍ରଚଳିତ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହର ସ୍ୱର ଉତ୍ତୋଳନ କରୁଥିବା ଡାକ୍ତର ତୃପ୍ତିକାଂକ ସହ ମୋ' ଜୀବନର ଏତେ ଟିକେ ବି' ସାମଞ୍ଜସ୍ୟ ନାହିଁ । ହୁଏତ ମୋର ବ୍ୟର୍ଥତା, ମୋର ବେଦନାବୋଧ ଓ ନିପାରିଲା ପଣିଆ ବିରୁଦ୍ଧରେ ମୋ ଭିତରେ ଯେଉଁ ଦୁଷ୍ଟ ଇଚ୍ଛାଟି ବେଳେବେଳେ ମୁଣ୍ଡ ଟେକେ, ତାହାହିଁ ମୋ' ଉପନ୍ୟାସର ବିଭିନ୍ନ ଚରିତ୍ରମାନଙ୍କ ଭିତରେ ଚଟ୍ କରି ଲୁଚି ଯାଏ । ସମ୍ଭବତଃ ମୋର

ଧାରବାହିକ ଉପନ୍ୟାସ "ଡାଏରୀ" ପାଠକ ପାଠିକାମାନଙ୍କୁ ସେମାନଙ୍କ ନିଜ କଥା ଭଳି ଜଣାପଡେ ଏଇଥିପାଇଁ ।

ଗ) ପ୍ରାୟ କହିବାକୁ ଗଲେ ସେଇଆ । କିନ୍ତୁ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଯେଉଁ ବ୍ୟାଧିଟି ବର୍ତ୍ତମାନ କର୍କଟ ରୋଗ ଭଳି ବ୍ୟାପି ଚାଲିଛି, ତାହା ହେଲା " ମାଗି-କରି ପଢିବା" ଅନ୍ୟାନ୍ୟ ପଡୋଶୀ ଭାଷାର ଉପନ୍ୟାସ ଗୁଡ଼ିକ ବର୍ଷକୁ ଦୁଇ ତିନି ହଜାର କପି ଖୁସିରେ ବିକ୍ରି ହୋଇଯିବା ସ୍ଥଳେ, ଆମ ରାଜ୍ୟରେ ଓଡ଼ିଆ ଉପନ୍ୟାସର ହଜାରେ କପି କଟିବାକୁ ଅନ୍ୟୁନ ପାଞ୍ଚ ବର୍ଷ ଲାଗିଯାଏ । ତା'ର କାରଣ ଆମେ ଓଡ଼ିଆ, ସିନେମା ଓ କ୍ରିକେଟ ମ୍ୟାଚ ଦେଖିବା ପାଇଁ ବ୍ଲାକ୍‌ରେ ଟିକେଟ କିଣି ପାରୁ, ହୋଟେଲରେ ଖାଇବା/ଖୋଇବା ପାଇଁ ପଇସା ଖର୍ଚ୍ଚ କରିପାରୁ; କିନ୍ତୁ ବହି ଖଣ୍ଡିଏ କିଣି ପଢିବାକୁ ଖର୍ଚ୍ଚ କଲେ ବଦ୍‌ଖର୍ଚ୍ଚ କରି ଦେଲା ଭଳି ମନେକରୁ । ଏହା ମଧ୍ୟ ଏକ ପ୍ରକାର ପାଠକମାନଙ୍କ ଦାୟିତ୍ୱ ନୁହେଁ କି ? ଉପନ୍ୟାସର ଦିନ ବାସ୍ତବିକ କ୍ରମଶଃ ଶେଷ ହୋଇ ଆସୁଛି । ଦୂର ଦର୍ଶନ ତଥା ଆଧୁନିକ ସଭ୍ୟତାର ଦାନ ଭି. ଡ଼ି. ଓ., ଭି. ସି. ଆର. ର ବହୁଳ ପ୍ରସାର ଉପନ୍ୟାସ-ପାଠକ ସଂଖ୍ୟାକୁ ହ୍ରାସ କରିବାରେ ସହାୟକ ହୋଇଛି । ଏଥି ନିମନ୍ତେ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତୀୟ ସାହିତ୍ୟରେ ପ୍ରକାଶକ ତଥା ଔପନ୍ୟାସିକମାନଙ୍କ ଭିତରେ ଗଭୀର ଉଦ୍‌ବେଗ ପ୍ରକାଶ ପାଇଛି ।

ଘ) କଥାବସ୍ତୁ ।

ଙ) ସହ + ଇତି = ସାହିତ୍ୟ । ତେଣୁ ସମୟ ସଙ୍ଗେ ପାଦ ମିଳାଇ ସାହିତ୍ୟର ଗତିଶୀଳତା ଯୁକ୍ତିଯୁକ୍ତ । ପୃଥିବୀର ସବୁ ଦେଶରେ, ସବୁ ଭାଷାରେ ଯେତେ ଯେତେ ବିଶିଷ୍ଟ ଉପନ୍ୟାସ ଏଇ ଶତକରେ ରଚିତ ହୋଇଛି, ସମୟର ପଦ ଚିହ୍ନ ସମସ୍ତ ଉପନ୍ୟାସରେ ସୁସ୍ପଷ୍ଟ ।

ପ୍ରଥମ ମହାସମର ଓ ଦ୍ୱିତୀୟ ମହାସମର ଏଇ ଶତକର ଉଲ୍ଲେଖ-ଯୋଗ୍ୟ ଘଟଣା । ଏହାପରେ ଯେତେ ଉପନ୍ୟାସ ସୃଷ୍ଟି ପାଇଛି, ଅଳ୍ପେ ଅଧିକେ ଏହାର ବିଭୀଷିକା ସେଥିରେ ଉତ୍‌କୀର୍ଣ୍ଣ ହୋଇଛି । ପୃଥିବୀରେ ବର୍ଣ୍ଣ ବିଦ୍ୱେଷର

ନଗ୍ନ ରୂପ ହେଲା 'ଦାସତ୍ୱ ପ୍ରଥା' । ଏହା ମଧ୍ୟ ଉପନ୍ୟାସର ବିଷୟବସ୍ତୁ ଭିତରୁ ବାଦ୍ ଯାଇନାହିଁ । ଏହି ପରିପ୍ରେକ୍ଷୀରେ ରଚିତ "ୱାର ଏଣ୍ଡ ପିସ୍" , 'ଅଙ୍କଲ ଟମସ୍ କେବିନ୍' ଭଳି ଉପନ୍ୟାସ ଗୁଡ଼ିକ ବିଶ୍ୱ ସାହିତ୍ୟକୁ ମହାନ୍ ଅବଦାନ । ସେହି ଭଳି ସମାଜରେ ଶ୍ରେଣୀ ସଂଘର୍ଷରୁ ସାହିତ୍ୟରେ ଜନ୍ମ ନେଇଛି "ମଦର" ଭଳି ଅବିସ୍ମରଣୀୟ ଶକ୍ତିଶାଳୀ ଉପନ୍ୟାସ । ଭାରତୀୟ ସାହିତ୍ୟ ତଥା ଓଡ଼ିଆ ସାହିତ୍ୟରେ ମଧ୍ୟ ପରାଧୀନତାର ଯନ୍ତ୍ରଣା, ପ୍ରଚଳିତ ସାମାଜିକ ନୀତି ନିୟମ ବିରୁଦ୍ଧରେ ଓ ସ୍ୱାଧୀନୋତ୍ତର ଯୁଗର ସ୍ୱପ୍ନ ଉପରେ ବହୁ ଉପନ୍ୟାସ ଲେଖା ଯାଇଛି । "ବନ୍ଦେ ମାତରଂ" , "ଗୋଦାନ" , "ଛ ମାଣ ଆଠଗୁଣ୍ଠ" , "ବ୍ରଜବାହୁ" , "ମାଟିର ମଣିଷ" , "ନେତି ନେତି" ଓ "ପ୍ରଥମ ସକାଳ" ଭଳି ଆହୁରି ଅନେକ ଅମର କୃତିରେ ସମୟର ପ୍ରାଣ ସ୍ପନ୍ଦନ ସ୍ପଷ୍ଟ ପ୍ରତିଫଳିତ ହୋଇଛି '।

ଚ) ମୋ ପାଇଁ ମୋର ଉପନ୍ୟାସ ଲେଖା ହେଲା କେବଳ ଗୋଟିଏ ଛୋଟ ନଈର ଜଳଧାର । ଯିଏ ଶ୍ରାବଣରେ ଉଚ୍ଛୁଳି ଉଠେ ତ କେବେ ବୈଶାଖର ବାଲିରେ ଦିଗ ହରାଏ; କିନ୍ତୁ ଆଶା ହରାଏ ନାହିଁ । ପୁଣି ଆଶ୍ୱିନର କ୍ଷୀଣ ସ୍ରୋତଟିଏ ହୋଇ ବହିଯାଏ । ସବୁ ଅବସ୍ଥାରେ ତା'ର ଗୋଟିଏ ଲକ୍ଷ୍ୟ- ସାଗର ସଂଗମ । ମୋ ପାଇଁ ମୋର ଉପନ୍ୟାସ ଗୁଡ଼ିକ ଏକ କ୍ରମଶଃ କବିତାର ଖଣ୍ଡିତାଂଶ ମାତ୍ର । ଯାହାର ଚରିତ୍ରମାନଙ୍କ ସହ, ଭାବ ଓ ଭାଷା ସହ; ଏପରିକି ଶବ୍ଦ-ମାନଙ୍କ ସହ ଲୁଚକାଳି ଖେଳରେ ମୋର ସମୟ ବିତିଯାଏ ।

ଛ) ମୋ ଉପନ୍ୟାସ ବିରୁଦ୍ଧରେ ମୋ' ପାଠକମାନଙ୍କର ସବୁଠାରୁ ବଡ ଅଭିଯୋଗଟି ହେଲା ମୁଁ ନାରୀ ଚରିତ୍ରକୁ ବିଶେଷ ପ୍ରାଧାନ୍ୟ ଦିଏ । ପାଠକ-ମାନଙ୍କ ପ୍ରତିକ୍ରିୟାକୁ ମୁଁ ଗୁରୁତ୍ୱ ଦିଏ, ମାତ୍ର ଅନ୍ଧ ଭାବରେ ନୁହେଁ । ତାହା ହେଲେ ବାପ ପୁଅ ଝିଅ ବିକ୍ରି କରିଯିବାର ଆଖ୍ୟାୟିକାଟି ଆମ ଜୀବନରେ ପୁଣି ସତ୍ୟ ପାଲଟି ଯିବ ଯେ !

ଜ) ଓଡ଼ିଆ ଉପନ୍ୟାସ ଶତବାର୍ଷିକୀ ପାଳନ ଅବସରରେ ଓଡ଼ିଶାର ପାଠକ-ମାନଙ୍କ ପାଇଁ ମୋର ଶେଷ କଥାଟି ହେଲା– ସେମାନେ ନିଶ୍ଚିତ ଭାବେ ଓଡ଼ିଆ ପୁସ୍ତକ କିଣି ପଢିବାର ଶପଥ ନିଅନ୍ତୁ ।

ସହ ଲେଖକ/ଲେଖିକାମାନଙ୍କୁ ମୋର ଶେଷ ଅନୁରୋଧଟି ହେଲା– ସାହିତ୍ୟିକ ଗୋଷ୍ଠୀଗତ କଳହରୁ ଓ ଈର୍ଷା ଓ ଅସୂୟାଠାରୁ ନିଜକୁ ମୁକ୍ତ ରଖି ପରସ୍ପର ଭିତରେ ମୈତ୍ରୀର, ପ୍ରୀତିର ଓ ବୁଝାମଣାର ସେତୁକୁ ଦୃଢ଼ କରନ୍ତୁ । ଅନ୍ୟକୁ ଅଂଧ ଭାବରେ ସମାଲୋଚନା କରିବା ପୂର୍ବରୁ ବା ହେୟ ମଣିବା ପୂର୍ବରୁ ତା'ର କୃତିକୁ ଅନ୍ତତଃ ଥରେ ମାତ୍ର ପଢ଼ନ୍ତୁ । 

□ ଶ୍ୱେତପଦ୍ମାସିନୀ ମହାନ୍ତି

ଭୁବନେଶ୍ୱର

କ) ବିଗତ ଶହେ ବର୍ଷ ମଧ୍ୟରେ ଲେଖା ଯାଇଥିବା ଓଡ଼ିଆ ଉପନ୍ୟାସରେ ମଣିଷର ସହଜାତ ପ୍ରବୃତ୍ତି, ଦୋଷ, ଦୁର୍ବଳତା, ଗୁଣ, ଧର୍ମ, ହର୍ଷ, ବିଷାଦ ଓ ଭୟ ଇତ୍ୟାଦି ଯାହା ଥିଲା, ତାହା ଏବେ ବି ରହିଛି । ସେ ଗୁଡ଼ିକର ମାର୍ଜିତ ଓ ବାଂଛିତ ପରିବର୍ତ୍ତନରେ, ସଭ୍ୟତା ଗଢିଉଠେ ସିନା, ମଣିଷର ଆଦିମ ପ୍ରବୃତ୍ତିରେ ମୌଳିକ ପରିବର୍ତ୍ତନ ଘଟେ ନାହିଁ । ମନେହୁଏ ସେହି ପ୍ରଣୟ, ଅପରାଧ, କଳହ, ଶାନ୍ତି, ଅଶାନ୍ତିକୁ ନେଇ ଅସରନ୍ତି କାହାଣୀ ସୃଷ୍ଟି ଚାଲିଛି । ଦୃଷ୍ଟାନ୍ତ କେବଳ ଭିନ୍ନ । ତେଣୁ ସେହି ଦୃଷ୍ଟିରୁ ବିଚାର କଲେ ଅନୁକ୍ତ କିଛି ନାହିଁ । ସବୁ ଉକ୍ତ । ଅନୁକ୍ତ କାହାଣୀ କହିଲେ, ଏ ପର୍ଯ୍ୟନ୍ତ ମାତ୍ର ଶହେ ବର୍ଷ ଓଡ଼ିଆ ସାହିତ୍ୟରେ ମଣିଷ ଅନ୍ତ କେତୋଟି କାହାଣୀ ଅନୁକ୍ତ ରହି ଯାଇଛି । ଅତୀତର ଘଟଣା ହେଉ ବା କାଳ୍ପନିକ ଘଟଣା ହେଉ, ଘଟଣାର ଚମତ୍କାର ବର୍ଣ୍ଣନା ତ କାହାଣୀ । ଘଟଣାର ଶେଷ ନାହିଁ । କାହାଣୀର ବି ଶେଷ ନାହିଁ । ଅନେକ କିଛି ଅନୁକ୍ତ, ତାହାହିଁ ଆମ୍ଭମାନଙ୍କ ପାଇଁ ଆଗାମୀ ଯୁଗର ଆହ୍ୱାନ । ହୁଏତ ଘଟଣାକୁ ଭିତ୍ତି କରି ଏ ପର୍ଯ୍ୟନ୍ତ କାହାଣୀ ଲେଖା ହେଉଛି, ସମୟ ଆସିବ କାହାଣୀକୁ ଭିତ୍ତି କରି ଘଟଣା ଘଟିବ । ସେହିଦିନ ସାହିତ୍ୟର ସ୍ୱପ୍ନ– ଔପନ୍ୟାସିକର ସ୍ୱପ୍ନ ସଫଳ ହେବ । ଉପନ୍ୟାସ ସୃଷ୍ଟି କରିବ, ଆଦର୍ଶ ମଣିଷର ଚରିତ୍ର ।

ଖ) ସ୍ରଷ୍ଟା ନିଜକୁ ହିଁ ସୃଷ୍ଟି କରେ । କେବଳ ନାମ ବଦଳାଇ । କଳ୍ପନା ଓ ଅନୁଭୂତିର ରଙ୍ଗରେ ତାହା ସରସ, ସୁନ୍ଦର ହୋଇଥାଏ । ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଜୀବନ ବହୁ ଘଟଣା ବହୁଳ । ମାତ୍ର ସ୍ରଷ୍ଟାଟିଏ ତାକୁ ସୂକ୍ଷ୍ମ ଦୃଷ୍ଟି ଦେଇ ଯେହେତୁ ଦେଖିପାରେ ଓ ବୁଝିପାରେ, ତେଣୁ କାଗଜ କଲମରେ ତାକୁ ଜୀବନ୍ତ କରି ଦିଏ । ଠିକ୍ ଯେମିତି, " ପ୍ରତ୍ୟେକଟି ପଦାର୍ଥରେ ସୌନ୍ଦର୍ଯ୍ୟ ଅଛି, ମାତ୍ର ସମସ୍ତେ ତାକୁ ଉପଲବ୍ଧି କରିପାରନ୍ତି ନାହିଁ । " ପ୍ରଚୁର ଅଭିଜ୍ଞତା, ଅନୁଭୂତି ବିନା ଉତ୍ତମ ଲେଖାଟିଏ ସୃଷ୍ଟି କରଯାଇ ପାରିବ ନାହିଁ । ଜୀବନର, ସମାଜର ପ୍ରତ୍ୟେକଟି ଘଟଣା, ଦୁର୍ଘଟଣାକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରି ପାରିବାରେ ହିଁ ସାହିତ୍ୟିକ ସଫଳତା ମିଳେ । ପାଠକର ହୃଦୟର ନିକଟତମ ହେବା ପାଇଁ ସେହିପରି ଆବେଗମୟ ଅଭିବ୍ୟକ୍ତି ଆବଶ୍ୟକ । " ଏ' ତ ମୋରି କଥା, ସବୁ ସତ, ଅକ୍ଷରେ ଅକ୍ଷରେ ସତ" ଏଇ ଭବାବେଗରେ ଯଦି ପାଠକର ହୃଦୟ ଆନ୍ଦୋଳିତ ହୁଏ, ତେବେ ତ ସ୍ରଷ୍ଟା ନିଶ୍ଚିତ ଭବେ ସାର୍ଥକ ହୋଇ ପାରିବ । ସେଇ ଦୃଷ୍ଟିରୁ ମୁଁ ଯେ ଅନେକ ପଛରେ ତାହା ଅସ୍ୱୀକାର କରି ହେବ ନାହିଁ । ଜୀବନକୁ ବୁଝିବାର ସାମର୍ଥ୍ୟ ଲଭ କରିବା ପରେ, ମୋର ଯତ୍ କିଂଚିତ ଅନୁଭୂତିକୁ ନିଜ ସୃଷ୍ଟିରେ ପ୍ରତିଫଳିତ କରିବାର ପ୍ରୟାସ କରିଛି । ହୁଏତ ବିଶେଷ ସଫଳ ହୋଇ ପାରି ନାହିଁ । ଅନେକ ପ୍ରୟାସ ଅଦ୍ୟାବଧି ରୂପାୟିତ ହୋଇ ପାରି ନାହିଁ । ବିଶେଷତଃ ନାରୀ ନିର୍ଯ୍ୟାତନାର କାହାଣୀ , ତାର ମାନସିକ ବ୍ୟର୍ଥତା, ସାଂସାରିକ ଜୀବନର ପାରସ୍ପରିକ ମତଭେଦ ତଥା ଅସମତା ମତେ ବିଶେଷ ଭବେ ପ୍ରଭବିତ କରିଛି । ପ୍ରତ୍ୟେକଟି ମଣିଷର ଏକ ସ୍ୱତନ୍ତ୍ର ଅଭିମାନ– ସ୍ୱାଧୀନତା- ତଥା ଚିନ୍ତାଧାର ଏବଂ ଆଦର୍ଶ ରହିଛି, ମାତ୍ର ତାକୁ ଉପେକ୍ଷା କରଯିବା ଦ୍ୱାର ଯେଉଁ ମାନସିକ ବିପର୍ଯ୍ୟୟ ଘଟେ, ତାହା ବି ମତେ ଗଭୀର ଭବେ ଆନ୍ଦୋଳିତ କରିଛି । ତେଣୁ ଏସବୁ ଅନୁଭୂତିର ଚିତ୍ରକୁ ମୁଁ ମୋର ପ୍ରତ୍ୟେକ ସୃଷ୍ଟିରେ ପ୍ରତିଫଳିତ କରିଛି ।

ଗ) ପ୍ରବଂଧ ଖୁବ୍ କମ୍ ଲୋକ ପଢନ୍ତି, କବିତା କିଛିଲୋକ ପଢନ୍ତି, ମାତ୍ର ଗଳ୍ପ ଓ ଉପନ୍ୟାସ ଅଧିକ ଲୋକ ପଢନ୍ତି । ମାତ୍ର କିଣିଆଣି ପଢିବାର ମନୋବୃତ୍ତିଠାରୁ ଦୂରରେ ରହି ମାଗିଆଣି ପଢିବାର ଲଜ୍ଜାଜନକ ପନ୍ଥାକୁ ଅନୁସରଣ କଲେ

ସାହିତ୍ୟ ଯେ ବିପନ୍ନ ହେବ ଏଥିରେ ସନ୍ଦେହ ନାହିଁ । "ସା ବିଦ୍ୟା– ଯା ବିମୁକ୍ତୟେ"– ଏହି ଉପଦେଶଟି ଯଦି ହୃଦୟକୁ ଗଭୀର ଭାବେ ଆଲୋଡ଼ିତ ନ କରିବ, ତେବେ ପାଠକୀୟତା ସୃଷ୍ଟି ହେବ ନାହିଁ । "ପୁସ୍ତକ, ସବୁଠାରୁ ଶ୍ରେଷ୍ଠ ବଂଧୁ", ଏଇ ମତବାଦକୁ ଗ୍ରହଣ କଲା ଭଳି ହୃଦୟର, ଓଡ଼ିଶାର ପାଠକମାନଂକର ବୋଧହୁଏ ନାହିଁ । ପାଠକ କିଣିଲେ, ଏହି ବହି ବିକ୍ରି ହେବ । ବହି ବିକ୍ରି ହେଲେ– ଅଧିକ ବହି ପ୍ରକାଶିତ ହେବ, ଏହା ତ ନିଶ୍ଚିତ । ଏପର୍ଯ୍ୟନ୍ତ ଆମର ଲୋକମାନେ ନୀଚ ପ୍ରହସନରେ ସନ୍ତୁଷ୍ଟ । ପାଠକର ଚାହିଦା ନରହିଲେ, ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ହୋଇ ପାରିବ ନାହିଁ । ତତ୍‌ପରେ ଆମ ଓଡ଼ିଶାରେ ପ୍ରକାଶିତ ବହି ଗୁଡ଼ିକର ଦାମ୍ ଏତେ ଅଧିକ ଯେ, ସାଧାରଣ ପାଠକମାନେ ବହୁ ପରିମାଣରେ ଅସନ୍ତୁଷ୍ଟ । ଏହି ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ଯେ ବିଭିନ୍ନ ଦିଗରୁ ବିପର୍ଯ୍ୟସ୍ତ ହୋଇ ପଡୁଛି– ତା' ହିଁ ଚିନ୍ତାର ବିଷୟ । ଯେ ଲେଖିବ, ସେ ଗଭୀର ଭାବେ, ଏକାନ୍ତ ରୂପେ ନିଜକୁ ସାହିତ୍ୟ ପାଇଁ ଉତ୍ସର୍ଗ କରିବ । ତେବେ ତାର ଜୀବନ ନିର୍ବାହ ମଧ୍ୟ ସାହିତ୍ୟରୁ ହେବା ଉଚିତ, ଯାହା ଅନ୍ୟ ଦେଶ ଦେଶମାନଂକରେ ହୁଏ, ତା ଆମ ଦେଶରେ ହୋଇପାରେ ନାହିଁ । ଉନ୍ନତ ସୃଷ୍ଟି ସହ ପ୍ରସାର, ପ୍ରକାଶ ଓ ପାଠକୀୟତା ଅଂଗା ଅଂଗୀ ଭାବେ ଜଡ଼ିତ । ତେଣୁ ବର୍ତ୍ତମାନ ଓଡ଼ିଆ ଉପନ୍ୟାସର ଦିନ କ୍ରମଶଃ ଶେଷ ହୋଇଆସୁଛି, ଏହାକୁ ମାନିନେବା ଉଚିତ ହେବ ନାହିଁ ବରଂ ଭବିଷ୍ୟତ ପାଇଁ ଏହାର ଦୀର୍ଘ ଜୀବନଟିଏ ହିଁ କାମନା କରିବା ଯଥାର୍ଥ ହେବ ।

ଘ) କଥାବସ୍ତୁ ହେଉଛି ଉପନ୍ୟାସର ଆତ୍ମା ଏବଂ ଶୈଳୀରୀତି ତା'ର ଆଂଗିକ ଆବରଣ । ଏ ଦୁଇଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି ଉପନ୍ୟାସର ରଚନା କ୍ଷେତ୍ରରେ । ତେଣୁ ଏ ଦୁଇଟି ଭିତରେ ଉପଯୁକ୍ତ ଭାରସାମ୍ୟ ରହିବା ମଧ୍ୟ ଆବଶ୍ୟକ । ସମ୍ପୂର୍ଣ୍ଣ ଉପନ୍ୟାସର କଥାବସ୍ତୁକୁ ମାତ୍ର ଗୋଟିଏ ପୃଷ୍ଠାରେ ବି ଲେଖା ଯାଇପାରେ, ମାତ୍ର ତା' ଭିତରେ ଥିବା ଆତ୍ମାଟି ସ୍ଥିର, ସ୍ଥବିର ହୋଇ ରହିଯିବ । ଘଟଣାର ପ୍ରବାହହିଁ ଉପନ୍ୟାସର ଆତ୍ମିକ କାର୍ଯ୍ୟକାରିତା ଓ ଲକ୍ଷ୍ୟକୁ ଉପଯୁକ୍ତ ଭାବେ ପ୍ରତିଫଳିତ କରିଥାଏ । ଉପନ୍ୟାସରେ କେବଳ

କଥାବସ୍ତୁ ରହିଲେ, ତାହା ସମ୍ବାଦିକତା ହୋଇଯିବ ଏବଂ କେବଳ ଶିଳ୍ପରୀତି ରହିଲେ, ତାହା କବିତା ହୋଇଯିବ, ଏହାହିଁ ମୋର ନିଜସ୍ୱ ମତ । ତେଣୁ ନିଜର ପ୍ରତ୍ୟେକଟି ଉପନ୍ୟାସରେ ଏହି ଦୁଇଟି ଦିଗକୁ ଦୃଷ୍ଟି ରଖି ଉପଯୁକ୍ତ ଭାରସାମ୍ୟ ରକ୍ଷା କରିବାକୁ ଚେଷ୍ଟା କରିଛି ।

୭) ବିଶ୍ୱ ଘଟଣା ପ୍ରବାହର ମୁଖ୍ୟ ଭାବଧାରାରେ ଓଡ଼ିଶାର ଜନ ଜୀବନ ପ୍ରବାହିତ ନୁହେଁ । ଅନୁଭୂତିର ଅଭାବ ହିଁ ଓଡ଼ିଆ ଉପନ୍ୟାସରେ ଭାବ ଦାରିଦ୍ର୍ୟର ମୁଖ୍ୟ କାରଣ । ବିଗତ ଶହେ ବର୍ଷ ମଧ୍ୟରେ ଯେଉଁ ସବୁ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆମ ସମାଜକୁ ପ୍ରଭାବିତ କରିଛି, ତାର ସ୍ୱାକ୍ଷର କେବଳ କେତୋଟି ମାତ୍ର ଉପନ୍ୟାସରେ ଦେଖିବାକୁ ମିଳେ । ତନ୍ମଧ୍ୟରେ ତତ୍‌କାଳୀନ ସାମାଜିକ ଅବ୍ୟବସ୍ଥା, ଜମିଦାରମାନଂକ ଶୋଷଣ, ଅତ୍ୟାଚାର, ଦୁଃସ୍ଥ ପରିବାରର ଜୀବନଧାରଣର ଘୋର ଦୁର୍ଦ୍ଦଶା କଥା ଉଲ୍ଲେଖ କରିଛନ୍ତି– ଶ୍ରୀଯୁକ୍ତ ଫକୀର ମୋହନ ସେନାପତି ତାଙ୍କର "ଛମାଣ ଆଠ ଗୁଣ୍ଠ" ଉପନ୍ୟାସରେ । ଲେଖକଂକ ରଚିତ ପ୍ରତ୍ୟେକଟି ଉପନ୍ୟାସ ଏହି ସାମାଜିକ ଅନ୍ୟାୟ ବିରୁଦ୍ଧରେ ଦୃଢ ସ୍ୱର ଉତ୍ତୋଳନ କରି ପାରିଛି । ତତ୍‌ପରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସମଗ୍ର ଦେଶରେ ଯେତେବେଳେ ସ୍ୱାଭିମାନ, ସ୍ୱାଧିକାରର ବିପ୍ଳବ ସୃଷ୍ଟି ହେଲା, ସେହି ବିପ୍ଳବ ତଥା ଆଦର୍ଶର ନିଛକ ସ୍ପନ୍ଦନ ବହନ କରି ପାରିଛି, ଶ୍ରୀଯୁକ୍ତ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ' ଉପନ୍ୟାସ । ଏଥିରେ ବର୍ଣ୍ଣିତ ବରଜୁ ପଧାନର ଚରିତ୍ରିକ ବୈଶିଷ୍ଟ୍ୟ ହିଁ ଯୁଗାନ୍ତକାରୀ । ବର୍ତ୍ତମାନ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କର 'ପରଜା' ଉପନ୍ୟାସ ଓଡ଼ିଆ ସାହିତ୍ୟର ଏକ ଅନବଦ୍ୟ ସୃଷ୍ଟି । ସ୍ରଷ୍ଟାଙ୍କର ଅସୀମ ସାଧନାର ସିଦ୍ଧି ରୂପେ, ଏହି ଉପନ୍ୟାସଟି ଆମ ସମାଜର ଅବହେଳିତ ଆଦିବାସୀ ଜନ ଜୀବନର ସୁଖ, ଦୁଃଖ, ଚିନ୍ତା ଓ ଚେତନାକୁ କେବଳ ଓଡ଼ିଶାରେ ନୁହେଁ ବିଶ୍ୱ ଦରବାରରେ ମଧ୍ୟ ପହଞ୍ଚାଇ ଦେଇପାରିଛି । ତେଣୁ ଜୀବନ ସଂଗ୍ରାମର ପ୍ରତ୍ୟକ୍ଷ ଯୋଦ୍ଧା ଯେଉଁ ଅନୁଭୂତି ପ୍ରାପ୍ତ କରି ଉପନ୍ୟାସ ରଚନା କରେ ତାର ଉଚ୍ଚତମ ମୂଲ୍ୟବୋଧ ଏବଂ ସମୟଗତ ପ୍ରାଣସ୍ପନ୍ଦନ ଯଥାର୍ଥରେ ପରିଲକ୍ଷିତ ହୁଏ ।

ଚ) ମୋର ନିଜସ୍ୱ ମତ ହେଉଛି, ଉପନ୍ୟାସ ରଚନା କରିବା ବଡ କଷ୍ଟକର କଥା । ଠିକ୍ ବିନ୍ଦୁକୁ ସିନ୍ଧୁ କଲପରି ଏହାର ପରିସର ବିସ୍ତୃତ ହୋଇଥାଏ । ଛୋଟ କଥାବସ୍ତୁଟିଏ ଲେଖକ ଭାବିଥାଏ, କିନ୍ତୁ ଲେଖିବା ବେଳେ ଅନେକ ଛୋଟ ବଡ କାହାଣୀର ସାହାଯ୍ୟରେ ତାକୁ ସମୃଦ୍ଧ, ପ୍ରାଣବନ୍ତ କରିବାକୁ ପ୍ରୟାସ କରେ । ଉପନ୍ୟାସର ଆରମ୍ଭ ହୁଏ ଲେଖକୀୟ ଭାବପ୍ରବଣତାରୁ. ତା'-ପରେ ଉଦ୍ଦେଶ୍ୟ ସହିତ ଆସେ ବିଷୟ ବସ୍ତୁ ଏବଂ ଶେଷରେ ଔପନ୍ୟାସିକ ନିଜସ୍ୱ ଲକ୍ଷ୍ୟକୁ ପ୍ରତିପାଦିତ କରି ଉପସଂହାର କରିଥାଏ ।

ଛ) ମୋର ବିରୁଦ୍ଧରେ ମୋର କେତେକ ପାଠକଙ୍କର ଏକାନ୍ତ ଅଭିଯୋଗ ଯେ, ମୋର ଉପନ୍ୟାସ ଶୈଳୀ-ସର୍ବସ୍ୱ ହୋଇ ଯାଉଛି । ଏହାର ଭାଷା ସରଳ, ସାବଲୀଳ, ସୁନ୍ଦର ଓ କବିତ୍ୱପୂର୍ଣ୍ଣ ହେଉ– ତା' ସହିତ ଗଭୀର ଜୀବନ ଜିଜ୍ଞାସା, ଦାର୍ଶନିକତତ୍ତ୍ୱର ବ୍ୟାଖ୍ୟାନ ମଧ୍ୟ ରହୁ । ଆଉ କେତେକ ଅଭିଯୋଗ କରନ୍ତି ଯେ, ମୋ ଉପନ୍ୟାସର ବିଷୟବସ୍ତୁହିଁ ଗଭୀର ମନଛୁଆଁ ହୋଇପାରୁଛି- ତା' ସହିତ ବର୍ଣ୍ଣନା ଚାତୁରୀ ଏବଂ ଭାଷାଗତ ଉତ୍କର୍ଷଣ ପ୍ରତିପାଦିତ ହୋଇପାରୁ ନାହିଁ । ତେଣୁ ମୁଁ ପରବର୍ତ୍ତୀ ରଚନାରେ ଏହିସବୁ ଅଭିଯୋଗକୁ ଦୃଷ୍ଟିରେ ରଖି ନିଜକୁ ସଂଶୋଧନ କରିବା ପାଇଁ ଚେଷ୍ଟା କରେ । ପ୍ରକୃତରେ ପାଠକହିଁ ଲେଖକର ଦର୍ପଣ । ପାଠକର ରୁଚି ଅନୁଯାୟୀ ଲେଖକ ଲେଖିବା ଉଚିତ, ତା' ସହ ନିଜସ୍ୱ ଆଦର୍ଶର ବି ଏକ ଚୁମ୍ବକୀୟ ପ୍ରଭାବରେ ପାଠକକୁ ପ୍ରଭାବିତ କରି ପାରିବାର ସାମର୍ଥ୍ୟ ରଖିବା ଉଚିତ ।

ଜ) କୌଣସି କଥାର ଶେଷ ନାହିଁ । ତେଣୁ ମୋର ଶେଷ କଥା ବି କିଛି ନାହିଁ । ମୋର ସହଲେଖକମାନଙ୍କୁ ମୁଁ ଏତିକି ଅନୁରୋଧ କରିବି ଯେ, ଲେଖିବା ପାଇଁ ହିଁ ହେବ । ତେଣୁ ପ୍ରତିଦିନ ଅଭ୍ୟାସ କରି ଲେଖିବା ଆବଶ୍ୟକ । ତାହା ପ୍ରକାଶିତ ହେଉ ବା ନହେଉ, ଲେଖା ବନ୍ଦ ହେବ ନାହିଁ । ସାଧନା ଅବ୍ୟା-ହତ ରହିଲେ ସିଦ୍ଧି ଅବଶ୍ୟ ପ୍ରାପ୍ତି ହେବ, ଏଥିରେ ସନ୍ଦେହ ନାହିଁ । ସେହିପରି ପାଠକମାନେ ବି ନିଜର ଚାହିଦା ଏବଂ ରୁଚି ପ୍ରତି ସଚେତନ ହେବା ନିତାନ୍ତ ଆବଶ୍ୟକ ।

ପାଠକର ମାନସିକ, ବୌଦ୍ଧିକ ଉନ୍ନତି ନ ଘଟିଲେ, ଲେଖାର ମାନ ବୃଦ୍ଧି ହେବ ନାହିଁ । ଯଦି ଲେଖାର ମାନ ବୃଦ୍ଧି ନହୁଏ, ତେବେ ଲେଖକ ସହ ସାହିତ୍ୟର, ଆମ ସମାଜର ଦୁର୍ଗତି ହିଁ ଘଟିବ । □

○ ପଦ୍ମଜ ପାଳ

ପଟ୍ଟାମୁଣ୍ଡାଇ କଲେଜ

କ) ମୋର ମନେହୁଏ, ଏଇ ଶହେ ବର୍ଷ ଭିତରେ ଆମ ସାହିତ୍ୟରେ ରଚିତ ହୋଇଥିବା ଉପନ୍ୟାସ ଗୁଡ଼ିକ ପରିମାଣାତ୍ମକ ତଥା ଗୁଣାତ୍ମକ ଭାବେ ଏତେ ସନ୍ତୋଷଜନକ ନୁହେଁ । ଦୁଇଟି ଯାକ କ୍ଷେତ୍ରରେ ଆମେ ପଛୁଆ । ଅବଶ୍ୟ କେତେ ଖଣ୍ଡ ଅତି ଉଚ୍ଚ ମାନର ଉପନ୍ୟାସ ଅଛି, ତାହା ଆନ୍ତର୍ଜାତିକସ୍ତରୀୟ-କ୍ଲାସିକ୍ । ଗୋଟିଏ ଶତାବ୍ଦୀରେ କୌଣସି ଏକ ଭାଷାର ଉପନ୍ୟାସ ସାହିତ୍ୟରେ ଆମେ ଯଦି କୋଡ଼ିଏ ଖଣ୍ଡ ଉଚ୍ଚମାନର ଉପନ୍ୟାସ ପାଇବା କଷ୍ଟକର ହୁଏ ଏହା ଏକ ଦୁଃଖଦ ବିଷୟ ।

ଆମ ଉପନ୍ୟାସରେ ଐତିହାସିକ ଧାରା ତ ରକ୍ଷା କରାଯାଇ ପାରିନି, ତାହା ସହିତ କୌଣସି ଏକ ନିର୍ଦ୍ଦିଷ୍ଟ ସମୟର ସ୍ୱର ବି ଠିକ୍ ଭାବେ ଉଚ୍ଚାରିତ ହୋଇ ନି । ଆମ ସମାଜ, ସଂସ୍କୃତି, କଳା, ଆମ ପାଣି ପବନ, ଆମ ମଣିଷଙ୍କୁ ଆମେ ଉପନ୍ୟାସ ସାହିତ୍ୟର ପରିସରଭୁକ୍ତ ଠିକ୍ ଭାବେ କରି ପାରୁନୁ ।

ଉପନ୍ୟାସ କ୍ଷେତ୍ରରେ ଓଡ଼ିଶା ଏକ ଭର୍ଜିନ ଲ୍ୟାଣ୍ଡ ।

ଖ) ମୋ ଉପନ୍ୟାସରେ ('ଦୁର୍ଗ ପତନର ବେଳ'— 'ଆବର୍ତ୍ତ' ରେ ଯାହା ଧାରାବାହିକ ଭାବରେ ପ୍ରକାଶିତ ହେଉଛି ଏବଂ ନିକଟରେ ପୁସ୍ତକ ଆକାରରେ ମିଳିବ) ମୋର ଅନୁଭୂତି ପ୍ରତି ସମ୍ପୂର୍ଣ୍ଣ ବିଶ୍ୱସ୍ତ ।

ଗ) ଉପନ୍ୟାସର ଦିନ କାହିଁକି ଶେଷ ହୋଇ ଆସିବ ? ଏହାର ପ୍ରସାର ଏକ ସଙ୍କଟମୟ ପରିସ୍ଥିତି ଦେଇ ଗତି କରୁଛି । ଏଥିପାଇଁ ମୁଁ ଦାୟୀ କରେ, ପ୍ରକାଶକମାନଂକୁ । ଯେଉଁମାନେ ଆମ ଲୋକଙ୍କର କ୍ରୟ ଶକ୍ତି ବାହାରେ ବହିର ଦାମ୍ ଧାର୍ଯ୍ୟ କରନ୍ତି ଏବଂ ପୁସ୍ତକ ଗୁଡ଼ିକର କିପରି ବ୍ୟାପକ ପ୍ରସାରଣ ଘଟିବ ସେ ଦିଗରେ ଆଦୌ ଯତ୍ନଶୀଳ ହୁଅନ୍ତି ନାହିଁ । ଲେଖକମାନଂକୁ ମୁଁ ମଧ୍ୟ ଏଥିପାଇଁ ଦାୟୀକରେ, କାରଣ ଉପନ୍ୟାସ ରଚନା ପାଇଁ ଯେଉଁ ବିପୁଳ ଅନୁଭୂତି, ଅନ୍ତର୍ଦୃଷ୍ଟି, ନିଷ୍ଠା ଓ ଶ୍ରମର ଆବଶ୍ୟକତା ଅଛି ଆମ ସମାଜ ତା'ର ଐତିହ୍ୟ, ତାର ଜନସାଧାରଣଙ୍କ ଜୀବନ ଧାରକୁ ଅନୁଧ୍ୟାନ କରିବାର ଯେଉଁ ଅୟାସସାଧ୍ୟ, ନୈଷ୍ଠିକତା ତଥା ଆବେଗପ୍ଳୁତ ଅନୁରାଗ ଦରକାର କରେ ତାହା ମଧ୍ୟ ଯଥାର୍ଥ ଭାବେ ଦେଖାଯାଏ ନାହିଁ । ଆମ ଉପନ୍ୟାସ ପରିଣତ ବୟସର ପାଠକମାନଂକୁ ଧରି ରଖିବାରେ ବିଫଳ । ତେଣୁ ଉପନ୍ୟାସର ଗ୍ରାହ୍ୟତା କମି ଆସିଛି ।

ଘ) କଥା ବସ୍ତୁକୁ ମୁଁ ଅଧିକ ଗୁରୁତ୍ୱ ଦିଏ । ଶିଳ୍ପରୀତିକୁ ମଧ୍ୟ କୌଣସି ପ୍ରକାର ଅବହେଳା କରଯାଇ ପାରିବ ନାହିଁ । କାରଣ ଗୋଟାଏ ସଫଳ ଉପନ୍ୟାସ କ୍ଷେତ୍ରରେ ଦୁଇଟି ଯାକ ଦିଗ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥାଏ ।

ଙ) ଠିକ୍ ସମୟର ସ୍ୱର ସହିତ ତାଳ ଦେଇ ଆମେ ଚାଲି ପାରିଥିବା ଭଳି, କାହିଁ ମୋର ମନେ ହୁଏ ନାହିଁ । ଆମେ ଯେମିତି ସେ ସ୍ୱରର ଟିକିଏ ପଛରେ ନାଚିଛୁ । ଦେଖନ୍ତୁ, ମୁଁ ଗୋଟିଏ ଉଦାହରଣ ଦେଉଛି– ଓଡ଼ିଶାରେ ପ୍ରଜା ମଣ୍ଡଳର ଆନ୍ଦୋଳନ, ସ୍ୱତନ୍ତ୍ର ପ୍ରଦେଶ ପାଇଁ ଆନ୍ଦୋଳନ ହୋଇ ଯାଇଛି । ଏହା ଆମ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ସାଧାରଣ ଜନତାଠାରୁ ବର୍ତ୍ତମାନର କ୍ଷମତାକୁ ଆସିଥିବା ବା ରାଜନୀତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥିବା ନେତାମାନେ ସେଥିରେ ଜଡ଼ିତ ଥିଲେ । କିନ୍ତୁ କେତୋଟି ଉପନ୍ୟାସ ଏସବୁ ବିଷୟରେ ଲେଖା ହୋଇଛି ?

ଚ) ମନେ ହେଉଛି– ଚନ୍ଦ୍ର ଶେଖର ରଥ ବୋଧହୁଏ ଏହିଭଳି ମତାମତ ଦେଇଥିଲେ । ମୋ ପାଇଁ କିନ୍ତୁ ଏହା ସମ୍ପୂର୍ଣ୍ଣ ଅଗ୍ରହଣୀୟ ।

ଉପନ୍ୟାସ ଲେଖା ଏକ ଆରୋହଣର ଅବସ୍ଥା ଭଳି । ଗୋଟିଏ ବ୍ୟାପକ ଭିତ୍ତି ଭୂମି ପ୍ରସ୍ତୁତ କରି ମୋତେ ଧିରେ ଧିରେ ଶିଖରକୁ ଯିବାକୁ ହୁଏ । ଏହା ଏକ ଉତ୍ତରଣ ଅବସ୍ଥା– ବିକାଶର କ୍ଷେତ୍ର । ଏହି ଆରୋହଣର ପ୍ରକ୍ରିୟା ଭିତରେ ଆନୁସଙ୍ଗିକ ଜୀବନ କାହାଣୀ ଗୁଡ଼ିକ ମୂଳ କାହାଣୀ ସହିତ ଯୋଡ଼ି ହୋଇଯାଏ ଏବଂ ଊର୍ଦ୍ଧ୍ୱମୁଖୀ ହୋଇ ଗତିଶୀଳ ହୁଏ ।

ଛ) କେହି କେହି କହନ୍ତି, ଏହା ସୁଖପାଠ୍ୟ ନୁହେଁ । ଅଧିକ ମାନସିକ ଚାପ ପକାଏ । ଏହି ମତାମତ ମୋ ପାଇଁ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ କିଭଳି ଏହାର ସମାଧାନ କରାଯାଇ ପାରିବ ତାହା ମୁଁ ଜାଣେ ନାହିଁ । ପାଠକଂକର ମତାମତକୁ ନେଇ ନିଜକୁ ପରିବର୍ତ୍ତିତ କରିବାର ଚିନ୍ତା ବି ମୋର ନାହିଁ । କାରଣ ମୁଁ ଜାଣେ, ମୁଁ ସେମାନଂକ ପାଇଁ ଲେଖୁଛି । ଏହି ଲେଖିବା ପଛରେ ମୋର ଆନ୍ତରିକ ନିଷ୍ଠା, ଶ୍ରମ ଓ ଉଦ୍ଦେଶ୍ୟ ବି ଅଛି । ହୁଏତ ଦିନେ ସେମାନେ ମୋର ଚିନ୍ତାଧାରା ଭୁଲ ବୋଲି ବୁଝିପାରେ ହୁଏତ କିଛି କରିପାରେ ।

ଜ) କ'ଣ କେଜାଣି ? ମୁଁ ଜାଣିନି । 

✼ ଗୌରାଙ୍ଗ ଚରଣ ଦାସ
ଅନୁଗୁଳ କଲେଜ

କ) ହଁ, ଆପଣଙ୍କ ସହ ମୁଁ ଏକମତ । ଆମ ଉପନ୍ୟାସ ସାହିତ୍ୟରେ ଆମ ଜାତୀୟ–ଜୀବନ ଓ ଜଗତ–ଜୀବନର ବହୁ କାହାଣୀ ଅନୁକ୍ତ ରହି ଯାଇଛି । ବିଶେଷତଃ ଆମ ସାହିତ୍ୟର ଐତିହାସିକ ଉପନ୍ୟାସ ରଚନାର ଦିଗଟି ଖୁବ୍ ଦୁର୍ବଳ; ଯଦିଚ ଏ ବିଭାଗରେ ଆମର କେତୋଟି ଆଂଗୁଠି ଗଣା କୃତି ରହିଛି । ସେକଥା ଥାଉ, କହିଲେ ଦେଖି, ଆମ ହୃଦୟ ଭୂଇଁରୁ ମାଟିକୁ ଭଲ ପାଇବାର ସୂକ୍ଷ୍ମତମ ଭବ– ବୀଜଟି ଶୁଖି ସେମେଟା ପଡ଼ି ଯାଇନି କି ? ଆମେ ବିଭିନ୍ନ-

ବାଦର ଗଣକାଧିକାରୀମାନେ ପରସ୍ପରକୁ ଚମତ୍କାର ଭବରେ ଚିତାକାଟି-ବାର, ଠକିବାର ଯୋଜନାମାନ ତିଆରି କରିବାରେ ବ୍ୟସ୍ତ ରହୁନ୍ତୁ କି ?? ବୁଦ୍ଧି, ଶ୍ରଦ୍ଧାକୁ ଆପଣାର ଅହଂ ଖୁଣ୍ଟରେ ବାଂଧି ପକେଇଚୁ ଆମେ ଘରି ଆଣ୍ଡରେ । ଫକରତ୍ୱର ବୀଜାଣୁ ଆମ ସମଗ୍ର ଚେତନାକୁ ଗ୍ରାସି ଯାଇଚି । ଆମ କଥା କାବ୍ୟରେ ଉପର୍ଯ୍ୟୁକ୍ତ ଭବର କଳାତ୍ମକ ଅନୁରଣନ ଘଟୁଚି କି ? ଭେଗ-ଖୋର, ଲଂଗୁଡ଼ଜକା, ଆତ୍ମ ରକ୍ଷା ଓ ଆତ୍ମ ତୃପ୍ତି ପାଇଁ ସଦା ଜାଗ୍ରତ ଆମ ସାହିତ୍ୟ ଜଗତର ଅଧିକାଂଶ ରୋଲମି ସ୍ରଷ୍ଟା ତ "ବିଷ କୁମ୍ଭଂ ପୟୋମୁଖଂ"ର ସୁସଜ୍ଜିତ ଭଣ୍ଡ ପରି ଶୋଭ ପାଉଚନ୍ତି ହାଟ ବଜାରରେ । ସେମାନେ କେବଳ ଛଳନା ପ୍ରବୀଣ । ପଗା ଛିଣ୍ଡେଇ ମୁହାଁଉଚନ୍ତି ପଶ୍ଚିମକୁ କଥା ଖୋଜିବା ପାଇଁ, କଥା କହିବାର ବାଗ ଶିଖିବା ପାଇଁ । ବିଦେଶୀ ଗଛ ପୋତା ଯାଉଛି ଆମ ମାଟିରେ । ତେଣୁ ଆମ ଭିତର ବାହାରର କଥା ଅନୁକ୍ତ ରହିବ ନି କେମିତି ? ପୁଣି ଯେଉଁ ଦେଶୀ ଗଛ ଚେତନା ଭୂଇଁରେ ପୋତୁଚୁ, ସେଥିରେ ଆମର ସେତିକି ଶ୍ରଦ୍ଧା, ଅନୁରକ୍ତି ଅଛି କି ? କହିବା କାହାକୁ ?

ଖ) ଦେଖନ୍ତୁ, ମୋ ଭିତରେ ଅନୁଭୂତିର ପ୍ରାଚୁର୍ଯ୍ୟ ନାହିଁ । କଂଗ୍ଳ ବୟସର ମଣିଷ(?) ଟିଏ ମୁଁ । ବୟସ ପାକଳ ହେଲେ ଯାଇଁ ସିନା ବିଗ୍ଭରବୋଧ, ମନନଶୀଳତାର ଫଳ ପାଚିବ ! ମୋର ଦୁଃଖ କ'ଣ ଜାଣନ୍ତି ? ଅନ୍ୟମାନଂକ ପାଖରେ ଅପରି-ଚିତଟିଏ ପରି ବସି ରହିବାକୁ ମତେ ଭଲ ଲଗେ । ମୁଁ ନୁଚି ନୁଚି ବାଟଗ୍ଭଲେ । ସମବେତ ସକଳଂକ ପଛ ଧାଡ଼ିରେ ମୁହଁ ପୋତି ବସି ରହିଥାଏ । ନାଜଲଗେ ନିଜ ଛୋଟ ପରିଚୟକୁ ପ୍ରକାଶିବା ଲଗି । ଆଉ ଅନ୍ୟମାନେ ମୋତେ ଭବନ୍ତି ବୟସଟିଏ ବୋଲି । ଥାଉ ସେ କଥା । ମୋର ଏମିତି କୌଣସି କଥା ନାଇଁ, ଯା ଭିତରେ ମୋ ଛୋଟ 'ମୁଁ'ଟି ନାଇଁ । ଏ ପର୍ଯ୍ୟନ୍ତ ତିନୋଟି କଥାକାବ୍ୟ ଲେଖିଚି । ସବୁଥିରେ ମୋ ଜୀବନର ଅନୁଭୂତିର ତାତି ରହିଛି । ମୋ ଭିତର ଦେଇ ମୋ ଚଉପାଶରେ ଆତଯାତ ମଣିଷମାନଂକୁ ଚିହ୍ନିବାକୁ ଚେଷ୍ଟା କରିଛି । ସଫଳ ହେଇଚିକି ନାଇଁ, ସେମାନଂକ ପ୍ରାଣକୁ ଛୁଇଁ ପାରିଚି କି ନାଇଁ, ପାଠକମାନେଇ କହିବେ । ସେମାନେ ତ ସୃଷ୍ଟିର ପ୍ରକୃତ ବିଗ୍ଭରକ । ମୁଁ କେହି ନୁହେଁ, ନାଁ ।

ଗ) ନା, ପାଠକୀୟତାର ଅଭାବ ଆମ ଉପନ୍ୟାସ ସାହିତ୍ୟର ବୈଚିତ୍ର୍ୟକୁ ବିକଳାଙ୍ଗ କରି ଦେଇନି । ଭଲ ଉପନ୍ୟାସର ଅଭାବ ହିଁ ଏହାର କାରଣ । 'ଛମାଣ ଆଠ ଗୁଣ୍ଠ', 'ପ୍ରତିହିଂସା' , 'ହା ଅନ୍ନ', 'ଶାସ୍ତି' , 'ମାଟିର ମଣିଷ' , 'ପରଜା', 'ନୀଳଶୈଳ', 'ଚନ୍ଦ୍ର ଓ ଚ'ପା', 'ଦିଗ ବିହୁଡ଼ି' ଓ 'ଶକୁନ୍ତଳା' ପରି ରତ୍ନଗୁଡ଼ିକୁ କେହି କଣ କେବେ ଅନାଦର, ଅଣଦେଖା କରିପାରେ ? ଚହଲ ବୟସର ପିଲମାନଙ୍କର ନିମ୍ନ ଚେତନାର ଉଦ୍ଦୀପନା ଓ ଚକିଆ ତଳ ପାଇଁ ଉପନ୍ୟାସ ଲେଖୁଥିବା ଲେଖକ ଓ ଲେଖିକାମାନେ ( ଏମାନଙ୍କୁ କୌଣସି ବିଶେଷ ବିଶେଷଣରେ ଚିହ୍ନଟ କରିବାକୁ ମୁଁ ଉଚିତ ମଣୁନି ) ଆମ ଉପନ୍ୟାସର ଅନାଦରର କାରଣ । କହିଲେ ଦେଖି, ପାଠକଟିଏ ଉପନ୍ୟାସଟିଏ ପଢିଲ ବେଳେ ତା' ଭିତରେ ନିଜକୁ ଯଦି ଅନୁଭବ କରି ନପାରିଲ, ଗ୍ଭଲିବାର ତ୍ୟାଗପୂତ ମାର୍ଗଟିଏ ଖୋଜି ନପାଇଲ, ଚେତନାରେ ଗ୍ଭଉଁ ଲଗି ନଗଲ, ସେ ବା ତାକୁ ପଢିବ କାହିଁକି ? ତା' ସମୟ ଓ ଅର୍ଥର ତ ପୁଣି ମୂଲ୍ୟ ଅଛି । କଥାକାର ମାନେ କଲମ ମୁନରେ ସମାଜର ପାଣି ପବନରେ ପତ୍ର ଝାଡୁଥିବା, ଫୁଲ ଫୁଟାଉଥିବା, ଫଳ ଫଳାଉଥିବା ଆପଣା ଚେତନା ବୃକ୍ଷର ବିଚିତ୍ର ଅନୁଭୂତିକୁ ରସାଣିଲ ରୀତିରେ ଉପସ୍ଥାପନ କରିବା ଆବଶ୍ୟକ । ତେଣୁ ଭଲ ଉପନ୍ୟାସର ଅଭାବ ଆମ ପଠନ ଅନୁରାଗକୁ ରୋଗାକ୍ରାନ୍ତ କରି ଦେଇଚି ।

ଘ) ଭରି ଗୁରୁ ପ୍ରଶ୍ନଟିଏ । ନବନ୍ୟାସ, ଗଦ୍ୟକାବ୍ୟ, କଥାକାବ୍ୟ ପର । ଆମ କବି–ସମୀକ୍ଷକମାନେ ଏହାକୁ ସ୍ରଷ୍ଟାର ପ୍ରତିଭାର କଷଟି ପଥର ବୋଲି କହିଛନ୍ତି । ତେଣୁ ଏଥିରେ କଥା ରହିବ । କଥାକାର ମଧ୍ୟ ରହିବ । 'କଥା' ପରେ କାବ୍ୟ ଶବ୍ଦଟି ଯେତେବେଳେ ଯୋଡ଼ିଚୁ, କାବ୍ୟ ରଚନା କରିବାର ଚତୁର ବାଗଟିକୁ ଛାଡ଼ିଦେଲେ, ତାହା ରମଣୀୟ ଗୁଣକୁ ଧାରଣ କରି ପାରିବ ନାହିଁ । 'ବାଗ' ଶବ୍ଦଟିକୁ ଯେତେବେଳେ ଲେଖୁଚି– ଏଇ ଶବ୍ଦ ସମ୍ପର୍କିତ ଛୋଟ ଉଦାହରଣଟିଏ ଦେବାର ଲୋଭ ଛାଡ଼ି ପାରୁନି । ଆପଣ ଜଣେ ଅଶ୍ୱାରୋହୀର ଚଳମାନ ଚିତ୍ରଟିଏ ମନ ଭିତରେ ଆଁକି ଦିଅନ୍ତୁ । ଆପଣଙ୍କ ମନ ମୁତାବକ ରଙ୍ଗର ଘୋଡ଼ାଟିଏ ହୋଇଥିବ । ତା' ଦେହରୁ ଘିଅ ବୋହି ପଡୁଥିବ । ପିଠିରେ ପଡ଼ିଥିବ ସୁଦୃଶ୍ୟ ଆସନଟିଏ । ସୁବେଶିତ, ସୁଦକ୍ଷ ସଇସଟିଏ ବସିଥିବ ତା'

ଉପରେ । ବାଗ ଦଉଡ଼ିଟିକୁ କଉଶଳରେ ଭିଡ଼ି ଧରି ଥିବ । ତେବେ ଯାଇଁ ସିନା ତା' ଗତିରେ ଛଟକ ଉକୁଟିବ । ଏଥିପାଇଁ ଗୁଡାଏ ଆନୁସଙ୍ଗିକ ଉପାଦାନ ଲୋଡ଼ା । ସର୍ବୋପରି ଲୋଡା ଜୀବନୀ- ଶକ୍ତିରେ ଗତିଶୀଳ ସେମିତି ମନ-ଟିଏ । କେହି ଗୋଟିଏ ଦୁର୍ବଳ ହେଲେ, ସବୁ ମାଉ ହୋଇଯିବ । ପୂର୍ଣ୍ଣତା ଆସିବନି । ତେଣୁ କଥାବସ୍ତୁ ଓ ଶିଳ୍ପରୀତି ମଧ୍ୟରେ କାହାକୁ ମୁଁ ବେଶୀ ଗୁରୁତ୍ୱ ଦିଏ କେମିତି କହିବି ? ଏ ଉଭୟର ଗତିଶୀଳତାରେ ମୁଁ ସ୍ୱଚ୍ଛନ୍ଦତାକୁ ହିଁ ସମ୍ମାନ ଦିଏ ।

୫) ଉପନ୍ୟାସର ସମୟଗତ ପ୍ରାଣ ସ୍ପନ୍ଦନ କିପରି ପ୍ରତିସ୍ପନ୍ଦିତ ହୁଏ, ତାର ଏକ ଗାଣିତିକ ଉତ୍ତର ଦେବାପାଇଁ ମୁଁ ଅସମର୍ଥ । ଏଇଟି ମୋ ପାଇଁ ବଡ଼ ସମସ୍ୟାଟିଏ । ଭ୍ରୂଣ ସଂଗ୍ରର ପରେ ପ୍ରତୀକ୍ଷିତ ଅନାଗତଟି କେମିତି ତିଆରି ହେଉଥାଏ ମା'ର ଜଠରରେ, ସେ କ'ଣ ଦେଖିପାରେ ତା'ର ବିଚିତ୍ର ସୃଷ୍ଟି ପ୍ରକ୍ରିୟା କୁ ? ତାର ସଂକେତକୁ ଯାହା ଅନୁଭବ କରେ ମନରେ, ଦେହରେ । ଦେହ–ବିଜ୍ଞାନୀମାନେ ଅବଶ୍ୟ ଚିତ୍ରକାଟି ବୁଝେଇ ଦେଲେଣି ସେ ପ୍ରକ୍ରିୟାର ଧାରକୁ । ମାତ୍ର ଏବେ ବି ବହୁ ଗୋପନ କଥା ଅନୁଦ୍‌ଘାଟିତ ହେଇ ରହିଚି । ରହସ୍ୟର ଅନ୍ଧାରଘର ଯୋଉଦିନ ପୂରପୂରି ମୁକୁଳା ହେଇଯିବ, ସେ ଦିନ ସବୁ ସରିଯିବ । ତେବେ ମୁଁ ଭାବୁଛି– ଏ କଥାକୁ ଆପଣ ବିଶ୍ୱାସ କରିବେ ଯେ, ଗର୍ଭସ୍ଥ ଅନାଗତର ଶାରୀରିକ ଓ ମାନସିକ ଅଭିବୃଦ୍ଧି ପାଇଁ ଆମେ ଖୋରାକ୍ ଯୋଗଉ । ମା'କୁ ଅନେକ କଥା ପଢ଼ିବାକୁ, ଦେଖିବାକୁ, ଶୁଣିବାକୁ, ଖାଇବାକୁ ଦିଆଯାଏ । ପରିବେଶ, ପରିସ୍ଥିତି ଓ ସମୟ ଅନୁରୂପ ଭାବରେ ମଣିଷକୁ ହିଁ ତିଆରି କରେ । କଥାକାର ସେ ସବୁର ଜଣେ ରୂପକାର । ତା'ର ଚେତନା-ଭାଣ୍ଡରେ ସେ ସମସ୍ତ ବିଭବ ପରିପାକ ହୁଏ । ଏଇ ମାଟିରୁ ସେ ରସ ଗ୍ରହଣ କରେ । ସୃଷ୍ଟି କି ରୂପ ନେବ, କେମିତି ଆଦୃତ ହେବ, ତାହା 'ବଚନ-ବିଳାସ-ନୁହଁଇ-ସେ ଛବି' ଭାବର ସମଧର୍ମୀ । ସମୟର ମାଟି ଉପରେ ଠିଆ ହେଇ ସମୟାତୀତର ଅଶ୍ରୁତ ସ୍ୱରକୁ ଯେ ସୃଷ୍ଟି ମାଧ୍ୟମରେ ଶୁଣେଇ ପାରେ ସେ ହିଁ କେବଳ କାଳଜୟୀ ସ୍ରଷ୍ଟା ହେବାର ଅଧିକାରୀ, ଯୋଗ୍ୟ ।

ଛ) ତାଙ୍କ ସହ ମୁଁ ବହୁ ଭାବରେ ଏକମତ । ମାତ୍ର ଏ ସମ୍ପର୍କରେ "ଐତରେୟ ବ୍ରାହ୍ମଣ"ରେ ଛଦ୍ମବେଶୀ ଇନ୍ଦ୍ର, ଶ୍ରମକ୍ଳାନ୍ତ ପଳାୟନବାଞ୍ଛୀ ରାଜପୁତ୍ର ରୋହିତଂକୁ ଉପଦେଶ ଛଳରେ ପ୍ରଦାନ କରିଥିବା ଚରୈବେତି, ଚରୈବେତି, ଚରୈବେତି ତତ୍ତ୍ୱାଶ୍ରୟୀ ପାଞ୍ଚଗୋଟି ଶ୍ଳୋକର ଭାବ ମୋ ସ୍ଥୂଳ ଚେତନାକୁ ଚହଲେଇ ଦିଏ । ଏ ସମ୍ପର୍କରେ ଇନ୍ଦ୍ରଙ୍କ ଉକ୍ତି– "ଆଗକୁ ନଯାଇ ପଛକୁ ଫେରି ଆସିବା ଭୀରୁତା" । ନିଶ୍ଚେତନତା, ସ୍ଥାଣୁତା ହିଁ, ମୃତ୍ୟୁ ଚେତନାର ପରିଭାଷା ମାତ୍ର । ତେଣୁ ଆମକୁ ଗତି କରିବାକୁ ପଡ଼ିବ । ପ୍ରତିରୋଧର ପିଚ୍ଛିଳ କ୍ରମ ଊର୍ଦ୍ଧ୍ୱଗ ପଥକୁ ଅତିକ୍ରମିବାକୁ ପଡ଼ିବ ଏବଂ ଏହା ଦିଗ୍‌ବଳୟର ଚୂଡ଼ା ସ୍ପର୍ଶ କରିବାର ଆନ୍ତରିକ ଅଭିଯାତ୍ରା ବ୍ୟତୀତ ଅନ୍ୟ କିଛି ନୁହେଁ । ମୋ ବିଚାରରେ– ସାହିତ୍ୟ ଯଦି ଆମକୁ ଜୀବନର ସତ୍ୟ ସମ୍ପର୍କରେ ସଚେତନ କରେଇବାର ଏକ ମହତ୍ ମାର୍ଗ, ତେବେ ମନ ଜଗତର ସବୁ ସୁଷୁପ୍ତି, ହୀନମନ୍ୟ, ଅହଂ ଭାବକୁ ଦରେଇ ଦେଇ, ମୋହମୁକ୍ତ ଭାବରେ ସ୍ରଷ୍ଟାକୁ ଆଗକୁ ପାଦ ପକେଇବାକୁ ପଡ଼ିବ । ମନର ସବୁ ପ୍ରତିରୋଧ, କ୍ଳାନ୍ତି, ଯନ୍ତ୍ରଣା, ବିଷାଦବୋଧ ଦୂରେଇ ଯିବ ଆପେ ଆପେ । ଶୋଇ ରହିବାର ଅପମୃତ୍ୟୁରୁ ଆମେ ମୁକ୍ତି ପାଇବୁ । ଆନ୍ତରିକ ଅନୁରକ୍ତିବୋଧ ତ ସୃଷ୍ଟିର ମୂଳକଥା । ଏଇ ଚେତନା, ଆମ ରଚନା– ଆଦର୍ଶର ସମଧର୍ମୀ ହେଉ ।

ଛ) ମୋ ଉପନ୍ୟାସ ଗୁଡ଼ିକ ଏବେ ପ୍ରକାଶକମାନଂକ ସିନ୍ଦୁକରେ । ସେମାନଂକ ଅନୁକଂପାର ପାତ୍ର ହେଇଚି ମୁଁ । ଭାଗ୍ୟ । ମାତ୍ର ପ୍ରକାଶନ ପୂର୍ବରୁ ମୋର ପ୍ରଥମ ଉପନ୍ୟାସ 'ଭବିଷ୍ୟ ଭାରତ' ଭୁଲ ବଶତଃ ବିଚାରକମାନଂକ ଦ୍ୱାରା ପୁରସ୍କୃତ ହୋଇଛି । ମାତ୍ର ମୋର କୃତିଗୁଡ଼ିକ ଉପରେ ଆଖି ପକେଇଥିବା ସହକର୍ମୀ, ସହୃଦ, ସତୀର୍ଥ ଓ ଛାତ୍ରମାନେ କହନ୍ତି– "ୟାଙ୍କ ଛେନାରୁ ଗ୍ରେପା ଛଡ଼ା ଲେକଟା । ଖୁର୍ଣ୍ଣ ନାର୍ଣ୍ଣ କେମିତି ଏତେ କଥା ଲେଖେ କେଜାଣି ?" ମୋ ଗପ ସମ୍ପର୍କରେ ମଧ୍ୟ ପାଠକମାନଂକର ସମ ଅଭିଯୋଗ । ଅନ୍ୟମାନଂକ ମୁହଁରେ ଖୋଲ ଖୋଲି ଭାବରେ ଆପଣା ପ୍ରଶସ୍ତି ଶୁଣିବାକୁ ମତେ ଭଲ ଲାଗେ-ନି , (କ୍ଷମା କରିବେ, ମୁଁ ମହାମାନବ ନୁହେଁ । ଆଗ ଦିନ ଗୁଡ଼ିକରେ ଏ ପୋଡ଼ା ମୁହାଁର ମନ କି ରଂଗ ନେବ ତା ମଧ୍ୟ ଜାଣେନା) ଭାବେ, ମୋର

ଦୁର୍ବଳତାକୁ ଆଳ କରି ସମସ୍ତେ ମତେ ଭଲ ରକମ ପାନେ ପାନେ ଚଖାନ୍ତେ କି ? ମୁଁ ନିଜକୁ ସଜାଡ଼ି ନିଅନ୍ତି । ମୋ ମନ ଓ ଦେହର କ୍ଷତ ଗୁଡାକୁ ନିଭେଇ ପକାଇବାକୁ ଚେଷ୍ଟା କରନ୍ତି । ମୁଁ ସେତେ ବଡ ନୁହେଁ । ତେଣୁ ବୋଧହୁଏ ମୋ ପରି ଏକ ଏରଣ୍ଡ ଗଛକୁ କେହି ଆଡ ଆଖିରେ ଅନିଷା କରୁ ନାହାନ୍ତି । ସେମିତି ସୌଭଗ୍ୟ କେତେ ଜଣଙ୍କ କପାଳରେ ଯୁଟେ ?

ଙ) ଶଏ ବରଷର ସୁସମୃଦ୍ଧ ପରଂପରାରେ ଏକ ପରିଚୟ ହୀନ, ସାଧାରଣ ଚରିତ୍ର ମୁଁ । ଅକିଂଚନ, ଅପରିଚିତକୁ ଆପଣମାନେ ଯେ ମନେ ପକେଇଚନ୍ତି, ତାହା ମୋ ପାଇଁ ବଡ କଥା । କମ୍ ଗର୍ବ ଓ ଗୌରବର ବିଷୟ ନୁହେଁ । ତେଣୁ ଉପନ୍ୟାସର ଭବିଷ୍ୟତ ସମ୍ପର୍କରେ କିଛି ମନ୍ତବ୍ୟ ଦେବା ପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ ବୋଲି ନିଜକୁ ଭାବୁଚି ମୁଁ । ନ କହିଲା ପରି ଏତିକି ମାତ୍ର କହୁଚି– ଆମ କଥା କାବ୍ୟ ଆମ ମାଟିର ହେଉ– ମନର ନହେଇ ମନ୍ତ୍ରରେ ହେଉ ।

□

□ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା
କବି କୁଟୀର, ବଲାଙ୍ଗୀର

କ) କାହାଣୀ କଣ କେତେବେଳେ ସରେ ? ଜୀବନ, ସୃଷ୍ଟି, ସୃଜନର ଇଚ୍ଛା, କହିବା ଶୁଣିବାର ଆଗ୍ରହଟି ସରିଗଲେ ସିନା ଆଉ କୁହାଯିବ ନାଇଁ ବା କହି ହେବ ନାଇଁ । ତା' ମାନେ ସେତେବେଳେ ଯାଇଁ କହି ହେବ ଯେ ଆଉ କୌଣସି କଥା ଅକୁହା ହୋଇ ରହି ନାହିଁ । ଏହି କହିବାର ଆରମ୍ଭ ତ ଖାଲି ଶହେଟି ବର୍ଷ ହେଲା ହୋଇନି ! ରାମାୟଣ ମହାଭାରତ ଆଗରୁବି ଏ ପ୍ରକ୍ରିୟା ଚାଲିଛି ଯେ ଚାଲିଛି ଏବଂ ତାହା ସରିନାହିଁ, ସରିବ ନାହିଁ ବି । ସ୍ଥୂଳ ବସ୍ତୁକୁ ଦେଖନ୍ତୁ । ସେଇ ଗୋଟାଏ ଜିନିଷକୁ ବା ଦୃଶ୍ୟକୁ ଏକା ସାଙ୍ଗରେ ଶହେ

ଲୋକ ଦେଖୁଛନ୍ତି । ସମସ୍ତେ କଣ ସମାନ କଥା ଦେଖୁଛନ୍ତି ! ଠିଆ ହେବାର କ୍ଷେତ୍ର, ଆଖିର ସ୍ଥିତି ଭେଦରେ; ଉପେକ୍ଷଣୀୟ ଭେଦ ହେଲେହେଁ ଭିନ୍ନେ-ଭିନେ ଦେଖୁଛନ୍ତି । କଳାକାର ତ ସ୍ଥୂଳଟି ସାଙ୍ଗରେ ସୂକ୍ଷ୍ମକୁ ବି ଦେଖୁଛି । ସେଇଆ ଅଭିବ୍ୟକ୍ତ ହେଉଛି ତାର କାହାଣୀ ଉପନ୍ୟାସ ମାଧ୍ୟମରେ । ସୂକ୍ଷ୍ମଟି ଅଧିକ ବ୍ୟାପକ, ଅଧିକ ଅଧିକ କ୍ଷେତ୍ର ମାଡ଼ି ମାଡ଼ି ବସେ । ତାକୁ ଯେତେ ଯେତେ ନିରେଖି ଯାଉଥିବା ସେ ସେତେସେତେ ଖେଳେଇ ହୋଇ ଯାଉଥାଏ । ଆଉ ସେଇ କଥାକୁ କିଏ କେମିତି ଦେଖେ କିମ୍ବା କେମିତି ଦିଶେ କହିବା ଆଦୌ ସହଜ ନୁହେଁ । ଗୋଟାଏ ବିନ୍ଦୁକୁ ଆକାଶର ବ୍ୟାପ୍ତି ଦେବା ଓ ଆକାଶକୁ ସାଉଁଟି ଆଣି ଗୋଟାଏ ବିନ୍ଦୁରେ ରଖିଦେବା ଲାଗି ସମାନ କ୍ଷମତା ଦରକାର । ତେଣୁ କେତେ କୁହା ଗଲାଣି ଆଉ କେତେ ବାକି ଅଛି କହିବା ଅସମ୍ଭବ କଥା-ଟିଏ । ସେକଥା ସୃଜନଶୀଳ ଲେଖକ ଆଦୌ ଚିନ୍ତା କରେ ନାହିଁ, ସୃଜନାତ୍ମକ ପ୍ରକ୍ରିୟାର ସ୍ୱଭାବ ମଧୁର ସ୍ରୋତଟି କୁଆଡେ ହଜି ଯିବ ପାଖାପାଖି ଏଇ ଡରରେ ।

ଖ) ନିହାତି ସତକଥା । ସ୍ରଷ୍ଟାର ଜୀବନାନୁଭୂତି ସହିତ ତାର ସୃଷ୍ଟିର ସମ୍ପର୍କ ନିଶ୍ଚିତ ଭାବରେ ଅବିଚ୍ଛେଦ୍ୟ । ତେବେ ମଣିଷର ଯେମିତି ଚେତନ, ଅବଚେତନ ଓ ଚେତନାହୀନ ଅବସ୍ଥା ବା ସ୍ଥିତି ରହିଛି ସେଇଭଳି ତାର ଜୀବନାନୁଭୂତି ସୃଷ୍ଟିରେ ବି ପ୍ରତିଫଳିତ ହୋଇଥାଏ କୋଉଠି ସଚେତନତା ଭିତରେ, କୋଉଠି ଅବଚେତନା ଭିତରେ, ଅଲକ୍ଷରେ । କୋଉଠି ସ୍ପଷ୍ଟ, କେଉଁଠାରେ ଈଷତ୍ ସ୍ୱଚ୍ଛ... । ମୋର 'ଶିଳାର ସପନ' ଓ 'ଅନ୍ଧାର ଭୈରବ ପଢିଛନ୍ତି । ମୁଁ ତ ସେଠାରେ ଆରମ୍ଭରୁ ଶେଷଯାଏ ଉପସ୍ଥିତ ରହିଛି । ଅତୀତକୁ ମୋ ଆଖିରେ ମୋ ବାଗରେ ଦେଖି ଦେଖି ଯାଇଛି । ନିଜର ଜୀବନାନୁଭୂତି, ଜୀବନ ଗାଥା ନୁହଁ । କାହାଣୀ ଭିନ୍ନେ ହେଲେବି ତାର ବିନ୍ୟାସ, ଅଭିବ୍ୟକ୍ତିର ଭଙ୍ଗୀରେ ସେ ରହିବ-ହିଁ ରହିବ । ଜୀବନାନୁଭୂତି, ସମାଜ, ପରିବେଶ ସହିତ ଲେଖକର ନିବିଡ଼ ସଂବନ୍ଧ ଅଧ୍ୟୟନ ଅନୁଶୀଳନରୁ ମିଳିଥାଏ । ତାର ପ୍ରତିଫଳନ, ଭାବପ୍ରକାଶ ଓ ପ୍ରକାଶ ଶୈଳୀ ଉଭୟରେ ଊଣା ଅଧିକେ ପ୍ରତିଫଳିତ ହୋଇଥାଏ । ଆମ ସାହିତ୍ୟରେ ଫକୀର ମୋହନଙ୍କଠାରୁ ଆରମ୍ଭ କରି ଶାନ୍ତନୁ ବାବୁ, ଗୋପୀନାଥ

ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଚନ୍ଦ୍ରଶେଖର ରଥ ଆଦି ଆଦି ତାର ଉତ୍କୃଷ୍ଟ ଉଦାହରଣ ।

ଗ) ଲେଖକ ପାଠକଙ୍କ ପାଇଁ ଲେଖେ, ଏହା ସତ । ତେବେ ପାଠକର ରୁଚିକୁହିଁ ସାମନାରେ ରଖି ଲେଖେ, ଏହା ଆଦୌ ସତ ନୁହଁ । ପାଠକ ଭେଟର ଆଉ ଲେଖକ ଭେଟ ପ୍ରାର୍ଥୀ ନୁହେଁ । ସେଭଳି ହେଲେ ସାହିତ୍ୟ ରାଜନୀତିର ସ୍ଲୋଗାନଟିଏ ହୋଇ ରହିଯିବ । ସମାଜର କୌଣସି ଏକ ସ୍ଥିତି, ମଣିଷର କୌଣସି ଏକ ଚିତ୍ତବୃତ୍ତି କୌଣସି ଏକ ଯଥାର୍ଥତାକୁ ଆଧାର କରି କାହାଣୀର ସୂତ୍ର ଦେଇ ଏକ ସତ୍ୟକୁହିଁ ଗୁନ୍ଥି ଗୁନ୍ଥି ଯାଏ ଲେଖକ । ସେ ସତ୍ୟ ଯେତେ ସାର୍ବଜନୀନ, ଲେଖକର ପାଠକ ସଂଖ୍ୟା ସେତେ ଅଧିକ । ଗୋଟିଏ ଉପନ୍ୟାସ ଜଣକୁ ଭଲ ଲାଗିଲା ବୋଲି ଆଉ ଜଣକୁ ଯେ ନିଶ୍ଚୟ ଭଲ ଲାଗିବ ବା ଲାଗିବା ଉଚିତ, ତାହା ନୁହେଁ ।

ଘ) ମୁଁ କଥାବସ୍ତୁ ଓ ଶିଳ୍ପ ରୀତି ଉଭୟକୁ ସମାନ ଗୁରୁତ୍ୱ ଦେଇଥାଏଁ । ତାହା ନହେଲେ ଭାରସାମ୍ୟ ଆଦୌ ରହିବ ନାହିଁ । ନୀଳଶୈଳର ଶିଳ୍ପରୀତି ଓ ଭାଷା ଅନ୍ଧ ଦିଗନ୍ତ ଭଳି ହେଲେ ଭଲ ଲାଗିବ ନା ଆପଣଙ୍କୁ ?

ଙ) କାଳର ଗତି ସହିତ ବହୁ ପରିବର୍ତ୍ତନ ସଂଘଟିତ ହେବ । ଏହା ନିତାନ୍ତ ସ୍ୱାଭାବିକ । ଭାଷା, ଶିଳ୍ପ, ଶୈଳୀ, କଥ୍ୟ ସବୁକିଛି ନିଶ୍ଚିତ ଭାବରେ ବଦଳିବ । ଆପଣ ଯଦି ଏହି ପରିବର୍ତ୍ତନକୁ ବୈଜ୍ଞାନିକ ପ୍ରଗତି ବୋଲି ମନେ କରୁଥାନ୍ତି ତାହେଲେ ମୋ ପାଖରେ କହିବା ଭଳି ବିଶେଷ କିଛି ନାହିଁ । ମୁଁ ସବୁବେଳେ, ଯେକୌଣସି ସାରସ୍ୱତ କୃତିରେ ଅନ୍ତର୍ନିହିତ ଆସ୍ଥା, ବିଶ୍ୱାସ, ସତ୍ୟ, ଯଥାର୍ଥତାକୁ ଖୋଜିଥାଏଁ । ତା ନହେଲେ ମୋତେ କେମିତି ଖାଲି ଖାଲି ଲାଗେ, ନିରର୍ଥକ ଲାଗେ । ଏହା ମୋର ପାଠକୀୟ ରୁଚି । ଏହା ଏକାନ୍ତ ଭାବରେ ଗ୍ରହଣୀୟ ବୋଲି ସମସ୍ତେ ସ୍ୱୀକାର କରନ୍ତୁ ମୁଁ ତାହା କହୁ ନାହିଁ । ସମସାମୟିକ କାଳର ପ୍ରାଣସ୍ପନ୍ଦନ ପ୍ରତ୍ୟେକ ସାର୍ଥକ ରଚନାରେ ଅବଶ୍ୟ ରହିବ, ଏହାର ଅନୁପସ୍ଥିତି କୃତିକୁ ସାରସ୍ୱତ ଯଥୋଚିତ ମର୍ଯ୍ୟାଦାରୁ ବଂଚିତ କରିବ । ଏହା ଚିରନ୍ତନ ସତ୍ୟ ।

ଚ) ପ୍ରଥମରେ ଉଦ୍ଦେଶ୍ୟଟି ଆସେ । ତାପରେ ଲେଖକ ତାର ଅନୁଶୀଳନ କରେ ବାରଂବାର । ତାପରେ ଆସେ ଆସ୍ଥା । ଆସ୍ଥାଟି ନ ଆସିଲେ ହୁଏତ ସେଇଠି ସେ ତାକୁ ଛାଡ଼ିଦିଏ । ଏ ଆସ୍ଥାଟି ଜାଗ୍ରତ ନହେଲେ ସୃଷ୍ଟି ଆଦୌ ସମ୍ଭବ ହୁଏ ନାହିଁ । ତାପରେ ବାକି କଥା ସେସବୁ ସ୍ରଷ୍ଟାର ମୌଳିକତା । ଉଦ୍ଦେଶ୍ୟଟି ହେଉଛି ମଂଜି । ସବୁ ବୀଜ ବନସ୍ପତି ହୁଅନ୍ତି ନାହିଁ । ତାଲାଗି ଉର୍ବର ମାଟି ଟିକିଏ, ଉଚିତ ପାଣି ପବନ ଦରକାର । ତେବେ ଯାଇଁ ସେ ପଲ୍ଲବିତ, ପୁଷ୍ପିତ, ଫଳବନ୍ତ ହେବ ସିନା !

ଛ) ମୋର କୌଣସି ଲେଖା ବିରୁଦ୍ଧରେ ବା ସପକ୍ଷରେ କୌଣସି ଓଡ଼ିଆ ପାଠକ କେତେବେଳେ କେବେହେଲେ କିଛି କହି ନାହାନ୍ତି । ପାଠକୀୟ ପ୍ରତିକ୍ରିୟା ନିଶ୍ଚିତ ଭବରେ ଗୁରୁତ୍ୱପୂର୍ଣ୍ଣ । ତେଣୁ ମୁଁ ମୋର କେତୋଟି ବହିରେ ବିନୀତ ଭବରେ ଅନୁରୋଧ କରିଛି । ନିଷ୍ଫଳ ଅନୁରୋଧ । ଓଡ଼ିଶାର ପାଠକ ସେ ଦିଗରେ ଆଦୌ ସଚେତନ ନୁହନ୍ତି । ଆମର ସମାଲୋଚକ-ମାନେ ! ଛାଡ଼ନ୍ତୁ ତାଙ୍କ କଥା । ଆମ ସାହିତ୍ୟରେ ଗୋଷ୍ଠୀର ଆଲୋଚନା, ବ୍ୟକ୍ତିର ଆଲୋଚନା ଯେଉଁ ପରିମାଣରେ ହୁଏ ସାହିତ୍ୟର ସେହି ପରିମାଣରେ ହୁଏ ନାହିଁ । ଏହା ସାହିତ୍ୟର ବୃହତ୍ତମ ସ୍ୱାର୍ଥ ଦୃଷ୍ଟିରୁ କ୍ଷତିକାରକ ।

ଜ) ଆପଣ ମୋତେ ମଧ୍ୟ ଔପନ୍ୟାସିକ ତାଲିକାରେ ନେଇଛନ୍ତି । ମୁଁ ଆନନ୍ଦ ଅନୁଭବ କରୁଛି । ମୋର ପାଠକମାନଙ୍କୁ ଅନୁରୋଧ, କବିତା, ଗଳ୍ପ, ଉପନ୍ୟାସ ଯାହା ଯେମିତି ଲାଗୁଛି ଚିଠି ଲେଖି ଲେଖକଙ୍କୁ ଜଣେଇ ଦିଅନ୍ତୁ । ଆଲୋଚନା/ସମାଲୋଚନାକରି ସମ୍ପାଦକଙ୍କୁ ଲେଖନ୍ତୁ । ଏହା ଫଳରେ ଲେଖକ ପାଠକଙ୍କର ହୃଦୟ ହୃଦୟର ଦୂରତା ରହିବନାହିଁ । ଏହା ମୋର ବିଶ୍ୱାସ । ଲେଖକମାନଙ୍କୁ ଶେଷକଥା ଶୁଣେଇବା ମୋ ପକ୍ଷରେ ଧୃଷ୍ଟତାହିଁ ହେବ । ସେମାନେ କୌଣସି ବନ୍ଧନରେ ବାନ୍ଧି ହେବେ କାହିଁ; ଆପଣଙ୍କର ଆସ୍ଥା, ବିଶ୍ୱାସ ଓ ପ୍ରତିବଦ୍ଧତାର ବନ୍ଧନ ଛଡ଼ା......... । □

☐ ଶରତ ନାରାୟଣ ବେହେରା
ଆକାଶବାଣୀ, ସମ୍ବଲପୁର

କ) ୧୮୯୮ ରୁ ୧୯୯୮ ଶହେ ବର୍ଷ । ଓଡ଼ିଶା ତଥା ଭାରତ ଇତିହାସରେ ଉଲ୍ଲେଖନୀୟ । ଭାରତର ସ୍ୱାଧୀନତା ଆନ୍ଦୋଳନ, ଓଡ଼ିଶାରେ ଭାଷା ଆନ୍ଦୋଳନ, ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ସଂଗ୍ରାମ, ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତର ସ୍ୱାଧୀନତା ହାସଲ ଏହି ଶହେ ବର୍ଷର ଇତିହାସରେ ଲିପିବଦ୍ଧ । ଏସବୁକୁ ନେଇ କେତୋଟି ଉପନ୍ୟାସ ଲେଖା ହୋଇଛି ? ତେବେ ଏହି ଶହେ ବର୍ଷ ଭିତରେ ସଂଖ୍ୟାରେ ଅଳ୍ପ ହେଲେବି କେତୋଟି ଭଲ ଉପନ୍ୟାସ ଲେଖା ଯାଇଛି । ଆଞ୍ଚଳିକତାର ହିଡ଼ ଭାଙ୍ଗି ମାନବିକତାର କଥା କହିବା ପାଇଁ ପ୍ରୟାସ ହୋଇଛି । ତେବେ ଉପନ୍ୟାସ ମାଧ୍ୟମରେ ଯେତିକି କହିବାର କଥା, କୁହାଯାଇନି । ଅନେକ ଅକୁହା ହୋଇ ରହିଯାଇଛି । ମଣିଷ ଯେଉଁ ଦିନରୁ କଥା କହିବାର ଶିଖିଲା, ସେହି ଦିନରୁ କାହାଣୀ କହି ଚାଲିଛି । ତଥାପି କାହାଣୀର ସାଗର ଅନନ୍ତ । ଆଜିର ଅକୁହା କଥା କାଲି କୁହା ହେବନାହିଁ ବୋଲି କିଏ କହିବ ?

ଖ) ସ୍ରଷ୍ଟାଙ୍କ ସୃଷ୍ଟିରେ ମଣିଷ ନାମକ ଜୀବଟି ଅତି ବିଚିତ୍ର । ଏହି ମଣିଷ ଜୀବନର ପ୍ରତିଟି ମୁହୂର୍ତ୍ତ ବିଚିତ୍ର ଓ ଭିନ୍ନ । ଏହି ମୁହୂର୍ତ୍ତ ଗୁଡ଼ିକ ଯେଉଁ ଲେଖକ ଯେତିକି ନିବିଡ ଭାବରେ ଅନୁଭବ କରିପାରେ ଓ ତାକୁ ପୁଣି ତାର ଲେଖା ଗୁଡ଼ିକରେ ଗଭୀର ଭାବରେ ରେଖାଙ୍କିତ କରିପାରେ, ସେହି ଲେଖା ଗୁଡ଼ିକ ଅଧିକ ରସୋତ୍ତୀର୍ଣ୍ଣ, ହୃଦୟ ଛୁଆଁ । ତେଣୁ ନିତିଦିନିଆ ଜୀବନରେ ଯେତିକି ମରମ ଛୁଆଁ ଅନୁଭୂତି, ଯେତିକି ଦୃଶ୍ୟ ଅଦୃଶ୍ୟ ଚରିତ୍ର ଆସି ବସା ବାନ୍ଧି ରହି ଯାଆନ୍ତି ତା ଭିତରୁ କିଛି କିଛି ନେଇ କଳ୍ପନାର ପୁଟ ଟିକିଏ ମିଶେଇ ସୃଷ୍ଟିକରେ ଗଳ୍ପ, ଉପନ୍ୟାସ, କବିତା, ନାଟକ । ନିକଟ ଅତୀତରେ ପ୍ରକାଶିତ ଉପନ୍ୟାସ 'ଲୁକୁଚୁ' ଓ ଅତି ନିକଟରେ ପ୍ରକାଶ

ପାଉଥିବା ଉପନ୍ୟାସ 'ବୀରବର ଉପାଖ୍ୟାନମ୍'ର ଯେତିକି ଚରିତ୍ର ସବୁଯାକ ବାସ୍ତବ । ଖାଲି ନାଁ ବଦଳେଇ ଦେଇଛି । ରସୋର୍ତ୍ତୀର୍ଣ୍ଣ କରିବାଲାଗି କାହାଣୀର ବିନ୍ୟାସ କରିଛି ।

ଗ) ଓଡ଼ିଆ ଉପନ୍ୟାସ କଥା ଭାବିଲା ବେଳକୁ ବଡ ଦୁଃଖ ଲାଗେ ଯେ ବିଗତ କିଛି ବର୍ଷ ଭିତରେ ଉପନ୍ୟାସ ବିଶେଷ ଛାପା ହୋଇନାହିଁ । ଛପା ହୋଇନାହିଁ କହିବାର କାରଣ ଏବେବି ପ୍ରକାଶକଙ୍କ ଆଲମାରୀରେ, ଅଳିଆ ଗଦା ରେଡ଼ (Raid) କଲେ ଅସଂଖ୍ୟ ଉପନ୍ୟାସର ପାଣ୍ଡୁଲିପି ଉଦ୍ଧାର କରି ପାରିବେ ଏବଂ ସେଇ ଅଳିଆଗଦା ଭିତରେ ଯେ କେତୋଟି ଅମର ଉପନ୍ୟାସ ରହିଯାଇ ନାହିଁ କିଏ କହିବ !

ତେବେ ଖାଲି ପ୍ରକାଶକମାନଙ୍କୁ ଛାପୁ ନାହାନ୍ତି ବା ଛାପିଲେବି ବେଶୀ ଦାମ ଧରି ଦେଉଛନ୍ତି ବହି ଗୁଡ଼ିକର କହି ଲେଖକମାନେ ଦୋଷ ମୁକ୍ତ ହୋଇ ପାରିବେ ନାହିଁ । ଉପନ୍ୟାସ ପରି ଦୀର୍ଘ ଲେଖା ଲେଖିବା ପାଇଁ ପ୍ରତିଭା ସାଙ୍ଗରେ ଯେଉଁ ଅଧ୍ୟବସାୟ ଦରକାର ଆମ ଅଧିକାଂଶ ଔପନ୍ୟାସିକଙ୍କ ନାହିଁ । ତେଣୁ ଦୁଇ ଚାରି ପୃଷ୍ଠାର ଗଳ୍ପ ଲେଖି ସନ୍ତୋଷଲାଭ କରୁଛନ୍ତି । ଆଉ ପାଠକ ? ଯେଉଁ ଓଡ଼ିଆ ଗୃହିଣୀମାନେ ଆଗେ ଓଡ଼ିଆ ଉପନ୍ୟାସ, ଗଳ୍ପ ପଢୁଥିଲେ ମୁଖ୍ୟତଃ, ସେମାନେତ ଆଜି ସିନେମା, ଟି.ଭି., ଭିଡ଼ିଓର ପ୍ରଧାନ ପୃଷ୍ଠପୋଷକ । ତଥାପି ଭଲ ଉପନ୍ୟାସକୁ ସୁଲଭରେ ପାଇଲେ ପାଠକ ପାଠିକା ଊଣା ହେବେ ନାହିଁ । ଏ ଦିଗରେ ସରକାରୀ ପାଠାଗାର ଯେତିକି ବେଶୀ ହେବ ପାଠକ, ଲେଖକ ଓ ପ୍ରକାଶକଙ୍କ ପାଇଁ ସେତିକି ମଙ୍ଗଳକର ।

ଘ) କଥାବସ୍ତୁ କଥା ସାହିତ୍ୟରେ ମୁଖ୍ୟ । ତେବେ କହି ଜାଣିଲେ ଯାଇ କଥା ସୁନ୍ଦର । ତେଣୁ କଥାବସ୍ତୁକୁ ଗୁରୁତ୍ୱ ଦେଲେବି ଶିଳ୍ପରୀତିକୁ ଅବହେଳା କରେଁ ନାହିଁ । ଅଧିକାଂଶ ସମୟରେ କିନ୍ତୁ ମୁଁ କାହାଣୀର ପୂର୍ବ ନକ୍ସା ତିଆରି ନକରି ନିଜ ପକେଇ ଦିଏଁ ଗୋଟିଏ ବାକ୍ୟରେ ।

ତାପରେ କାହାଣୀ ଗଢ଼ିଗଲେ । କାହାଣୀକୁ ଜାଣି କହିବା ଢ଼ଂଗ ଆପେ ଆପେ ବାହାରି ପଡ଼େ । ୧୯୮୪ ମସିହା ଜୁନ ମାସରୁ ୧୯୮୬ ମସିହା ମଧ୍ୟଭାଗ ପର୍ଯ୍ୟନ୍ତ ପ୍ରାୟ ପ୍ରତିଦିନ ଗୋଟିଏ କାହାଣୀ କହୁଥିଲି । ଏପରିକି ପରୀକ୍ଷାମୂଳକ ଭାବରେ ଗୋଟିଏ ଉପନ୍ୟାସ ପଢ଼ି ଶୁଣେଇ ଦେଲି । କେବେ ହେଲେ କଥାବସ୍ତୁଠାରୁ ଶିଳ୍ପରୀତିକୁ ଭିନ୍ନକରି ଚିନ୍ତା କରି ନାହିଁ । କାହାଣୀର ବାଗକୁ ନେଇ କହିବା ଢ଼ଂଗ ସଜାଡ଼ି ଦେଇଛି ।

ଙ) ଗତ ଶହେ ବର୍ଷ ଭିତରେ ପୃଥିବୀ ଆହୁରି ଛୋଟ ହୋଇ ଯାଇଛି । ଛାପାଖାନା ପରେ ଇଲେକ୍‌ଟ୍ରୋନିକ ମିଡ଼ିଆ ମଣିଷର ଚିନ୍ତା ଓ ଚେତନାକୁ ଏପରି ଭାବରେ ପ୍ରଭାବିତ ଓ ନିୟନ୍ତ୍ରିତ କରିବା ଆରମ୍ଭ କରି ଦେଇଛି ଯେ ପୃଥିବୀ ଘଡ଼ି ଘଡ଼ିକେ ଆନ, ଚିନ୍ତାଧାରାବି ବଦଳି ବଦଳି ଯାଉଛି । ସମୟଗତ ପ୍ରାଣ-ସ୍ପନ୍ଦନ ସଫଳ ସ୍ରଷ୍ଟାର ସୃଷ୍ଟିରେ ରହିବ ହିଁ ରହିବ । ଉଦାହରଣ ସ୍ୱରୂପ ମୋ ଉପନ୍ୟାସ 'ଲୁବୁରୁ' । ହୀରାକୁଦ ବନ୍ଧ ନିର୍ମାଣ କାଳର ଉଦ୍‌ବାସ୍ତୁ କେତୋଟି ଚରିତ୍ରର ପ୍ରାଣ–ସ୍ପନ୍ଦନରେ ସ୍ପନ୍ଦିତ ।

ଚ) ଉପନ୍ୟାସ ହେଉ କି ଗଳ୍ପ, ନାଟକ, କବିତା ହେଉ, ଗୋଟିଏ ଦୁଇଟା ଲେଖିଦେଇ ଅମର ହୋଇଯିବା ପ୍ରତିଭାଙ୍କ ସଂଖ୍ୟା ଅତି ବିରଳ । ତେଣୁ ମୋର ମନେହୁଏ ଅଧ୍ୟବସାୟ ବିନା କେବଳ ପ୍ରତିଭା ବଳରେ କେହି ସଫଳ ଔପନ୍ୟାସିକ ହେବା କଠିନ କଥା । ବିଗତ ଗ୍ରିଶି ପାଞ୍ଚ ବର୍ଷ ମଧ୍ୟରେ ପ୍ରାୟ ହଜାରେ ଗଳ୍ପ କହିଛି ମୁଁ । କିନ୍ତୁ ଉପନ୍ୟାସ ଲେଖିଛି ମାତ୍ର ଗ୍ରଚୋଟି । 'ଲୁବୁରୁ' ପ୍ରକାଶିତ ହୋଇ ସାରିଛି ଓ 'ରାଜାଠାରୁ କଟୁଆଳ ପର୍ଯ୍ୟନ୍ତ' ଏବଂ 'ବୀରବର ଉପାଖ୍ୟାନମ୍' ପ୍ରେସରେ ଅଛି । ଏଥିରୁ ମୋର ଉପନ୍ୟାସ ଲେଖିବାର ଯେଉଁ ଅଧ୍ୟବସାୟ କଥା କହିଥିଲି ଅନୁମାନ କରି ପାରୁଥିବେ । ପାହାଡ ଉପରୁ ପଥର ପରି ଗଡ଼େଇ ଦେଇ ହେବ ନାହିଁ । ବରଂ ଉପତ୍ୟକାରୁ ପାହାଡ଼ ଟିପି ପର୍ଯ୍ୟନ୍ତ ଠେଲି ପେଲି ନେବାକୁ ପଡ଼ିଥାଏ କହିଲେ ଅଧିକ ଯୁକ୍ତି ଯୁକ୍ତ ମୋ ମତରେ ।

ଛ) ମୋର ଉପନ୍ୟାସ ଗୁଡ଼ିକ ବିଶେଷ ଭାବରେ ଆଲୋଚିତ ହୋଇନାହିଁ କହିଲେ ଚଳେ । ତେବେ ଅନେକ ସମାଲୋଚନା ଭିତରେ ଗୋଟିଏ ହେଲା ମୁଁ କୁଆଡ଼େ ଆଞ୍ଚଳିକ (ସମ୍ବଲପୁରୀ) ଶବ୍ଦର ବହୁଳ ପ୍ରୟୋଗ କରୁଛି । ଜାଣେନା କେତେଦୂର ଠିକ୍ । ତେବେ ଆଲୋଚନା ପ୍ରସଙ୍ଗରେ ଯେଉଁ ଆଲୋଚନା ସମାଲୋଚନା ହୁଏ, ତାକୁ ମୁଁ ଘରକୁ ଆସି ନୋଟ କରି ରଖେଁ, ଭବିଷ୍ୟତର ପଥ ପ୍ରଦର୍ଶନ ପାଇଁ । କାରଣ ମୁହଁ ଖୋଲି ସ୍ୱୀକାର ନ କଲେ ବି ମନେ ମନେ ଅନେକ ତ୍ରୁଟି ଆମେ ସ୍ୱୀକାର କରିଥାଉଁ । ତେଣୁ ଭବିଷ୍ୟତ ପାଇଁ ସଚେତନ ରହିବା ଶ୍ରେୟ ।

ଜ) ମୋର ଶେଷ କଥା କହିବା ପାଇଁ ଆବଶ୍ୟକ ଅନୁଭୂତି ଓ ଅଭିଜ୍ଞତା ମୁଁ ହାସଲ କରି ପାରିନାହିଁ ଏଯାଏଁ । □

## ଚରିତ୍ରସ୍ଥତା : ଆତ୍ମନିମଜ୍ଜନ

ଅନେକ ସମୟରେ ପ୍ରଶ୍ନ ଉଠେ, ଲେଖକ ତା' ଚିତ୍ରିତ ବା ପରିସ୍ଥିତି ଭିତରେ ମଜ୍ଜି ରହିବ ନା ସେ ସବୁଠୁ ଅଲଗା ରହିବ ? ମୋର ବକ୍ତବ୍ୟ ହେଲା, ଏପରି ଏକ ପର୍ଯ୍ୟାୟ ଅଛି ଯାହାର ଅନ୍ତର୍ଭୁକ୍ତ ଏ ଉଭୟ ଅବସ୍ଥା । ଲେଖକ ନିଜ ଗଳ୍ପରେ ଏଭଳି ନିମଜ୍ଜିତ ହେବ ଯେ ସେ ତା'ର ସମସ୍ତ ଚରିତ୍ର ଓ ପରିସ୍ଥିତିକୁ ପୂର୍ଣ୍ଣତଃ ଅନୁଭବ କରୁଥିବ । ଏହା ଏପରି ଆତ୍ମମୁଖିତା, ଯାହାକି ତାକୁ ପ୍ରକୃତରେ ଆତ୍ମ-ନିରପେକ୍ଷ ହିଁ କରିବ । ଜଣେ ସୃଜନଶୀଳ ଲେଖକର ଆତ୍ମ-ନିରପେକ୍ଷତା ବୈଜ୍ଞାନିକର ବା ଜଣେ ବୀତସ୍ପୃହ ପଥିକର ବା ସାକ୍ଷୀର ଆତ୍ମ-ନିରପେକ୍ଷତା ନୁହେଁ ।

□ ମନୋଜ ଦାସ

ସାକ୍ଷାତକାର : ହିତବାଦ

ଓଡ଼ିଆ ଉପନ୍ୟାସର ସମୃଦ୍ଧି ଖୋଜିବାକୁ ଯାଇ ଆମେ ସାକ୍ଷାତ କରିଥିଲୁଁ କେତେଜଣ ଔପନ୍ୟାସିକଙ୍କୁ । ଉପନ୍ୟାସର ସୃଜନକର୍ମ ଏବଂ କଥା ଓ କଳ୍ପନାର ଅପୂର୍ବ ଆନୁପାତିକତାରେ ଗଢ଼ା ହୋଇଥିବା କାହାଣୀ, ଚରିତ୍ର— ଏ ସମସ୍ତର ଉତ୍ସ ସନ୍ଧାନପାଇଁ ଏହାଥିଲା ଏକ ପାଠକୀୟ ପ୍ରୟାସ । ବେଳେବେଳେ ଏହା ମନେ ହେଉ-ଥିଲା ଲେଖକର୍‌ମାନସଲୋକକୁ ଅବାଞ୍ଛିତ ଅନୁପ୍ରବେଶ । ଅଥଚ ଅନୁଉରିତ ସମସ୍ୟାସବୁ ଛାଡି ଭିତରେ ଧରି ରଖିବା ପାଇଁ ଆମେ ଅସମର୍ଥ ଥିଲୁଁ ।

ଆମେ ବିଚଳିତ କରିଛୁଁ ସେହିମାନଙ୍କୁ, ଯେଉଁମାନେ ଆମକୁ ବିଚଳିତ କରିଥିଲେ ତାଙ୍କ ସୃଷ୍ଟ ଜଗତ ଭିତରେ ସମୟ ବିତେଇବା ବେଳେ । ସେମାନେ ଭେଟିଥିବା ଚରିତ୍ରମାନଙ୍କୁ ଆମେ ପୁଣି ଭେଟୁ ଥିବୁ, ଭିନ୍ନ ସମୟରେ, ଭିନ୍ନ ଜଗତରେ । ତାଙ୍କ ଭିତରେ ଘଟିଥିବା ସେହି ପ୍ରଥମ ସାକ୍ଷାତର ସ୍ମୃତି ଆମ ପାଇଁ କେତେ ମୂଲ୍ୟ-ବାନ ନହେବ, ଉଭୟଙ୍କୁ ବୁଝିବା ପାଇଁ !



# ଏ ଚିଠି ଗୋପନୀୟ

ଦାସେ ଆପଣେ !

ଯା' ଭିତରେ ଅନେକ ଅଞ୍ଚଳ ଭ୍ରମି ଭ୍ରମି ଭୁବନେଶ୍ୱରରେ ଆସି ପହଞ୍ଚି-ଲିଣି । ଚଉଳବନ ସତ୍ୟନଗରରେ ବସି ଏ ଚିଠି ଛଳରେ ଆପଣଙ୍କ ସାଙ୍ଗେ ଟିକିଏ ରଞ୍ଜଘସ ହେବା ପାଇଁ ମନ ହେଲା । ଅଶରୀରୀ ସନ୍ତୁଷ୍ଟ ଆତ୍ମାଟିଏ ପରି ଆପଣ ସବୁବେଳେ ପାଖେପାଖେ ରହିଛନ୍ତି । ପହଁରୁଛନ୍ତି ଶୂନ୍ୟରେ । 'ଯନ୍ତାରୂଢ଼' ଲେଖା ହେବାର ଆଜକୁ ବାରବର୍ଷ ହୋଇଗଲା । ଆପଣ ସେଇ-ଭଳି ରୁଦ୍ରାକ୍ଷ ମାଳଟିଏ ବେକରେ ପକେଇ ହାତଧୁଆ ଦୋସତା ଖଣ୍ଡିଏ ଘୋଡେଇ ହୋଇ ଠିଆ ରହିଛନ୍ତି । ସେମିତି ବୋଧହୁଏ ଠିଆ ରହିଥିବେ ମୁଁ ଥିବାଯାଏଁ— ହୁଏତ ମୋର ଅନେକ କାଳପରେ ମଧ୍ୟ ।

ମୋ ବେଳାରେ ମୁଁ ଖସି ଗ୍ଲଲିଯିବି । କିନ୍ତୁ ଆପଣ ତା ଇଚ୍ଛାରେ ଅମର । ମୋ ଭିତରେ ଖୋଜି ଖୋଜି ଯେଉଁ ଟିକକ ଅମୃତ ସେ ପାଇଲା; ସେଇଥିରେ ସେ ଗଢିଦେଲା ଆପଣଙ୍କୁ । ଆପଣ ଚିରଞ୍ଜୀବୀ । ଆପଣ ଏଣିକି ପ୍ରତ୍ୟେକ ପାଠକପାଇଁ ନୂଆଁ ରୂପ, ନୂଆ ପରିବେଶରେ ସେଇ ଘଟଣା ଗୁଡ଼ିକୁ ପୁନର୍ଜୀବିତ କରି ଗ୍ଲଲି ଥିବେ !— ନିଜେ ପୁନର୍ଜୀବିତ ହୋଇ ଗ୍ଲଲିଥିବେ । କିନ୍ତୁ କେହି କ'ଣ କେବେ ବାରିପଦାର ସେହି ତିନିଛକି ଉପରେ ଜୁବୁଲି ଲାଇବ୍ରେରୀ ସାମ୍ନା ବିପିନ ମହାନ୍ତିର ଘରି ବଖୁରିଆ ଭଡାଘରେ ଆପଣଙ୍କୁ ଦେଖି ପାରିବ ? ଆପଣ ମୋ ସାଙ୍ଗରେ ସେ ବିଷୟରେ ଚୁକ୍ତିବଦ୍ଧ । ଆଉ କାହାରି କଳ୍ପନାକୁ ଅବିକଳ ସେହି ପରିବେଶରେ ଅନୁପ୍ରବେଶ କରିବାର ଅଧିକାର ନାହିଁ । ସେଇଟା କେବଳ ମାତ୍ର ମୋର ସ୍ୱତନ୍ତ୍ର ଅଧିକାର । ଆପଣଙ୍କୁ ସର୍ବ ପ୍ରଥମ ଦେଖିବାର ଅଧିକାର ।

□ ଚନ୍ଦ୍ର ଶେଖର ରଥ

## "ସାଧାରଣ ମଣିଷର ଦୁଃଖ-ସୁଖକୁ ନେଇ ମୁଁ ଉପନ୍ୟାସ ଲେଖିଛି"

କଟକର ଏକ କ୍ଳାନ୍ତ ଅପରାହ୍ଣ । ଔପନ୍ୟାସିକ କାଳିନ୍ଦୀ ଚରଣଙ୍କୁ ଭେଟିବା ପାଇଁ ଆମେ ପିଠାପୁରରେ 'ସ୍ୱପ୍ନପୁରୀ' ଖୋଜୁଥିଲୁଁ । "କ୍ଷେତରେ ପଡ଼ିବନାହିଁ ହିଡ, ଘରରେ ଉଠିବ ନାହିଁ କାନ୍ଥ" କହିଥିବା ଔପନ୍ୟାସିକ ଏବେ କେମିତି ବିତାଉଥିବେ ଏ ସମୟ, ଯେତେବେଳେ ପ୍ରତିଟି ମଣିଷ ଛାତି ଭିତରେ ଅନେକ ହିଡ, ଯେ ଯାହାର ଚଉକାନ୍ଥରେ ବନ୍ଦୀ । ଶେଷରେ ତାଙ୍କୁ ଭେଟିଲୁଁ । ମୁହଁରେ ଅପରାହ୍ଣ ଜୀବନର ଉଦାସଭାବ । ମନେ ହେଉଥିଲା ଏହା ବୋଧହୁଏ ପ୍ରଶାନ୍ତି । ଏତିକିବେଳେ କିଛି ପଚାରିବା କି ଧୃଷ୍ଟତା ହୋଇ ନଥାନ୍ତା ? ତଥାପି ଆମେ ତାଙ୍କୁ ପଚାରିଲୁଁ । ଅସ୍ପଷ୍ଟ ସ୍ମୃତି ଭିତରୁ ସେ ଆମ ପାଇଁ ଟୋକିଦେଲେ କେତୋଟି ମହାର୍ଘ ଉଚ୍ଚାରଣ ।

☐

● ଆପଣଙ୍କ ତିନୋଟି ଉପନ୍ୟାସରେ ଆମେ ମଣିଷ ଶବ୍ଦର ପୁନରାବୃତ୍ତି ପାଉଁ— 'ମାଟିର ମଣିଷ', 'ଲୁହାର ମଣିଷ', 'ଆଜିର ମଣିଷ' । କହିବେ କି, ଏହା ପଛରେ କଣ ନିର୍ଦ୍ଦିଷ୍ଟ କାରଣ ରହିଛି ?

● ମଣିଷକୁ ମୁଁ ଭଲପାଏଁ । ସାଧାରଣ ମଣିଷର ଦୁଃଖ ସୁଖକୁ ନେଇ ମୁଁ ଉପନ୍ୟାସ ଲେଖିଛି । ଏଣୁ ଉପନ୍ୟାସର ନାମକରଣ ବେଳେ ମଣିଷ ଶବ୍ଦ ସ୍ୱତଃ ଆସିଯାଇଛି ବୋଧହୁଏ । ମାଟିର ମଣିଷ ଲେଖିଲାବେଳେ ଭାରତ ପରାଧୀନ ଥିଲା । ମଣିଷର ସେ ଦୟନୀୟ ପରିସ୍ଥିତି ଆଜି ଆଉ ନାହିଁ । ବଦଳି ଯାଇଛି । କିନ୍ତୁ ଯାହା ହେବାର କଥା ଏ ପର୍ଯ୍ୟନ୍ତ ତାହା ହୋଇ ପାରିଲା ନାହିଁ । ଗ୍ରାମାଞ୍ଚଳରେ ଲୋକେ କେମିତି ସୁଖରେ ରହିବେ, ତାହା ହେବା ପାଇଁ ମନେହୁଏ ସମୟ ଲାଗିବ । ଏ ପର୍ଯ୍ୟନ୍ତ ସ୍ୱାଧୀନଦେଶ ଯାହା ହେବାର କଥା, ଯାହା ସେ ସମୟରେ ଗାନ୍ଧିଜୀ ସ୍ୱପ୍ନ ଦେଖୁଥିଲେ ସ୍ୱାଧୀନ ଭାରତରେ ତାହା ଆମେ ପାଇଲେ ନାହିଁ—

● ସେତେବେଳେ ଆପଣ କଣ ଭାବୁଥିଲେ ? ଏ ପରିସ୍ଥିତି ବଦଳି ଯିବ ? ଭାରତ ସ୍ୱାଧୀନ ହେବ ?

● ମୁଁ ଭାବୁଥିଲି ଭାରତ ନିଶ୍ଚୟ ସ୍ୱାଧୀନ ହେବ । ସ୍ୱାଧୀନ ହେଲେ ଏ ପରିସ୍ଥିତି ବଦଳିଯିବ, ଏ ଆତ୍ମବିଶ୍ୱାସ ମୋର ଥିଲା । ଭାରତ ପୂର୍ଣ୍ଣ ସ୍ୱାଧୀନ ହେବ, ଏ ଘଟଣାଟା କେତେ ଶୀଘ୍ର ଘଟିବ, ଏଇଟାର ଅପେକ୍ଷା ଥିଲା ।

● ଏ ବୟସରେ ଆପଣଙ୍କର ଶେଷ ଇଚ୍ଛା କଣ ?

● ଶେଷ ଇଚ୍ଛା ଆଉ କଣ ? ସ୍ୱାଧୀନ ଏଇ ଦେଶ, ଭାରତବର୍ଷ; ଏହା ପୃଥିବୀର ଏକ ଶ୍ରେଷ୍ଠ ଦେଶ ହେଉ । □

ନିରୁପାୟ ଉପନ୍ୟାସ

'ମାଟିର ମଣିଷ' ରଚିତ ହୁଏ ଗୋଟିଏ ସତ୍ୟ ଘଟଣା ଉପରେ- ସ୍ୱୟଂ ବଡ଼ ଭାଇ ମୁହଁରୁ ହିଁ ଲେଖକ ଶୁଣେ ତାର ନିଜ ଘର କାହାଣୀ । ପୁଣି ଲେଖକର ନିଜ ଗାଁରେ ମଧ୍ୟ ଆଉ ଜଣେ ବଡ-ଭାଇଙ୍କ ଠାରୁ ତାଙ୍କ ସାନଭାଇ ଭିନ୍ନ ହେବ– ଅବିକଳ ପ୍ରାୟ ସେଇ-ଭଳି ପରିସ୍ଥିତି ।

କିନ୍ତୁ 'ମାଟିର ମଣିଷ' ପ୍ରକାଶିତ ହେବା ପରେ ମଧ୍ୟ ଶତ ସହସ୍ର ଘର ଭିନ୍ନ ହେଲଣି, ଓଡ଼ିଶାରେ କିମ୍ବା ସାରା ଭାରତରେ । ଶେଷରେ ପୁଣି କେତେ ଦେଶ ମଧ୍ୟ ଭିନ୍ନ ହୋଇ ପଡ଼ିଲେ ଦ୍ୱିତୀୟ ମହାଯୁଦ୍ଧ ପରେ– ଜର୍ମାନୀ, କୋରିଆ, ଭିଏତ୍‌ନାମ ଓ ଭାରତରେ ଘୃଣ୍ୟ ପାକିସ୍ଥାନ । ସେଥିଲାଗି ଆଜି ତାହା ଭାରତର ସବୁଭାଷାରେ ପୁଣି ଇଂରାଜୀରେ ମଧ୍ୟ ଅନୁଦିତ ଓ ପ୍ରଚାରିତ ହୁଏ ବୋଧହୁଏ । କାରଣ ମଣିଷ ସବୁବେଳେ ଧର୍ମକୁ ନ ଛୁଡ଼ିଲେ ପର ଧର୍ମର କଟକଣା ରହନ୍ତା ନାହିଁ ।

□ କାଳିନ୍ଦୀ ଚରଣ ପାଣିଗ୍ରାହୀ
ସାହିତ୍ୟ ହିଁ ଜୀବନ୍ତ ଇତିହାସ, ନବପତ୍ର– ୧୯୭୪

"ଜୀବନରେ ଯାହା ଦେଖିଛି,
ତାକୁହିଁ ଉପନ୍ୟାସରେ ଲେଖିଛି ।"

☐

ମଧ୍ୟାହ୍ନରେ ଆମେ ପହଞ୍ଚିଲୁ ବେଳେ ତାଙ୍କୁ 'ସତ୍ୟବତୀ' ପଢ଼ି ଶୁଣାଉ ଥିଲେ ତାଙ୍କର ବୋହୂ । ନିଜର ସୃଷ୍ଟ ଜଗତରେ ସେ ବିତାଉଥିଲେ କେତୋଟି ମନ୍ମୟ ମୁହୂର୍ତ୍ତ । ଆମେ କରାଘାତ କଲୁଁ । ସେ ମଧ୍ୟାହ୍ନର କଥୋପକଥନରୁ କେତୋଟି ବିଶେଷ ଉକ୍ତି : ଯେଉଁଠି ସ୍ମୃତି, ସ୍ୱପ୍ନ ଓ ସାହିତ୍ୟିକ ସାର୍ଥକତାର ରୋମନ୍ଥନ କରିଛନ୍ତି କାହ୍ନୁଚରଣ ।

☐

● ସୋନପୁର ପଟ୍ଟଭୂମିକୁ ନେଇ ଆପଣ କିଛି ଉପନ୍ୟାସ ଲେଖିନାହାନ୍ତି ?

● ସୋନପୁରକୁ ନେଇ କବିତା ଲେଖିଛି । 'ପରିକ୍ରମା'ରେ ସୋନପୁର ସମ୍ପର୍କରେ ମୋର ବାଲ୍ୟସ୍ମୃତି ଲେଖିଛି । ସେଇଠି ମୋର ଲେଖା ଆରମ୍ଭ । ବାପା ସେ ସମୟରେ ସେଇଠି ଥିଲେ ସୋନପୁରର ଓଭରସିଅର । ୧୯୧୮ ସାଲରେ ସୋନପୁରରୁ ଡଙ୍ଗାରେ କଟକ ଆସିଥିଲୁଁ । ସାତକୋଶିଆ ଗଣ୍ଡର ଦୃଶ୍ୟଦେଖି ଆତ୍ମହରା ହୋଇଥିଲି । ସେଇ ସ୍ମୃତି 'ତଥାସ୍ତୁ'ରେ ରହିଛି । ସୋନପୁରର କିଛି କିଛି ବାଲ୍ୟସ୍ମୃତି ବି ।

☐

● 'ତୁଣ୍ଡ ବାଇଦ' ଏବେ ସିନେମା ହେଲା । ଆପଣ ଦେଖିଥିବେ ? ଆପଣଙ୍କୁ କେମିତି ଲାଗିଲା ?

● ଦେଖିଲି । ଭଲ ହୋଇଛି ।

● ସେମାନେ କଣ ପରିବର୍ତ୍ତନ କରିଛନ୍ତି ନା ଠିକ୍ ସେମିତି ଅଛି, ଯେମିତି ଆପଣ ଚରିତ୍ରମାନଙ୍କୁ କଳ୍ପନା କରିଥିଲେ ?

● ଠିକ୍ ସେମିତି ଅଛି । ସେମାନେ ଆଉ ଖଣ୍ଡିଏ ବହି କରିବେ– 'ଶାସ୍ତି' ।

● 'ହା ଅନ୍ନ' ଆଉ 'ଶାନ୍ତି' ମିଶେଇକି କରିବେ, ନା କେବଳ 'ଶାନ୍ତି'କୁ ସିନେମା କରିବେ ?

● କେବଳ 'ଶାନ୍ତି' କୁ । 'ହା ଅନ୍ନ'କୁ ସିନେମା କରିବା ଭରି କଷ୍ଟ ହେବ । ସେଇ ପରିବେଶ ଏବେ କୋଉଠି ମିଳିବ ? ଓଡ଼ିଶାରେ ସେମିତି ଦୁର୍ଭିକ୍ଷ ଆଉ ନ ପଡୁ, ସେଇ ପରିସ୍ଥିତି ଓଡ଼ିଶାରେ ଆଉ ନ ଘଟୁ ।

● ଆପଣଙ୍କର ଆଉ କେଉଁ ସାହିତ୍ୟିକ ଇଚ୍ଛା ଅପୂର୍ଣ୍ଣ ରହିଗଲା କି ?

● ଅପୂର୍ଣ୍ଣ ଆଉ କଣ ? ମୋର ତ ଶେଷ ବହି ହେଉଛି "ମେଲାଣି ମାଗୁଣି" । ମେଲାଣି ମାଗି ନେଇଛି ସାହିତ୍ୟରୁ । ଆଖି ପାଇଁ ଲେଖିବା ଆଉ ସମ୍ଭବ ହେଲା ନାହିଁ । ଗୋଟେ ଉପନ୍ୟାସ ଲେଖୁଥିଲି । ଦୁଇତିନି ପୃଷ୍ଠା ଲେଖିଛି । ଆଉ ଲେଖି ପାରୁନି ।

☐

ସେଇ ନାଁ ନଥିବା ଉପନ୍ୟାସର ଏତିକି ମାତ୍ର, ଶବ୍ଦ ଓ ଅର୍ଥର ବନ୍ଧନରେ ଧରା ଦେଇ ଥିଲା; ଅନ୍ୟ ସମସ୍ତ ଲୁଚି ରହିଥିଲା ଔପନ୍ୟାସିକଙ୍କ ମାନସଲୋକରେ । ତାକୁ ପ୍ରକାଶ କରିବା ପାଇଁ ଆମେ ଆଗ୍ରହ ପ୍ରକାଶ କଲୁଁ । ସେ ଅକୁଣ୍ଠିତ ଭବରେ ସ୍ୱୀକୃତି ପ୍ରଦାନ କରିଥିଲେ– ଯାହାର ଆରମ୍ଭ ଥିଲା ଏପରି :

ତୀର୍ଥବ୍ରତ କରିବାକୁ ସେବତୀ ଏ ବର୍ଷ ପୁଣି ତାର ଧରମଭଇ ଗଜନ୍ ସାଙ୍ଗରେ ଗଲା । ଦଶଦିନ ପୂରିଲା । ତଥାପି ସେମାନେ ବାହୁଡ଼ିଲେ ନାଇଁ । ଭଇଉଉଣୀ ଏମିତି ତୀର୍ଥବ୍ରତ କରିଯିବା ନୂଆଁ କଥା ନୁହେଁ । ଗଜେନ୍ଦ୍ର ବା ଗଜନ୍ ସାଙ୍ଗେ ତୀର୍ଥବ୍ରତ କରିଯିବା କିଛି ନୂଆଁ କଥା ନୁହେଁ, କେତେଥର ସେମାନେ ଯାଇଛନ୍ତି । ପାଞ୍ଚ ସାତ ଦିନ ରହି ଠାକୁରମାନଙ୍କୁ ଦର୍ଶନ କରି ପାପ ଯଦି କିଛି ଏ ମଧ୍ୟରେ ହୋଇଥାଏ ତାକୁ ଦେହରୁ ଓ ମନରୁ ଛଡାଇ ନିଷ୍କଳଙ୍କ ହୋଇ ଫେରନ୍ତି । ଅନ୍ୟମାନଙ୍କର ପାପଖଣ୍ଡନ କରିବାକୁ ଠାକୁର-ମାନଙ୍କର ପାଦୁକ ଓ ଧଣ୍ଡା ଓ ସୁବିଧା ହେଲେ ସୁଯୋଗ ମିଳିଲେ ପ୍ରସାଦ ବି ଆଣିଥାନ୍ତି, ବଣ୍ଟନ କରନ୍ତି । ପାଇବାର କଥାତ ଅଧିକରୁ ଅଧିକ । ନ ହେଲେ

ଖାଇବାର କଥା ନୁହେଁ । ଗଜନ ପ୍ରସାଦ ଇତ୍ୟାଦି ଦିଏ । ଠାକୁରମାନଙ୍କ ପ୍ରସାଦ ପାଇବାକୁ ଓ ନେବାକୁ ନାସ୍ତିକଲେ ନରକ ଯୋଗ । ମହାମାନବ ଜାତିର ଜନକ ମହାତ୍ମାଗାନ୍ଧୀ ବଡସାନ ଜାତିଭେଦ, ଛୁଆଁ ଅଛୁଆଁ ଭେଦଭବ ତ କେବେଠାରୁ ଉଠାଇ ଦେଇଥିଲେ । ତେବେ ଆଉ କାହିଁକି ? ଧନ୍ୟ କହିବ ଗଜେନ୍ଦ୍ର ଓ ସେବତୀକୁ ସେମାନେ ପ୍ରସାଦ ଓ ପାଦୁକ ବଣ୍ଟନ କରନ୍ତି ସାହିରେ । ସେବତୀର ଏପରି ଢଙ୍ଗ ଦେଖି ତାର ଗୋବର ଗୋଡ଼ିଆ ଶାଶୁ ମନେ ମନେ ରକ୍ତ ଗୁଉଳ ଗ୍ରେବାନ୍ତି । କିନ୍ତୁ ନିଜ ଇଜ ନିଜକୁ ଖାଏ ତ ! ଗ୍ରେର ମାଁ ଲୁଚି ଲୁଚି କାନ୍ଦିଲ ପରି ନିଜ ଲଜରେ ନିଜେ ଦହି ହୋଇ ଲୁଚି ଲୁଚି କାନ୍ଦନ୍ତି । ଦେଢଣା ତଳେ, ଆହା କି ହେଲରେ, କାନ ନ ଶୁଣିଲ କଥା ଅଙ୍ଗେ ନିଭଇଲ, ଏ ଘଟଣା ଘଟିଲ ଏ କୁଟୁମ୍ବରେ । ଜହର ଢୋକି ପଛେ ମରିବା, ନିନ୍ଦା ନ ରଖିବା । ହଉ ହଉ, ଖାଲି ଘର ପୂରଣ ହେଉ । କୁକୁର ଛୁଆ, ବିଲେଇ ଛୁଆ ଠାରୁ ମଣିଷ ଛୁଆ କଣ ଅଧିକ ସେରନ୍ତା ନୁହେଁ କି ? ପୁଣି ଗଜନ୍‌ର ମନ ଅନ୍ତତଃ ବୋଧ ହେବ ଯେ ସେ ବାପ ହୋଇଛି । କୁଳ ରକ୍ଷା ହୋଇଛି । ସେଇ କୁଳ ରକ୍ଷା କରିବାକୁତ ଦିଅରଙ୍କ ଡରରେ ଆସିକା ପାଖ ନଇକୂଳର ଚନ୍ଦ୍ରିକା ଗ୍ରାମ ଛାଡ଼ି ଗ୍ରରି ବର୍ଷର ପୁଅକୁ ସାଙ୍ଗରେ ଧରି ପ୍ରାଣବିକଳରେ ଗ୍ରଲି ଆସିଲ ଥାଖି ଯୁଆଡ଼େ ପାଉଛି ତେଣିକି । ଭିକ ମାଗି ପଛେ ବଞ୍ଚିବ, ପିଲଟିକୁ ନିଶ୍ଚୟ ବଞ୍ଚାଇବ ।

[ 'କଥା କଣ କି ଏ ଗୁଡାକ ସତ୍ୟ ଘଟଣାକୁ ନେଇ ଲେଖିଛି । ଆପଣ ଯେତେବେଳେ ଷ୍ଟୀଟ୍‌ରେ ପଶିଲେ, ମୋ ଘର ଆଡକୁ ଆସିବା ବେଳକୁ, ସେଇ ପାଖର ଏକ ଘରକୁ ନେଇ ଏ ଉପନ୍ୟାସ' ।— ଔପନ୍ୟାସିକ ଆମକୁ ମଝିରେ ସତର୍କ କରିଦେଲେ ।]

ବ୍ରାହ୍ମଣ ଘର ବିଧବାଟିଏ ସେ । ତିନୋଟି ପିଲ । ତହିଁରୁ ଦିଓଟି ଝିଅ । ଗୋଟିଏ ପୁଅ । କିନ୍ତୁ ଗୋଟିଏ ପରେ ଗୋଟିଏ ଯମପୁରକୁ ଗଲେ । କେଉଁ ପାତିଆର ଥିଲ ଯେ ଏଇ ଧଡ଼ିଆ ଧେଡଙ୍ଗ ମେଁ ମେଁ କା ପୁଅଟା ଗଜନ ବଂଚି ରହିବ । ବଂଚି ରହିଲ । କିନ୍ତୁ କେଉଁ ଡାହାଣୀ ଡାକୁଣୀ ପିଲକୁ ଦୁଇ

ପୂରି ତିନି ଗ୍ରଲୁଥିବା ଅବସ୍ଥାରେ ପିଲର କଅଁଳ ଜୀବନ ଶୋଷି ନେଉଛି । ଯେତେ ପୂଜା ପାଠ ଶୁଣୁ ନାହିଁ । ମନ୍ତ୍ର ଯନ୍ତ୍ର ମାନୁନାହିଁ । ପିଲର ହାତ ଛୁଆଁଇଁ ଯେତେ ଦାନ ଦେଲେ ବି କିଛି ଫଳ ହେଲ ନାହିଁ । ସମସ୍ତେ ଗଲେ । କେଉଁ ପିଗ୍ରଣୁଣୀ ଚାଙ୍କର ଗେରସ୍ତକୁ ନେଇ । ଆଉ କି ଏ ଡ଼ିହ, ଏ ଗ୍ରାମରେ ରହି ଯୋଗାଏ । ହାତରେ ପଇସା ଥିଲେ, ମନରେ ସାହସ ଥିଲେ ଯୋଉଠି ହେଲେ ଅଣ୍ଣା ମିଳିବ । ଆଶ୍ରା ମିଳିଲ ମୁଣ୍ଡ ଗୁଞ୍ଜିବାକୁ । ସ୍ଥାନ ଚେଜିଲେ, ଅଳସ ଚେଜିଲେ ପେଟକୁ ମୁଠାଏ, ଦେହକୁ ଖଣ୍ଡିଏ ଅବଶ୍ୟ ମିଳିବ । କାହାର ଦୟାର ପାତ୍ର ହେବାକୁ ପଡ଼ିବ ନାହିଁ । ଜମି ଦୁଇମାଣ ଗ୍ରଷ କରୁଥିବା ସପନା ଗଉତ ଜାତିରେ କାଳିଞ୍ଜି । ସୁନାପୁର ଗ୍ରାମରେ ତାର ଘର । ପିଲଟି ଦିନରୁ ସେ ରହିଛି । ସେ ହିଁ ରତନିର ଗ୍ରଷ ଜମି ଭଗ ଧରେ ଓ ଡ଼ିହକୁ ଆବର କରେ । ଡିହ ଉପରେ ଗ୍ରରେଟି ନଡ଼ିଆ ଗଛ ଓ ଗୋଟିଏ ବାଳା ଆମ୍ବଗଛ । ନଡ଼ିଆ ଗଛର ମଥା ଆକାଶ ଛୁଇଁଲଣି । ବାଳା ଆମ୍ବଗଛ ବି ଅଧା ନଡ଼ିଆ ଗଛ ଉଚ୍ଚ ହେଲଣି । ନଇ କୂଳିଆ ତୋଫାନିଆଁ ପବନରେ ପ୍ରତିବର୍ଷ ଡାଳ ଭଙ୍ଗୁଛି ତେଣେ ନଡ଼ିଆଗଛର ବାହୁଙ୍ଗା ଖସୁଛି, ନଡ଼ିଆ ଝଡୁଛି । ଦେଖୁଛି କିଏ, ଯିଏ ପାଇଲ ତା'ର ।



● ଗୋଦର ଗୋଡ଼ିଆ ମାଇକିନାଟେ ଗ୍ରଲି ଆସିଲ ଦକ୍ଷିଣ ଦେଶରୁ । ସାଙ୍ଗରେ ତାର ପୁଅଟିଏ । ଦିଅରମାନଙ୍କ ସହ ତାର ପଡ଼ିଲନି । ଗଞ୍ଜାମର କେଉଁ ଏକ ଗାଁରୁ ଗ୍ରଲିଆସି ରହିଲ ଏଇଠି । ସେ ପିଲଟି ଏବେ କଣ୍ଡକ୍ଟର ହୋଇଛି । ଭଲରେ ଅଛି । ତାକୁ ନେଇ ଏ ଉପନ୍ୟାସ ।

● ଆପଣଙ୍କ ଉପନ୍ୟାସରେ ତାହେଲେ ପିଲଟିକୁ ଆପଣ ତାହାହିଁ କରିଥାନ୍ତେ ?

● ନିଶ୍ଚୟ । ମୋର ଅଧିକାଂଶ ଉପନ୍ୟାସରେ ମୁଁ ତାହାହିଁ କରିଛି । ଯାହା ସତ୍ୟ, ଜୀବନାରେ ଯାହା ଦେଖୁଛି, ତାକୁ ହିଁ ଉପନ୍ୟାସରେ ଲେଖୁଛି ।

● ବହୁତ ଆଗରୁ ଆମର ପହଞ୍ଚିବାର ଥିଲ । ଏବେ ବୟସର ବୋଝରେ ଧୀରେ

ଧୀରେ ମଉନହୋଇ ଯାଉଛନ୍ତି ପ୍ରଗଳଭ୍ କାହ୍ନୁଚରଣ । ଗୋଟି ଧୂମ୍ରାଭି ଜଗତ ଆଡକୁ ଅପସରି ଯାଉଛି ଏକଦା ବଞ୍ଚିଥିବା ତୀବ୍ର ଅନୁଭବର ଅତୀତ । ଏଣିକି କାହ୍ନୁଚରଣଙ୍କୁ ଖୋଜିବାପାଇଁ ଆମ ପାଖରେ କେବଳ ତାଙ୍କ ସୃଷ୍ଟ ଜଗତ, ତାଙ୍କ ଗଳ୍ପ ଉପନ୍ୟାସ ସବୁ । ଗୋଟିଏ ଅପରାଧବୋଧ ଆମକୁ ଘାରୁଥିଲା । କାହ୍ନୁଚରଣଙ୍କ ୮୨ ତମ ଜନ୍ମ ଦିବସ ଉପଲକ୍ଷ୍ୟେ ଅନୁଜ ଗୋପୀନାଥ ମହାନ୍ତି ଦେଇଥିବା ବହୁ ସ୍ମୃତିଭରା ଏକ ଚିଠି ଏ'ଠି ଆମେ ଉପସ୍ଥାପନ କରୁଛୁଁ, ଏକ ପ୍ରାୟଶ୍ଚିତର ପ୍ରୟାସରେ ।



ରାଣୀ ଘର କ୍ୟାଣ୍ଟନ୍, ଓହାୟୋ
ପ୍ରଦେଶ, ମାର୍କିନ୍ ଦେଶ
୧୪।୮।୮୭

ପରମ ପୂଜନୀୟ ଭାଇ,

ମୋର ଓ ରାଣୀର ଭୂମିଷ୍ଠ ପ୍ରଣାମ ଜାଣିବେ । ପିଲାମାନଙ୍କୁ, ବୋହୂକୁ, ଜ୍ୱାଇଁ ତିନିଙ୍କୁ, ନାତି ନାତୁଣୀଙ୍କୁ ଆମର ଶୁଭାଶୀର୍ବାଦ, ସମ୍ବନ୍ଧୀମାନଙ୍କୁ ଦଣ୍ଡବତ । ଆଶା ସମସ୍ତେ ଭଲ ଥିବେ ଓ ବୁବୁଲି କାନପୁରରେ ଭଲ ପଢୁଥିବ ।

ଆସନ୍ତା ପହରି ଦିନ ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ । ଆମେରିକାର ପ୍ରାଚୀନ ମାୟା ଆଦିବାସୀଙ୍କ ପ୍ରାଚୀନ ପାଂଜି ଅନୁସାରେ ସେ ଦିନ ସକାଳ ଆଠଟାରେ ଏ ପୃଥିବୀରେ ଲୋକଂକ ଚିତ୍ତରେ ସ୍ନେହ ମୈତ୍ରୀ, ଶାନ୍ତି, ସୁନୀତି ସଦାଚାରକାମୀ ଚେତନା ଖେଳିବା ଆରମ୍ଭ ହେବ ଓ ୨୦୧୨ ଖ୍ରୀ: ଅ: ରେ ସାରା ପୃଥିବୀରେ ମଣିଷ ଚରିତ୍ର ବଦଳି ଯାଇଥିବ । ଯୁଦ୍ଧ, ଅଶାନ୍ତି, ଅତ୍ୟାଚାର, ଅନୀତି ଲୋପ ହୋଇଥିବ । ସେ ଦିନ ଏଠୁ ମୁଁ ଓ ରାଣୀ ଅଳି ପାଖକୁ କାଲିଫର୍ଣିଆ ଫେରିବୁ ।

ଓ ସେଦିନ ଆପଣଙ୍କ ଶୁଭ ଜନ୍ମ ଦିନ । ଭଗବାନଂକୁ ଜଣାଉଛି ସେ ଆପଣଙ୍କୁ ଆହୁରି ଚାଳିଶ ବର୍ଷ ଯାକେ ସୁସ୍ଥ, ସବଳ, ନିରୋଗ, ନିଶ୍ଚିତ, ପ୍ରଫୁଲ୍ଲ,

ସକ୍ରିୟ, ସର୍ଜନଶୀଳ ରଖିଥାନ୍ତୁ । ଆପଣଙ୍କ ଉପସ୍ଥିତି ଓ ସାଧନା ଓଡ଼ିଆ ସାହିତ୍ୟିକମାନଂକୁ ପ୍ରେରଣା ଯୋଗାଉଥାଉ, ସଦ୍‌ବିଗ୍ଭର, ସଦ୍‌ବୁଦ୍ଧି ଦେଉଥାଉ, ଆପଣଙ୍କ ହାତରୁ ପ୍ରତିବର୍ଷ ଅନ୍ତତଃ ଖଣ୍ଡେ ଲେଖାଏଁ ନୂଆ ଉପନ୍ୟାସ ବାହାରୁଥାଉ, ଆପଣ ଆହୁରି ଯଶଶ୍ରୀ ପାଉଥାନ୍ତୁ, ଭଗବାନ କରନ୍ତୁ ଆପଣଙ୍କ ସବୁ ପ୍ରକାର ଅସ୍ୱସ୍ଥି ଦୂର ହେଉ ।

ଓଡ଼ିଆ ସାହିତ୍ୟରେ ଆପଣଙ୍କ ଆବିର୍ଭାବ ଅବିସ୍ମରଣୀୟ ଐତିହାସିକ ଘଟଣା । ତା' ପୂର୍ବରୁ ଓ ଓଡ଼ିଆ ଉପନ୍ୟାସର ଆରମ୍ଭ ଦିନଠାରୁ କାଁ ଭାଁ ହୋଇ ହାତ ଆଂଗୁଠିରେ ଗଣି ହେଲ ଭଳି କେତୋଟି ଉପନ୍ୟାସ ଥିଲ, ଅଧିକାଂଶ ଖାଲି ବଡ ଗପ ନାଁକୁ ଉପନ୍ୟାସ । ବଡ଼ ଭାଗକ କଳ୍ପନାର ଧୂଆଁ । ଓଡ଼ିଶାର ସାଧାରଣ ମଣିଷଂକ ନୀରବ ଜୀବନ କ୍ରିୟାର ବିଭିନ୍ନ ସମସ୍ୟା, ଦୀର୍ଘଶ୍ୱାସ ଆଉ ଲୁହ, ହସ ଆଉ ଆଶାର ବାଲି ଦେଉଳ ସେ ଉପନ୍ୟାସରେ ପଡ଼ି ନଥିଲ । ଆପଣଂକ ଉପନ୍ୟାସ ବାଟେ ଗରୀବ ଓଡ଼ିଆର ପାଟି ଫିଟିଲ । ସେ ଡାକି କହିଲ, "ଦେଖ ମୋତେ ମୁଁ ଓଡ଼ିଆ । ମୋ ବିଶିଷ୍ଟତାରେ ମୁଁ ସ୍ୱତନ୍ତ୍ର । ମୁଁ କାହା ମନ ଗଢା ଖିଆଲ ନୁହେଁ, 'Ism' ନୁହେଁ । ମୋ ଦୁଃଖେ ସୁଖେ ମୁଁ ମର୍ଯ୍ୟାଦାବନ୍ତ, ଚିହ୍ନ ମୋତେ, ମୋ ଦେଶକୁ ମୋ ସମାଜକୁ ।" ଗୋଟିଏ ସ୍ୱଚ୍ଛ, ସ୍ୱତନ୍ତ୍ର, ସ୍ୱାଧୀନ ଆଭିମୁଖ୍ୟ ନେଇ ଆପଣ ଉପନ୍ୟାସ ଲେଖି ବସିଲେ – "ଭଷାରେ, ବିନ୍ୟାସରେ ବିଷୟ ବସ୍ତୁରେ, ଆକାରରେ ମୋ ବହି ଏଭଳି ହେବ ଯେପରି ପ୍ରତ୍ୟେକ ସାଧାରଣ– ଓଡ଼ିଆ ପଢା ଓଡ଼ିଆ ଲେକ ତାକୁ ପଢିବ, ବୁଝିବ, ଖୁସି ପାଇବ, ଆପଣାର କରି ଆଦରି ନେବ ।" ହେଲ ବି ସେଇଆ ।

ଆପଣଙ୍କ ବହି ଓଡ଼ିଶାର ଘରେ ଘରେ, କିଏ ନ ପଢିଛି ? କିଏ ନ ଖୋଜେ ?

କାଲିଫର୍ଣିଆର ପୃଥିବୀ ପ୍ରସିଦ୍ଧ ବର୍କଲେ ୟୁନିଭର୍ସିଟି ଲଇବ୍ରେରୀରେ, ସାନ୍ତାକ୍ରୁଜ ଲଇବ୍ରେରୀରେ ଦେଖି ଆସିଲି ଆପଣଂକର ସବୁ ଉପନ୍ୟାସ ଅଛି । ସେମିତି ଅନ୍ୟତ୍ର ଥିବ, ହାର୍‌ଭର୍ଡ୍‌ରେ, ସିକାଗୋରେ, ୟେଲ୍‌ରେ, ପ୍ରିନ୍‌ସ୍‌ଟନ୍‌ରେ କେତେ–ଏ–ଠିଁ ।

ଆପଣଙ୍କ ଶୁଭ ଜନ୍ମ ତିଥି ଉପଲକ୍ଷ୍ୟରେ– ପଛକୁ ଗ୍ରହୁଁଛି ।

ମତେ ସେତେବେଳେ ୪।୫ ବର୍ଷ, ଆପଣ ଓ ଧଳ ଭଇ ବାପାଙ୍କ ସଙ୍ଗେ ନାଗବାଲି ଆସିଲେ । ଆପଣଙ୍କୁ ଏଗାର ବାର ବର୍ଷ, ଇଂଗଳା ହୋଇ ଆପଣ ତେଲ ଲଗାଉଥାନ୍ତି, ମୁଁ "ବାବ୍ ବାବ୍" କଲି, ବୋଉ ତଡ଼ି ଦେଲ, କହିଲ "ଭକ୍ ଭକ୍" । ବୋଉ ଡାକ ପକାଏ 'ମୋ ଧୂଳରେ, ମୋ କାହ୍ନାରେ' । ସମସ୍ତେ ଡାକନ୍ତି 'କନ୍ଢେଇ'– କେଡେ ସୁନ୍ଦର ସୁଆଦିଆ ନାଁ ସେ । ବାପା କହୁଥାନ୍ତି, "କନ୍ଢେଇ ହେବ କବି (ହେଲେ ତ, ଔପନ୍ୟାସିକ ବି କବି, ସଂସ୍କୃତ ସାହିତ୍ୟ ସୂତ୍ର ଅନୁଯାୟୀ ଉପନ୍ୟାସ ଗଦ୍ୟ-କାବ୍ୟ), ଡାକ୍ତର ହେବ । ଆପଣ କଣ ସବୁ ଗଳ୍ପ ଲେଖୁଥାନ୍ତି ଖାତାଟିରେ, ତହିଁରେ ଚିତ୍ର କରିଥାନ୍ତି, ନାନା ଫଳ, ପତ୍ର, ଫୁଲର ରଂଗ ରଂଗ ରସରେ ତାକୁ ରଂଗେଇ ଥାନ୍ତି ।

ତା' ପରବର୍ତ୍ତୀ ସମୟ, ଭଇ ମତେ ନେଇଗଲେ ପାଟନା, ୧୯୧୯, ସେତେ-ବେଳକାର ଦିନ । ଦିନର ଘଟଣା, ଆପଣଙ୍କର, ଧଳଭଇଙ୍କର ଗୋଡ଼ିଆଗୋଡ଼ି, ମାଡ଼ ମରମରି, ବେଶି ମାଡ ଖାନ୍ତି ଧୂଳ ଭଇ, alway in the receiving end, ଆଉ ମୁଁ ହୋଇଥାଏଁ ଆପଣଙ୍କ ହାତରେ କଂଚ୍ଚ କୁମ୍ଭାର ମାଟି ମୁଣ୍ଡା । ଆପଣଙ୍କ ଆପ୍ରାଣଚେଷ୍ଟା ମତେ ପାଠ, ବିଶେଷ କରି ଇଂରେଜୀ ଭଷା ଶିଖେଇବାକୁ, ଯେମିତି ଲେକେ ଦେଖିବେ ମୁଁ ଗୋଟାଏ prodigy,- ମୁଁ ଘୋଷୁଥାଏ, ପ୍ରତିଦିନ task ଦେଇ ଇସ୍କୁଲକୁ ଯିବେ, ଫେରିଲ ମାତ୍ରେ "କିରେ ଗୋପ, ହେଇଚି ?" ସଂଗେ ସଂଗେ ପରୀକ୍ଷା । ଭୁଲ ହେଲେ ମାଡ, କେବେ କେବେ ପାଇଖାନା ଘରେ ବନ୍ଦ କରି ବାହାରୁ କିଳିଣି ଲଗା,- (ସେଇ ପାଇଖାନା, ତାର ଉଚ ପାହାଚ, ଭଇ ବୋଧହୁଏ ତାହାରି ମଡେଲ୍‌ରେ ଡଗର ପଡ଼ାରେ ତାଙ୍କ ପାଇଖାନା ତୋଳିଲେ !) ସେଇ ପାଇଖାନା, ଜହ୍ନ ରାତିରେ ଯେଉଁଠିକି କଦଳୀ ଗଛ ହଲିଲ ଛାଇ ଦେଖି ମୁଁ ଗ୍ରେର ଗ୍ରେର ରଡ଼ିଲି ଓ ଆପଣ, ଧୂଳ ଭଇ ଓ ମୁଁ ତିନିହେଁ ଦୁଆରେ ଧରା ଧରି ହୋଇ ଡେଇଁ ଡେଇଁ "ଗ୍ରେ ଗ୍ରେ" ରଡୁଥିଲୁ, ଭଇ ନିଦ ମଳମଳ ହୋଇ ଉଠି ଆମ ମୁଣ୍ଡ ଥାପୁଡେଇ ଶାନ୍ତ କଲେ, ବାରି ଦୁଆର ମେଲ କରିଦେଲେ, ଦାଣ୍ଡବାଟେ ପୁଲିସ୍ ପହରା-

ବାଲ ଦିଲଶଙ୍କୁ ଡାକି ଆଣି ଦେଖାଇ ଦିଆଗଲା, ସେଇ ବାଟେ ଗ୍ରେର ପଳେ-ଇଛି ସିଦ୍ଧାନ୍ତ କରି ଦୁଇ ମୋଟା ମୋଟା ନିଶୁଆ ନିଶୁଆ ପହରବାଲା ମନ୍ତବ୍ୟ ଶୁଣାଇଲେ "ଶଶୁର ଗ୍ରେର୍ ଭଗ୍ ଗଲୌ"

Longman's English Readers ର Primer ଓ Book I ସେଇଠି ମତେ ଦିଆଇଥିଲେ ଆପଣ, ଇଂରେଜି ଜ୍ଞାନ ପୁଣି ମୋ ମୂଳଦୁଆ ଦୃଢ଼ କରି କାଢିଥିଲେ, ଓଡ଼ିଆ ବି ପିଆଇଥିଲେ, ମତେ expert କରି ପଦାକୁ ନେଇ ନାନା ସ୍ଥାନରେ ମତେ ପ୍ରଶ୍ନ ପଚରାଇ demonstrate କରିଥିଲେ ମୁଁ ଏକ prodigy !

ଓଃ ! କି ମାଡ ! ଭଉକୋଡ ପିଠିରେ ପଡୁଥିଲା । ଅତି desperate ହୋଇ କବାଟ ଉହାଡ଼ରେ ଠିଆ ହୋଇ ମୁଁ ସାନ ପାଟିରେ କହୁଥିଲି "ଧୂଳିଆ ମନ୍ତ୍ର କହେଇ ମନ୍ତ୍ର ।" ଜାଣି ପାରିଲେ ଆହୁରି ମାଡ । ମନେ ପଡୁଛି ତହୁଁ ବଳି କାଟୁଥିଲା ଯେତେବେଳେ ଆପଣ ଅଡ଼ି ବସୁଥିଲେ "ଭାଇ ଭଉଜାଉ ଗାଳି ଦେଉଛନ୍ତି ତ, ଆଉ ଦିନେ ଗୋପିଆକୁ ପଢେଇବି ନାହିଁ । ଯା, ଚୁଲିକି ଯା, ଆଉ ଦିନେ ନାହିଁ ।"

"ପଢେଇବେ ନାହିଁ । ତା ହେଲେ ମୋର କି ଅବସ୍ଥା ହେବ !" ଭବି ଭବି ମୁଁ ହାଲିଆ, ମନ ମରି ଯାଏ ।

ତାପରେ ମୁଁ ଗାଁକୁ ଆସିଲି । ଆପଣ ଦିହେଁ ସେଠିକି ଫେରିଲେ ୧୯୨୨ରେ; ମୁଁ ବୋଉ ପାଖରୁ ବିଶି ରାମାୟଣର ସବୁ ଛାନ୍ଦ ଗାଇ ଶିଖୁଥାଏଁ, ଗାଉଥାଏଁ, ବାପାଙ୍କ ନିର୍ଦ୍ଦେଶରେ ସଂସ୍କୃତ 'ଅମରକୋଷ'ରୁ କିଛି ଘୋଷିଥାଏଁ । ରାମ ଭାଇଙ୍କ ପ୍ରେରଣାରେ ଗାଁ ଲାଇବ୍ରେରୀ ବେନୁବାରି ବାଡକୁ ଲାଗି କୁମ୍ଭାର ଘର ଆଡକୁ ମୁହଁ କରି ବଖୁରିଆ ଘରୀରୁ ୰ ନୀଳକଣ୍ଠ, ୰ ଗୋପବନ୍ଧୁ ଆଦିଙ୍କ କିଛି ବହି ଘୋଷିଥାଏଁ, ଆପଣଙ୍କଠୁଁ ଶିଖି ଗାଉଥାଏଁ—

" ? ? ? ? ଭଂଜ କବି ଯହିଁ ଜନ୍ମିଥିଲେ

ଧନ୍ୟ ପୁଣ୍ୟ ଗଂଜାମ ।

ବନ୍ଧୁଠୁଁ ଶିଖୁଥାଏଁ        "ରଂଜିତ ଅସିଧାରେ
                                 ଶତ୍ରୁ ରକ୍ତ ଗାରେ"—

୧୯୨୧/୨୨ ରେ କଂଗ୍ରେସ ଆନ୍ଦୋଳନରେ ଆମ ଗାଁ ଉଠୁଥାଏ, ପଡୁଥାଏ, ଭିଣେଇ ୰ ମଦନ ଭଇ ବେକରେ ହାର୍ମୋନିଅମ୍ ଝୁଲେଇ ଜାତୀୟ ସଙ୍ଗୀତ ଗାଇ ଗାଇ ପିଠିରେ ପଡ଼ିଥିବା ଖଦଡ ବୋକସ୍ଥୁ ଖଦଡ ବିକୁଥାନ୍ତି, ଆପଣ ଦିହେଁ ବିଦ୍ରୋହୀ ପୁସ୍ତକମାନ ବିକୁଥାନ୍ତି, କଦମଦାଣ୍ଡରେ ବିଲତି ଲୁଗା ଗଦା ହୋଇ ଜଳୁଥାଏ ।

ଆପଣ ଦିହେଁ ପି. ଏମ୍ ଏକାଡ଼େମିରେ ପଢୁଥାନ୍ତି, ଗାଁରୁ ଯା ଆସ କରୁଥାନ୍ତି । ସେତେବେଳେ ବି ଆପଣ ଲେଖୁଥାନ୍ତି ଗଳ୍ପ ଉପନ୍ୟାସ ସ୍କୁଲ ଛାତ୍ର ଥିଲ ବେଳେ । କାହୁଁ କାହୁଁ ମନରୁ ଫାନ୍ଦି କହୁଥାନ୍ତି କାହାଣୀ, କଥା ବନେଇ ଚୁନେଇ ଲୟେଇ କହି 'ମନ ମୋହିବା' ("କବି, କବିତା ଚାତୁରୀରେ ମନ ମୋହନ୍ତି" ଇତି 'ରହସ୍ୟମଂଜରୀ' କାବ୍ୟରେ କବି ୰ ଦେବଦୁର୍ଲଭ ଦାସ) ଆପଣଙ୍କ ଉପନ୍ୟାସରେ ନିହିତ ଯେଉଁ ସହଜାତ ଉତ୍‌କଣ୍ଠା (suspense) ତାହା ଆପଣଙ୍କ କାହାଣୀ ପ୍ରସ୍ତାରେବି ଥିଲ, ତେଣୁ ସେତେବେଳେବି ଦେଖୁଛି, ଗାଁରେ ଆମ ଖଂଜାରେ, କି ମଇଧର ପଡ଼ା ବୁଲି ଗଲେ ଆପଣଙ୍କ ପଛରେ ପଂଝାଏ ଗୋଡାଇ ଥାନ୍ତି, "କାହାଣୀ କହ, କାହାଣୀ କହ ।"

ତାପରେ ଆପଣମାନେ ଦିଭଇ ସାମନ୍ତ ହଷ୍ଟେଲ୍‌ରେ ରହିଲେ ଗାଁରେ ବାପା ବୋଉଙ୍କ ପାଖେ ମୁଁ । ବାପା ଚାକିରୀ ଇସ୍ତଫା ଦେଇ ଆସିଥାନ୍ତି । ଘରେ ଉଚ୍ଚଟ ଅଭାବ । ଥରେ ଚାଉଳ ସରିଗଲ କିନ୍ତୁ ଜମିରେ ଆଳୁ ହୋଇ-ଥିଲ । ବାପା ଅର୍ଡର ଦେଲେ, "ଚାଉଳ ପରିବର୍ତ୍ତେ ଆଳୁ ଖାଇବା ।" ସେଇଆ ହେଲ, ଆମେ ଆଇରିଶ୍‌ମାନଂକଠୁଁ ଶିଖୁଥିଲୁଁ । ସେ ଥିଲ ବାପାଙ୍କ ଉଦ୍ଭାବନ । କଣ୍ଡିଆରେ ଆମର ବାଲି ବାଲିଆ ଜମି ଥିଲ ତହିଁରେ କୋଳଥ ହେଉଥିଲ । ଆମେ ଆଳୁ ସିଝା ସଙ୍ଗେ ମୁଖ୍ୟ ଖାଦ୍ୟ କଲୁଁ କୋଳଥ ଯାଉ, କୋଳଥ

ପଇତି । ମନେ ଅଛି ? ବାପା ସେ ବୟସରେ ବାଡ ବୁଜି (ନିଜ ହାତରେ ଝାଟି ହାଣି ଗଛ କାଟି ଗଛ ପୋଡ଼ି କାମୁଡା ଭିଡ଼ି) ବାରି କରି ପରିବା ଚାଷ କରିଥିଲେ, ଟାଙ୍ଗିଆଣି କାଠ ଫାଳ କରୁଥିଲେ (ଥରେ କାଠ ଛେଲାଏ ଛିଟିକି ଆସି କପାଳରେ ବାଜିଲା ଯେ ଧାର ଧାର ରକ୍ତ ବୋହିଲା, ବୋଉ କନାପୋଡ଼ି ଅଙ୍ଗାର ମାଡ଼ିଲା ।) ସେ ସ୍ୱାବଲମ୍ବୀ ହେବାକୁ ଚେଷ୍ଟା କରିଥିଲେ,— ମହାତ୍ମା-ଗାନ୍ଧୀ କହିବା ଆଗରୁ ।

ତାପରେ ଦିନେ । ସବୁ ଦିନ ପରି ମୁଁ ମୋ ଇତର ଜାତିର ସାଂଗ ପିଲାଂକ ସଂଗେ ଖେଳୁଥିଲି କଦମ ଦାଣ୍ଡରେ, ଦେହ ଧୂଳି ସର ସର, ଆପଣ ଆସି ମୋ ମୁଣ୍ଡବାଳ ଓ କାନକୁ ଧରି ବିଲେଇ ତା' ଛୁଆକୁ ବୋହି ନେଲା ପରି ମତେ ବୋହି ନେଇ ବାପାଙ୍କ ଆଗରେ କଚି ଦେଇ କହିଲେ "ଏଇଟାର ଆଉ ପାଠକୁ ମନ ଯାଉନାହିଁ, ଯାହା ଶିଖିଥିଲା ପୋଡ଼ି ଖାଇଲାଣି" । ବାପା କହିଲେ "ସେଇଟାକୁ ମାରନା ।" ମତେ ବୁଝେଇ ଲାଗିଲେ ଯେ ମୁଁ ତ ପଢିଲି ନାହିଁ, ଭବିଷ୍ୟତରେ ମୁଁ ହଳ କରିବି, ମୋ ଭାଇ ଦିହେଁ ଅଫିସର୍ ହେବେ, ବଡ ଲୋକ ହେବେ, ମୁଁ ହଳକୁ ଫେରି ବଳଦ ବାଂଧି ଦେଇ ଗାଧୋଇ ଆସି ଖାଇ-ବାକୁ ମାଗିଲେ ଭାଉଜମାନେ ମୁହଁ ମୋଡ଼ି କହିବେ, "ହଳିଆ ଅଇଲା ।"

ସେଇଟା ୧୯୨୨ ସାଲ । ଖରା ଦିନ, ମୋ ମୁଣ୍ଡରେ ଛଳ ପଶିଗଲା । ଦି ପହରେ ଘରୁ ପଳେଇଲି ବନ୍ଧେ ବନ୍ଧେ, କାହାକୁ ନକହି । ବାଟ ପଚାରି ପଚାରି କଟକ ପହଞ୍ଚି ସାମନ୍ତ ହଷ୍ଟେଲ ଘରରେ ଆପଣ ଦିହିଙ୍କି ଭେଟି ଭୋ ଭୋ କାନ୍ଦିଲି, କହିଲି "ମୁଁ ଇସ୍କୁଲ୍‌ରେ ପଢିବି ।" ମତେ ଆପଣ ଦିହେଁ ବୁଝେ-ଇଲେ, ପେଡା ଖୁଆଇଲେ, ଦିନେ ନେଇ ପି.ଏମ୍ ଏକାଡେମୀ କ୍ଲାସମାନ ବୁଲେଇଲେ, ଗୋଟାଏ କ୍ଲାସ୍‌ରେ ବସେଇଲେ,ତାପରେ ଘରେ ଛାଡ଼ି ଦେଇ ଆସିଲେ । ମୁଁ ପାଠ ପଢିବାକୁ ଘରୁ ପଳେଇଲି ଜାଣି ବାପାଙ୍କୁ ଖୁବ୍ ବାଧିଲା । ସେ ପୁଣି ଚାକିରି ଖୋଜିଲେ, ବାହାରିଲେ, ମତେ ସଂଗରେ ଘେନି ଗଲେ ଦର୍ପଣି, ସେଠୁ ଫେରି ସୋନପୁର ଗଲେ । ମୋରି ପାଇଁ ବାପା ଦୁର୍ବଳ ସ୍ୱାସ୍ଥ୍ୟରେ ୫୯ ବର୍ଷ ବୟସରେ ଚାକିରି କରିବାକୁ ଓ ମରିବାକୁ ଚାଲିଗଲେ ।

୧୯୨୬ ଜୁନ୍—ଆମେ ସବୁ ପାଟ୍‌ନା ଆସିଲୁଁ । ଆପଣ ଧୂନିକୁ କାନ୍ଧରେ ପକେଇ ଥାନ୍ତି, ସେ ଖାଲି ଆପଣଙ୍କ ପିଠିଯାକ ଛେଚୁଥାଏ । ଆପଣ ନିର୍ବିକାର । ପୁଣି ଆରମ୍ଭ କଲେ ମତେ ପାଠ ପଢେଇବା । ଅନ୍ତଦିନ । ଇଞ୍ଜିନିଅରିଂ ପଢିଲେ । ପ୍ରାୟ ବର୍ଷେ ପଢି ଛାଡ଼ି ଦେଇ ଫେରିଲେ, ସେଇ ଅପରାହ୍ନ ମୋର ମନେ ଅଛି, ଦୁଆରେ ପଶି ବୋଉକୁ ଦେଖି କାନ୍ଦି ପକେଇ କହିଲେ "ବୋଉ ମୁଁ ପଇସା ଅଭାବରୁ ଇଞ୍ଜିନିଅରିଂ ପଢା ଛାଡ଼ି ଦେଇ ଚାଲି ଆସିଲି । ସେ ଝର ଝର କାନ୍ଦି- କେଂପା ମୁହଁ କରି ହାଉଳି ହେଲା ।" ଆହା ମୋ ଦଇବରେ । ଆଜି ତୋ ବାପା ବଞ୍ଚିଥିଲେ ତୁ ଏତେ ସରି ହୋଇ ନଥାନ୍ତୁରେ ମୋ କନ୍ଧ !"

ଆପଣ ଚାଲିଗଲେ କଟକ ୧୯୨୬ ରେ । ଆମର 'ପିତୃ ସମ୍ବତ୍ସର' ।

ପୁଣି ଦେଖା ୧୯......... ରେ, ମ୍ୟାଟ୍ରିକ୍ ଦେଇ ମୁଁ କଟକ ଗଲି । ଷ୍ଟେସନ୍‌କୁ ଆପଣ ଆସିଥିଲେ । ବଡ ବଡ ସୋରିକିଆ ଗଛ ତଳେ ଦେବଦାରୁ ଗଛ ତଳେ, ନାଗ ଅଇରି ବଣ ବାଟେ ଧୂଳିଆ ନାଲି ମାଟିର ରାସ୍ତା ସ୍ଥାନେ ସ୍ଥାନେ ଦିକଡେ ଜଂଗଲ ଓ ବାଉଁଶ ବଣ ଭିତରେ ଘର, ମାଟି କାନ୍ଥ ଚାଳରେ, କେତେ ଭଂଗାକବର । ମଶା ଘାଉଁ ଘାଉଁ, ବାଦୁଡ଼ି ଚେଁ ଚେଁ, ପାତି ମାଙ୍କଡ ଖେଁ ଖେଁ ହତଶ୍ରୀବ କଟକ, ବାଟେ ଘାଟେ ଦିଶୁଥାନ୍ତି ଗୋଦରା, ଓଳିଆ ଝୁଲା, ପିହ୍ଳେଇ ପେଟା, ହାତ ଗୋଡ ସରୁ ସରୁ ଖାଲି ଧୂଅ ମଣିଷ ଗୁଡ଼ିକ । ଆପଣ ମତେ ନେଇଗଲେ ମଇଧରପଡା ବସା— ହସ ହସ ମଧୁ ଭଇ (୯ ମଧୁସୂଦନ ସାମନ୍ତରାୟ, ପଛେ କୁଷ୍ଠରୋଗୀ ହୋଇ ମଲେ) ପାଛୋଟିଲେ ।

କି ତେଜ କି ସାହସ କି ଆଶା କି ନିର୍ଭୀକତା ଆପଣଙ୍କଠାଁ ? କି ବଳିଷ୍ଠ ସକ୍ରିୟତା, ସବୁ ବିଷୟରେ ! ମୁଣ୍ଡରେ ମୁଣ୍ଡେ କୁଞ୍ଚୁ କୁଞ୍ଚିଆ ବାଳ । ଦମ୍ଭିଲା ମୁହଁ ପୂରିଲା ପୂରିଲା ନିଡରୁଆ ଫାଳ ଫାଳ ଆଖି । ବଳିଲା ବଳିଲା ହାତଗୋଡ, ଦମ୍ଭ ଦେହ, ଦଣ୍ଡ ବୈଠକ କରୁଥିଲେ । ଆଡ୍‌ଭେଞ୍ଚର୍ ପାଇଁ ବୁଲି ଯିବାକୁ ଆଗ । ଅତି ମାତ୍ରାରେ ସ୍ୱଦେଶ ପ୍ରେମୀ, ଉଗ୍ର ଇଂରେଜ୍ ବିରୋଧୀ, ସ୍ୱାଧୀନତାକାମୀ, ରଜା ଜମିଦାର ଧନୀ ଶାସକ ଅତ୍ୟାଚାରୀଙ୍କ ବିରୁଦ୍ଧରେ ଆପଣଙ୍କ ବିଚାର ଓ ସ୍ୱର,— ମତେ ଖୁବ୍ ଉଦ୍‌ବୁଦ୍ଧ କରୁଥିଲେ, ନଇ ବାଲି

ବକ୍ତୃତା ଦେବାକୁ ଯାଉଥିଲେ, ବିଶ୍ୱାସ ରଖୁଥିଲେ ଯେ ଇଂରେଜ ଯିବେ ଚାଲି, ଭାରତ ସ୍ୱାଧୀନ ହେବ, ତାପରେ ହେବ ସବୁ ଅତ୍ୟାଚାରୀଙ୍କ ବିଚାର ଓ ଦଣ୍ଡ । ସାମାଜିକ ନ୍ୟାୟ ପ୍ରତିଷ୍ଠିତ ହେବ, ଦରିଦ୍ର ଅବହେଳିତ ହୋଇ କେହି ରହିବେ ନାହିଁ । ଆପଣ ସେତେବେଳେ ତେଜୋମୟ ମୂର୍ତ୍ତି, ବେକ ଠିଆ କରି, ବାହା ଟାକି ଛକି ପକେଇ ଛାତି ଫୁଲେଇ ଗାରଡେଇ ଅନେଇଁ ଠିଆ ହ'ନ୍ତି । ଆପଣଙ୍କ ଭାବପ୍ରବଣ ନାକ ପୁଡ଼ା ଫୁଲି ଫୁଲି ଉଠେ । ଆଖିରେ ଥାଏ ନିଆଁ ଓ ସ୍ୱପ୍ନ । ଆପଣଙ୍କ ଭାଇ ବୋଲି ମୁଁ ଆପଣଙ୍କ ଯୋଗୁଁ ଗର୍ବ ଅନୁଭବ କରେଁ ।

ଆଉ ଆପଣଙ୍କଠିଁ ଥିଲା ଦୁଃଖୀ ଦରିଦ୍ର ଅତ୍ୟାଚାରିତ ପ୍ରତି ଗଭୀର ଆତ୍ମତ୍ୟାଗୀ ମମତା, ତାଙ୍କ ଦୁଃଖରେ ଆପଣ ଭାସି ଯାଉଥିଲେ । ପରିସ୍ଥିତି ପ୍ରତି ସଚେତନ ଯଥା ବିହିତ କର୍ତ୍ତବ୍ୟକାରୀ, ଅଥଚ ଆଦର୍ଶବାଦୀ, କୋମଳ, ସହୃଦୟ, ପର ପ୍ରତି ସହାନୁଭୂତିଶୀଳ, ସାହାଯ୍ୟକାରୀ, ଖାଲି ତୁଣ୍ଡ କଥାରେ ନୁହେଁ, କାର୍ଯ୍ୟରେ,- ମନରେ ନିଜ କଥାକୁ ପଛକରି ଦେଶ କଥା, ସମାଜ କଥା-

ସେହି ବ୍ୟକ୍ତିତ୍ୱ ଦେଦୀପ୍ୟମାନ ହେଉଥାଏ ଯାହାଙ୍କଠିଁ ସେ ଥିଲେ ଆପଣ– ମୋର ଭାଇ, ମୋର ଗଢ଼ାଳି, Mentor, ନିର୍ଭରଗୁରୁ, ଡ୍ୟାମ୍ କେଆର୍ ବେପରବାୟ ସାହସୀ ମଣିଷ ଓ ଯୁବା ଔପନ୍ୟାସିକ କାହ୍ନୁଚରଣ ମହାନ୍ତି । 'ବାଲିଗଳ୍ପ',......... 'ପଳାତକ', 'ନିଷ୍ପତ୍ତି', ପଛକୁ ପଛ 'ହା' ଅନ୍ନ' । ସୁଅ ମୁହଁ ଖୋଲି ଯାଇଥିଲା ପଡ଼ିଲା ଚହଳ । ଚହଳ ପଡ଼ିଛି ଏବେ ବି, ପ୍ରାୟ ଷାଠିଏ ବର୍ଷ ପୂରିବାକୁ ହେଲା, ଧାର ଚାଲିଛି; ପାଣି ଶୁଖି ନାହିଁ,– ଭଗବାନ କରନ୍ତୁ, ଚାଲିଥାଉ ।

ଅଗଷ୍ଟ ୧୫; ୧୯୮୭

କାଲି ଚିଠି ନ ସରୁଣୁ ଡାକବାଲା ଚାଲିଗଲା । ଆଜି ଅଗଷ୍ଟ ୧୫ ସକାଳ; ୧୯୪୭ ଅଗଷ୍ଟ ୧୫ ରାତି ୧୨ ଟାରୁ ଆରମ୍ଭ କରି ପ୍ରତି ବର୍ଷ ସେତେବେଳେ ଯେମିତି ଠାକୁରଙ୍କୁ ମୁଣ୍ଡିଆ ମାରେ; ଭାରତର ଓ ପୃଥିବୀର ଶୁଭ ମନାସେଁ; କାଲି ରାତି ୧୨ ଟାରେ ବି ସେହିପରି କଲି । ଏଠି ଆମ ଦେଶ ପତାକା ନାହିଁ;

ଯେଉଁଟି ଗତ ବର୍ଷ ବାବୁଲି ପଠେଇଥିଲା ସେ ଅଛି ଅଜି ଘରେ; କାଲିଫର୍ଣ୍ଣିଆ-ରେ । ଗତ ବର୍ଷ ତାକୁ ଉଡେଇ ଥିଲି । "ଜନଗଣ—" ଗାଇଥିଲୁଁ ; ଏ ବର୍ଷ ସେମାନେ ଯାଇଛନ୍ତି ଅନ୍ୟାନ୍ୟ ଓଡ଼ିଆ ବଂଧୁଙ୍କ ସଙ୍ଗେ 'Picnic' କରିବାକୁ । ସମୁଦ୍ର ଉପକୂଳର ଜଂଗଲକୁ । ଦେଖି ପାରୁଛି, ଆମ ଦେଶର ଯାହା କିଛି ବିଘଟନ ଦିଶୁଛି ସେ ସବୁ ଗୋଟିଏ ମହାନ ଶିଶୁର ବଢିଲା ବେଳର ଯନ୍ତ୍ରଣା—ସେମିତି ହୁଏ, growing pain, ଶିଶୁର ଚେହେରା ନିଶ ଗଜୁରିଲା ବେଳେ ବଦଳି ଯାଇଥିବ,—ଆର୍ଥିକ, ରାଜନୈତିକ, ସାଂସ୍କୃତିକ, ନୈତିକ, ସବୁ କ୍ଷେତ୍ରରେ, ଦେଶର ସେହି ପୂର୍ଣ୍ଣ ବିକାଶର ରୂପ ଦେଖିବାକୁ ଆମେ ଥିବୁଁ କି ନଥିବୁଁ ମୁଁ ଜାଣେ ନାହିଁ, ଥିଲେ ନଥିଲେ କିଛି ଯାଏ ଆସେ ନାହିଁ । 'ଜନସାଧାରଣ',—'ସାଧାରଣ ଖଟିଖିଆ ମଳିମୁଣ୍ଡିଆମାନେ',— ଭୂଇଁର ଘାସ, ସଡର ଗୋଡଦଳା, ଛେଳି ମେଣ୍ଢା ଯାହାକୁ ଖୁଣ୍ଟି କରି ନଷ୍ଟ କରନ୍ତି,— ସେମାନେ ଚେତୁଛନ୍ତି; 'ପୂର୍ଣ୍ଣଗ୍ରାସ' ଦେଖିଥିଲୁ ଗ୍ରହଣ ବେଳରେ, ସେତିକି ବେଳେ ଆମ ଜନ୍ମ' ବଂଚି ଥିଲେ ହୁଏତ ଦେଖିବା ଭରତ-ଜନ୍ମର ସର୍ବମୋକ୍ଷ ।

ହଁ, ଆପଣଂକ କଥା କହୁଥିଲି । ପି.ଡବ୍ଲ୍ୟୁ.ଡ଼ିର ମହାନଦୀ ଡ଼ିଭିଜନ୍ ଅଫିସ୍‌ରେ ଆକାଉଣ୍ଟସ୍ "କ୍ଲର୍କ,— ପଇସାଟିଏ କାହାକୁ ମାଗିବି ନାହିଁ, ଲୁଣ ଟିକିଏ ବି", "ପଇସାଟିଏ କାହାର ଧାରିବି ନାହିଁ, ମରି ସରି ସୁଝିବି କାବୁଲି ରଣ । "ହାତେ ହାତେ ସବୁ କରି ପାରିବି, କରିବି ଦରକାର ପଡ଼ିଲେ, ପାଇ-ଖାନା ସଫା, ନଳା ସଫା, ବାସନ ମଜା, ଲୁଗା ସଫା ଓ ଇସ୍ତ୍ରୀ, ଗେଷେଇ, ମାଛ ମାଂସ, Dressing ଓ ବନାବନି ଓ ରନ୍ଧା, ଖୋଲତଡା, ବଗିଚା ବାଡ଼ି, ଠକୁରୁ ଠାକୁରୁ ମରମତି ଯେତେ ପ୍ରକାରର, ସବୁ, ମୁଁ— ନିଜେ ସମ୍ପୂର୍ଣ୍ଣ ସ୍ୱାବ-ଲମ୍ବୀ, ମୋ ବିଶ୍ୱାସ ମୋ ନିର୍ଭର ମୋ ଦିହାତ ଦିଗୋଡ ଉପରେ, ସତ କହିବି, ସ୍ପଷ୍ଟ ସତ, ଠୋ ଠୋ, ମୁହେଁ ମୁହେଁ, ସତରେ ଚଳିବି, ନିଷ୍ପାପର ଭବେ ସଚ୍ଚୋଟ । ଦୁନିଆକୁ ଚିହ୍ନିଛି, ସବୁ ଛଟା ଗଳା ବହୁରୂପୀ ସ୍ୱାର୍ଥପର ଅଭିସଂଧି, ବ୍ୟବହାରରେ ଅଭିନୟ,— ଛୋଟ ଲୋକି ଦେଖି ହସିବି ନା କାନ୍ଦିବି ? ଘୃଣା ହୁଏ, କିନ୍ତୁ ତାକୁ ଠେଲି ମନ ଭିତରୁ ଉଠେ କରୁଣା, ଆହା ! ବିଚରା ! ସେ କଣ ନିଜେ ଦାୟୀ ନା ତାକୁ ତା ଅବସ୍ଥା ତା ପରିସ୍ଥିତି ସେପରି

କରୁଅଛି ! କେହି ଉଧାର ମାଗିଲେ ଯେତିକି ମୁଁ ଦିଏଁ ଏଇଆ ନିଷତ୍ତି କରି ଉଧାର ଦିଏଁ ଯେ ଯେ ଉଧାର ନୁହେଁ, ଦାନ, ଯେ ଆଉ ଫେରିବ ବୋଲି ମୁଁ ଭରସା ରଖେ ନାହିଁ । ସ୍ୱାର୍ଥପର, ସମସ୍ତେ ସ୍ୱାର୍ଥପର, କିନ୍ତୁ ଏଇମାନଂକୁ ନେଇ ତ ମୋର ସଂସାର, ମୁଁ ତାଙ୍କଠୁଁ ପଳାଇବି ନାହିଁ, ତାଙ୍କୁ ଘେନି ଚଳିବି, କିନ୍ତୁ ସବୁବେଳେ ସଚେତ ହୋଇ, ସତର୍କ ହୋଇ–"

ସେତେବେଳେ କେତେ କେତେ ବଡ ଲୋକଥିଲେ, ଦାର୍ମ୍ମିକ ପରାକ୍ରମୀ ଧନୀମାନେ, କ୍ଷମତାଶାଳୀ ଅଫିସରମାନେ, ସେମାନେ କଣ ସ୍ୱପ୍ନରେ ଭାବି-ଥିଲେ ଯେ ତାଙ୍କୁ ଦେଖୁଛି ଯୋଡ଼ିଏ ଉଜ୍ଜଳ ଆଖି, ଟିକି ନିଖି ତନ୍ନ ତନ୍ନ କରି ନିରେଖି ଅଣ୍ଡାଳି ଚୁପୁଡ଼ି ତଉଲି ପରଖି ପରଖି ଦେଖୁଛି ଆଖି ଯୋଡ଼ିଏ– 'କ୍ରାନ୍ତିଦର୍ଶୀ' ଗଦ୍ୟ– କବିର ଆଖି, ସେଇ ଆଖି ବାଟେ ଫଟୋ ନେଇ ଯାଇ ସାଇତି ରଖୁଛି !

ଯେମିତି ଏ ଶତାବ୍ଦୀର ଆରମ୍ଭରେ, ସମ୍ବଲପୁରରେ ଏସ୍.ଡ଼ି.ଓ., ମିସ-ଲ୍ରେ, ଉଚ୍ଚ ବେଦୀ ଉପରେ ଆସୀନ ବଂଗୀୟ ଏସ୍.ଡ଼ି.ଓ, ତଳେ ହଲ୍ ଚଟା-ଣରେ, ତଳେ ଥୁଆ ସାନ ଢାଲୁ ଡେକ୍ସ ଉପରେ ହାତ ରଖି ବସିଛି କ୍ଷୁଦ୍ର ମୂଷିକଟିଏ,– ସେ ଏସ୍.ଡ଼ି.ଓ ସାହେବଙ୍କ ଭର୍ଣ୍ଣାକୁଲର୍ ବେଞ୍ଚ କ୍ଲର୍କ–, ଜିକି ଜିକି ଆଖି ଜଳୁଛି ପଡ଼ି, ଝଙ୍କରେ ବିଲୁଆ ଗାତପରି ଅନ୍ଧାରୀ ଖପର୍ଲି ବଖୁରୀରେ ତା ବସାକୁ ଫେରି ଡ଼ିବି ଜାଳି ଖାତାଟିଏ ଖୋଲୁଛି, ଦାନ୍ତ ଚିପି ଚିପି ରାଗରେ ଫଁ ଫଁ ନିଶ୍ୱାସ ଛାଡ଼ି କାହା ଛାତିକି ବର୍ଚ୍ଛାରେ ଭିଣିଭିଣା କଲାପରି ଲେଖି ଯାଉଛି,

"ମନ ଯାର ରତ ସଦା ପରସ୍ୱ ହରଣେ  
ଧନ ଯାର ବିଦଳିତ ଗଣିକା ଚରଣେ  
ଜୀବନ ଯା ଲକ୍ଷ ଲକ୍ଷ ଲୋକଙ୍କର ଭାର  
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର ।"

(କବି ଗଂଗାଧର ମେହେର)

ନାନା ପଟ୍ଟ ନାନା ପ୍ରାଣୀରେ ନାନା ବାଗରେ ଦେଖିଥିବା ସେହି ଦୁନିଆର ମଣିଷମାନଂକୁ ଆପଣ ଲେଖାରେ ଆଂକିଲେ; ଆପଣଂକ ବିଶାଳ ଛବି ପରେ ଆଉ ଜାଗା ଅଛି କି ନାହିଁ ଜାଣେ ନାହିଁ ।

ଆଉ ଆପଣ ଗଢିଲେ ମତେ; ମୋର formative years ରେ, ଶିକ୍ଷା ଦେଇ, ଅନୁଶାସନ ଦେଇ, ମାଡ଼ ଦେଇ, ଗାଳି ଦେଇ, ସ୍ନେହ ସାନ୍ତ୍ୱନା ସହାନୁଭୂତି ଆଶା ସାହାଯ୍ୟ ଦେଇ, ମୋର କେମିତି ଉନ୍ନତି ହେବ ସେଇଆ ଭବି, ଘରେ ଦାବି ଡରେଇ ଆହୁରି ଆହୁରି କେମିତି efforts ଲଗେଇବି ସେଥିପାଇଁ ମତେ ଚିନ୍ତିତ କରେଇ; ବାହାରେ ମତେ ଉଚ୍ଛ୍ୱସିତ ପ୍ରଶଂସା କରି, ମୋର ଦୋଷ ଦୁର୍ବଳତା ଖଣ୍ଡି ଖଣ୍ଡି ଖୋଜି ଓ ତାକୁ ଉପଦେଶଦ୍ୱାରା ଛଡେଇ; ନିଜ କାର୍ଯ୍ୟ ନିଜ ଉଦାହରଣ ଦ୍ୱାରା ମତେ ଗଢିଲେ ଆପଣ, ମୁଁ ବୋଧହୁଏ ଆପଣଙ୍କର ପ୍ରଥମ କୃତି ଉପନ୍ୟାସଠୁଁ ବଳି ଓ ସେହିକଥା କହିଛି ମୁଁ 'ହରିଜନ' ଉପନ୍ୟାସ ଆରମ୍ଭରେ ଅଳ୍ପ କେତେଧାଡ଼ି Dedication ରେ, "ଯେ ମୋ ହାତରେ ଦେଲେ ଖଡ଼ି, ମୁହଁରେ ଦେଲେ ଭଷା........."

ଆମ ଦୁହିଁଙ୍କ ସଂପର୍କରେ କେତେ ଗୁଡ଼ିଏ ଆଶ୍ଚର୍ଯ୍ୟ ବୈଚିତ୍ର ବାରିହୁଏ । ଯଦି ଚ ଏକା ପଟଭୂମି ଆମର, ଭଷାର Source ଏକ, ଅଧିକାଂଶ ଅନୁଭୂତି Common ଓ ଆଭିମୁଖ୍ୟର ବହୁ ବାଟ, ତାପରେ ଦୁଇଟି ଧାର ଆଶ୍ଚର୍ଯ୍ୟ ଲଗେ– ଆମ ଭିତରେ ୮ ବର୍ଷର generation gap ଥାଇ ବି ଆମେ ଠିକ୍ ସମବୟସ କରି ଚଳୁଥିଲୁ ବା ତର୍କ କରୁଥିଲୁଁ, ସେ ତର୍କର କେବେ ସମାଧାନ ହୁଏ ନାହିଁ । We respectfully agreed to differ whenever the occasian arouse ଯଦିଚ we are completely unanimous in any respect.

ଓଠରେ ପୂର୍ବେ ଟାଣିଥିବା ଖଣ୍ଡିଏ ବିଡ଼ିର ଶେଷ ଅଧକ, ଛାତି ତଳେ ତକିଆଟିଏ, ତା ଦିମୁଣ୍ଡରେ ବଉଳ ଫୁଲ ଗୁଡ଼ିଏ (କେବେ କେବେ), ମଇଳା କି ସଫା ସପ ଉପରେ ପେଟେଇ ପଡ଼ି ଆପଣ, ହାତରେ କଲମ, ଆଗରେ

ନଲ୍‌ଟଣଟିଏ, ମଝିରେ ମଝିରେ ମଶା ହୁରୁଡେଇବାକୁ ଗାଲ ଉପରେ ବାହା ଉପରେ ଥାପଡ଼,– ଲେଖା ଗ୍ଭଲିଛି ।

ପହରିକିଆ ସଙ୍କୀର୍ତ୍ତନିଆ ପୋଖରୀ ହୁଡାବାଟେ ନାଚି ନାଚି ଗାଇ ଗାଇ ଗଲେଣି, ପହରିକିଆ ବିଲୁଆ ଭୁକି ସାରିବେଣି, ଘଡି ଦଶ, ଏଗାର, ବାର, ଲେଖା ଗ୍ଭଲିଛି, ଫୁଟି ଉଠୁଛନ୍ତି ଗୋଟିକି ଗୋଟି, ହା ଅନ୍ନ, ଦୁନିଆର ଦାଉ, ତୁଷ୍ଟ ବାଇଦ, ଶାସ୍ତି, ଗ୍ଭଲିଛି ଗ୍ଭଲିଛି ଗ୍ଭଲିଛି.........

"ଭଗ୍ନପୃଷ୍ଠ କଟୀଗ୍ରୀବା ତୁଲ୍ୟଦୃଷ୍ଟି ଅଧୋମୁଖଃ
ଯତ୍ନେନ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପରିପାଳୟେତ୍ ।"

ସେଇଆ ମତେ ଅନୁପ୍ରାଣିତ କରିଥିଲା, ଆଶା ଓ ସାହସ ଦେଉଥିଲା ଯେ ମୁଁ ବି ଲେଖକ ହେବି । ମୋର ଆଦ୍ୟ ଲେଖାକୁ ଆପଣ ଉତ୍ସାହିତ କରୁଥିଲେ । ମତେ ନେଇ ଯାଇଥିଲେ ସହକାରର ବାଳକୃଷ୍ଣ କରଙ୍କ ପାଖକୁ, ମୋ ଲେଖାଟି ତାଙ୍କୁ ଦେଇଥିଲେ, ବାୟାବକ, ମୋର ଅନେକ ଗପ ଛପା ହୋଇ ବାହାରିଲା ପରେ ଆପଣ ତହିଁରେ ନମ୍ବର ଦେଇଥିଲେ । 'ପରଜା' ବାହାରିଲା ବେଳେ ମୁଁ କୋରାପୁଟ ଜିଲ୍ଲାରେ । ଆପଣ ପଢ଼ି ଚିଠିଟିଏ ଲେଖିଥିଲେ କାର୍ଡରେ (ବହୁ ବର୍ଷ ସାଇତି ରଖିଥିଲି, ଶେଷରେ ଦିନେ ଉଇ ଲାଗି ତାକୁ ଓ ଅନ୍ୟାନ୍ୟ ବହୁତ ଚିଠିପତ୍ର କାଗଜ ଆଦି ଖାଇଦେଲେ)

ଏଇ ଗୋଟିଏ ଉପନ୍ୟାସ ମୋ ଦେଶର ମୁହଁ ଉଜ୍ଜଳ କରିବ, ଦେଶରେ ଚହଳ ପକାଇବ ।..........." ସେ ଥିଲା ୧୯୪୪ ! ଏବେ ୧୯୮୬ ଜୁନ୍‌ରେ ଦିଲ୍ଲୀର Oxford Unv. Press ପରଜାର ଇଂରେଜି ଅନୁବାଦ ବାହାର କରିଛନ୍ତି, ମୁଁ କରିଥିବା ଅନୁବାଦ ଉପରେ କାମ କରି Dr. ବିକ୍ରମ ଦାସ [ପାଟନାର ୬ ଗଜେନ୍ଦ୍ର ବାବୁ ଓକିଲଂକ ପୁଅ] ତାକୁ condense କରିଛନ୍ତି ଓ ସେ ଅନୁବାଦ କାମ ଭଲ ହୋଇଛି; ଭାରତରେ ଲମ୍ବା ଲମ୍ବା ରିଭ୍ୟୁ କେତୋଟି ବାହାରି ସାରିଛି; ଆମେରିକା ଓ ବିଲାତରେ ସେହି ଇଂରେଜି ଅନୁବାଦକୁ ଛାପୁଛନ୍ତି Faber & Feber ନାମକ Publisher. ଇଂରେଜି ପରଜା ଆପଣଙ୍କ ପାଖେ ପହଞ୍ଚିବା ମୁଁ ଲେଖୁଛି ।

କାଲି ଅଜି ପାଖକୁ ଯିବି । ଆମେରିକା କଥା ପରେ ଲେଖିବି । ଏଠି ଲୋକେ ୮୦।୯୦ ବର୍ଷରେ ବି ସୁସ୍ଥ ସବଳ ସକ୍ରିୟ । ଏବେ ଜଣେ ୧୧୦ ବର୍ଷ ବୟସ୍କା ଭଦ୍ର ମହିଳା Mirage jet plane ଚଢି ବିଲାତରୁ ଆମେରିକା ଆସିଲେ, ପହଞ୍ଚି ଗାଡ଼ିରେ ବୁଲୁଛନ୍ତି । କାଲିଫର୍ଣିଆର ଜଣେ ୯୧ ବର୍ଷ ବୟସ୍କା ଜାପାନ୍‌ର ଫୁଜିୟାମା ପର୍ବତରେ ତେର ହଜାର ଫୁଟ ଉଚ୍ଚ ବରଫ ଆବୃତ ଶୃଙ୍ଗରେ ଚଢିଲେ । ଯେଉଁମାନଙ୍କୁ ଶହେ ବା ତଦୂର୍ଦ୍ଧ୍ୱ ହୋଇଥାଏ ପ୍ରତିଦିନ ଟିଭି ତାଙ୍କ ନାଁ ଗାଁ କହେ । ରେଗାନ୍‌ଙ୍କୁ ୭୬, ଥରେ ପେଟ କ୍ୟାନ୍‌ସର୍ ଅପରେସନ୍ ହୋଇ ସାରିଚି, ନାକ ଉପରେ skin cancer ଦିଥର କଟା ହୋଇଛି, ଥରେ ଜଣେ ଗୁଳି ମାରିଥିଲା, ତଥାପି ସେ କେତେ ସୁସ୍ଥ ସବଳ ! ଘୋଡ଼ା ଚଢି ଦୌଡାନ୍ତି, ପହଁରନ୍ତି, ନାହା ପେଲନ୍ତି, ଗଲ୍‌ଫ୍ ଖେଳନ୍ତି, ଧାଁ ଦଉଡ କରନ୍ତି । ଇରାନ୍‌ର ଖୋମେନି କି ୮୬ ବର୍ଷ, ତାଙ୍କ ବଡ ଭାଇଙ୍କି ୯୬ ବର୍ଷ, ତାଙ୍କ ବାପା ଏବେ ୧୧୬ ବର୍ଷରେ ଆମ୍ବ ଗଛରୁ ପଡ଼ି ମଲେ । ବୟସକୁ ଡରିକି ନୁହେଁ ।

ଆଜ୍ଞାଧୀନ
ଗୋପ

ବାସ୍ତବ ଓ କାଳ୍ପନିକ

ଉପନ୍ୟାସ ଏକ କାଳଭିତ୍ତିକ କଳା । ଔପନ୍ୟାସିକ ଉପସ୍ଥାପିତ କରେ ଏକ ନିର୍ଦ୍ଦିଷ୍ଟ ସମୟ, ସେହି ସମକାଳୀନ ଜଗତ । ସମୟ ନିର୍ବାଚନରେ ଔପନ୍ୟାସିକ ସ୍ୱାଧୀନ । ଏହା ତାର ସ୍ୱକୀୟ ରୁଚି । ଔପନ୍ୟାସିକର ସୃଷ୍ଟ ଏଇ ଜଗତ ବାସ୍ତବ/କାଳ୍ପନିକ କିମ୍ବା ଉଭୟର ମଧୁର ସମାହାର । ଇତିହାସର ଏକ ନିର୍ଦ୍ଦିଷ୍ଟ ସମୟ ସହ ପାଠକ ଏହାର ସାଦୃଶ୍ୟ ଓ ବୈସାଦୃଶ୍ୟ କଳନା କରେ । ଏଇ କଳନାରୁ ଏହାକୁ ବାସ୍ତବ ବା କାଳ୍ପନିକ ସଂଜ୍ଞାବଦ୍ଧ କରଯାଏ ।

## ଲେଖକର କଥନ

ଲେଖକ ତାର ଲେଖାର ମାଧ୍ୟମରେ ନିଜର ଅନୁଭୂତିକୁ ପ୍ରକାଶ କରେ । କେବଳ ସେତିକି ନୁହେଁ ଅନ୍ୟର ଅନୁଭବ ଯାହାକୁ ସେ ଲକ୍ଷ୍ୟ କରିଛି, ଯାହା ସେ ଶୁଣିଛି, ପଢିଛି ଓ ନିଜର ବିବେଚନାର କଷଟିରେ ପରୀକ୍ଷା କରି ଗ୍ରହଣ କରିଛି, ନିଜର କରିଛି, ତାକୁ ମଧ୍ୟ ସେ ପ୍ରକାଶ କରେ । ସେ ଭବଗଞ୍ଜ୍ୟରେ ନିଜକୁ ଭୁଲି ଗତି କରୁଣୁ କେତେ ଜାଗ୍ରତ-ସ୍ୱପ୍ନ ଦେଖେ । ତାର ଚିନ୍ତାରେ ପକ୍ଷ ଲଗେ । ସେ କେବେ କଳ୍ପନାର ଆକାଶରେ ଉଡେ, ବାସ୍ତବତାର ରଂଗ ମଞ୍ଚରେ ହୁଏତ ସ୍ୱପ୍ନମୟ ଅବାସ୍ତବତାର କେତେ ଦୃଶ୍ୟ ଦେଖେ ଓ ଲେଖାରେ ପ୍ରକାଶ କରେ ।

କାହ୍ନୁଚରଣ ମହାନ୍ତି
ଇଚ୍ଛାନୁସାରେ—
ନବପତ୍ର—୧୯୭୪

## ମୋ ଉପନ୍ୟାସର ପ୍ରଥମ ବାକ୍ୟ ହିଁ
## ସମଗ୍ର କାହାଣୀର ସାରାଂଶ

ଗୋପୀନାଥ ମହାନ୍ତିଙ୍କୁ ଭେଟିବା ଏକ ଅନନ୍ୟ ଅଭିଜ୍ଞତା । ପ୍ରଥମ ପର୍ଯ୍ୟାୟର ସାକ୍ଷାତ୍କାର ବେଳକୁ ସେ ଆମେରିକା ଯାଇଥିଲେ । ଦୀର୍ଘ ବର୍ଷଟିଏ ତାଙ୍କୁ ଆମେ ଆଉ ଭେଟି ପାରିଲୁଁ ନାହିଁ । ଏ ଭିତରେ ନାନା କଥା ଶୁଣୁଥାଉଁ : ଜଣେ ପ୍ରଗଲ୍‌ଭ କଥକ ଗୋପୀନାଥ, ଭାରି ଭାବପ୍ରବଣ, ଏମିତିକି ଧୈର୍ଯ୍ୟଶୀଳ ଶ୍ରୋତା ବି ଅନ୍ୟମନସ୍କ ହୋଇଯିବ ତାଙ୍କ ପାଖରେ । ଏମିତି କେତେ କଣ !

ନଭେମ୍ବର, ୮୮ର ଏକ ସକାଳରେ ଫୋନ୍‌ରେ ତାଙ୍କର କଣ୍ଠସ୍ୱର : "ହଉ ଆସ, କଥାବାର୍ତ୍ତା କରିବା ।" ଆମେ ପ୍ରାୟ ୧୦ ଟାରେ ପହଞ୍ଚିଲୁଁ । ଦୋତାଲା କୋଠାର ପ୍ରତିଦ୍ୱନ୍ଦିତାରେ ବଢିଥିବା ଗୋଟିଏ ଗଛକୁ ଛାତ ଉପରୁ ବାଇନାକୁଲାରରେ ନିରୀକ୍ଷଣ କରୁଥିଲେ ଜଣେ ବର୍ଷୀୟାନ୍‌ବ୍ୟକ୍ତି ବୋଧହୁଏ ଗଛରେ କେଉଁ ନୂଆଁ ବିହଙ୍ଗର ନୀଡ ! ସେହିଁ ଥିଲେ ଓଡ଼ିଆ କଥା ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ୍ ଗୋପୀନାଥ ମହାନ୍ତି ।

ସମୁଦ୍ରକୁ କିଛି ପଚାରି ହୁଏ ନି, ତାକୁ ଦେଖିଲେହିଁ ଅସ୍ମିତା ହରାଏ ଦର୍ଶକ, ବିଭୋର ହୋଇଯାଏ ତାର ଗୀତରେ । ଆମେ ତାଙ୍କୁ କିଛି ପଚାରି ପାରିନୁ ବୋଲି ଅବଶୋଷ ନାହିଁ, ଯେଉଁ ପ୍ରଶସ୍ତ ଅନୁଭୂତି ଘଟିଲା ସେଇ ଯଥେଷ୍ଟ । ଦୁଇ ଦିନରେ ମାତ୍ର ଛଅ ଘଣ୍ଟାର ସାନ୍ନିଧ୍ୟ । ବ୍ୟାସ ଓ ବୋଦ୍‌ଲେୟାର, ସାରଳା ଦାସ ଓ ସୋଲଜିତ୍ ସିନ୍, କୃଷ୍ଣ ଓ କାମ୍ୟୁ ସମସ୍ତେ ଏ ଭିତରେ ଅନୁପ୍ରବେଶ କରିଛନ୍ତି । ଆପଣଙ୍କୁ ସେ ସ୍ମୃତିର ସହଭାଗୀ କରିବାପାଇଁ ଆମେ ଅସମର୍ଥ । ତାହା ତୁଳନାରେ ଏ ଅନୁଚ୍ଛେଦ୍ୟ ଗୁଡ଼ିକ କେତେ ବୈଚିତ୍ର୍ୟହୀନ, ସେ ଉଦାତ୍ତ କଣ୍ଠସ୍ୱରର ଅନୁପସ୍ଥିତିରେ ଏହା କେବଳ ଲିପିବଦ୍ଧ ମୂଲ୍ୟବାନ ବିଚାର ମାତ୍ର ।

□

ଓଡ଼ିଆ ସମାଲୋଚନା ଆଡମ୍ବରପୂର୍ଣ୍ଣ ଆଲଂକାରିକ ଭଷା ନିକଟରେ ହିଁ ରହିଗଲା । ସେ ଭଷାର ଅର୍ଥ କିଛି ନାହିଁ । ବିଗ୍ଭରକୁ ଅବିକଳ ପ୍ରକାଶ କରିବା ପାଇଁ ସିନା ଭଷା । କିନ୍ତୁ ଓଡ଼ିଆ ସମାଲୋଚନାରେ ଭଷା କେବଳ ଆଡମ୍ବର ପୂର୍ଣ୍ଣ ଆଉ ଫମ୍ପୁଡିଆ, ବିଗ୍ଭର ନାହିଁ । ଶୁଣିବାକୁ ଏହା ଖୁବ୍ ଭଲ ଲାଗୁଛି । ତାକୁ ବିଶ୍ଳେଷଣ କରି ତାର ଅର୍ଥ ଯେତେବେଳେ ବୁଝିବା, ତାର କିଛି ନିର୍ଦ୍ଦିଷ୍ଟ ଅର୍ଥ ନାହିଁ । ତାଙ୍କ ଲେଖା ସରସ, ତାଙ୍କ ଲେଖା ସାବଲୀଳ, ଏ stock phrases ର ମାନେ କଣ ? ତାର Definition ବି clear ନୁହେଁ । ଜଣେ ଯଦି ସେଇଟାକୁ ଘୋଡା ବୋଲି ଭବିଲଣି, ଆଉ ଜଣେ ତାକୁ ମୂଷା ବୋଲି ଭବିଛି । ତେଣୁ ଏ ସବୁ Sheer verbosity । ଏଇଯା ହେବା ଫଳରେ ଆଉ କିଛି assessment ହୋଇନି । ଗୋଟିଏ ଭବ-ପ୍ରବଣତା ବାଗାଡମ୍ବରରେ ପ୍ରକାଶ ପାଇଛି ମାତ୍ର ।

□

ଗଠନ ଶୈଳୀର କଥା ଉଠିଲେ ଆଗ କଥା ଉଠୁଛି, ତାର ଉଦ୍ଦେଶ୍ୟ କଣ ? ପ୍ରତ୍ୟେକ ଧାଡ଼ିରେ ଗଠନ ଶୈଳୀ ଅଛି । ତିନୋଟି ଶବ୍ଦ ପାଖେପାଖେ ବସିଲେ ଏ ଗୋଟିଏ ଗଠନ ଶୈଳୀ ହେଲା । ପ୍ରତି ପାରାଗ୍ରାଫ୍‌ର, ପ୍ରତି ପରିଛେଦର, ସମୁଦାୟ ବହିର, ଏ ସମସ୍ତର justification ଅଛି । ଏହା କାହିଁକି ଏଇଠି ରହିଲା, ଏଶବ୍ଦଟି କାହିଁକି ବ୍ୟବହାର କରାଗଲା, Story ଟା ଏଭଳି କାହିଁକି ଗଲା, Story ଭିତରେ ଅନ୍ୟ କଣ ଆସିଲା, ଏସବୁକୁ କେଉଁ ଉଦ୍ଦେଶ୍ୟ ନେଇ ଔପନ୍ୟାସିକ ଏପରି କଲେ– ଏ ସବୁ କଥା ଉଠିବ । ମୋର ନିଜ ଉପନ୍ୟାସର ଗଠନଶୈଳୀ କଥା କହିଲେ 'ପରଜା'ର କାହାଣୀ ସଜା ହୋଇଛି– ତାପରେ ଏୟା ହେଲା, ତାପରେ ଏୟା ହେଲା । 'ଲୟବିଲୟ'ର ଘଟଣା ଘଟୁଛି ଦୁଇଟା Dimension ରେ । ଗୋଟିଏ Dimension ହେଲା Super-Sensory perception ଆଉ ଗୋଟିଏ ହେଲା ତଳ plain ର କଥା । ତିନିଟା ଦିନ, ସେଇଟା ମୋଟେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଗୁରୁତ୍ୱପୂର୍ଣ୍ଣ ହେଲା ମୁହୂର୍ତ୍ତ ମୁହୂର୍ତ୍ତକେ ଯେଉଁ ଚିନ୍ତାଗୁଡ଼ିକ ଆସିଛି, କେତେ-ବେଳେ ଅତୀତରୁ କେତେବେଳେ ବର୍ତ୍ତମାନରୁ । ସେଇ ତରୁଣ ଗଯ ପ୍ରାୟ ବୃଦ୍ଧ

ଲୋକ । ତାର ତାରୁଣ୍ୟ ଆସିଯାଇଛି । ସତେକି ସେ ଯୁବକ ହୋଇ ଯାଇଛି । ଆଉ ଗୋଟିଏ ହେଇ। 'ଆକାଶ ସୁନ୍ଦେରୀ' । ବହୁ ଆଲୋଚିତ ଉପନ୍ୟାସ ବାକ୍ୟ ସବୁ ମଧ୍ୟ ସଂପୂର୍ଣ୍ଣ ନୁହେଁ । ଅଦ୍ଭୁତ ଶବ୍ଦ ସବୁ ଅଛି । ଅପୂର୍ବ ସଙ୍ଗୀତ ରହିଛି । ଏହା ଛଡା ମୋ ଉପନ୍ୟାସରେ ବହୁ କିସମର experiment ରହିଛି, experiment କହିଲେତ ଠିକ୍ ହେବନି, କାରଣ ସେ ସବୁ ସଫଳ ପ୍ରୟୋଗ, ଆଉ କେବଳ ପରୀକ୍ଷା ହୋଇ ରହିନାହିଁ ।



ଅନେକ ସ୍ଥଳରେ ମୋ ଉପନ୍ୟାସର ସମସ୍ତ କାହାଣୀ ତାର ପ୍ରଥମ ପରିଚ୍ଛେଦର ପ୍ରଥମ ବାକ୍ୟରେହିଁ ନିହିତ । ଅନେକ ଉପନ୍ୟାସରେ ତାହା ଅଛି । 'ମାଟି ମଟାଳ'ରେ ଅଛି, 'ଦାନାପାଣି'ରେ ଅଛି । 'ଦାନାପାଣି'ର ପ୍ରଥମ ବାକ୍ୟ : "ବଳୀଦତ୍ତ ଗ୍ଲଲିଛି ପୁଷ୍ଟୁରିଆ ପଲ୍ଲୀର ବାଟେ ବାଟେ, ସାଙ୍ଗରେ ଘରୁଆ । ତାର ଘୁଷୁରି ଘୁଅ ଦରକାର, ନିଜପାଇଁ ନୁହେଁ, ସାହେବର ବଙ୍ଗଳା ପାଇଁ ।" ତାକୁ ଆପଣ ଏମିତିହିଁ ପଢିନେବେ । କିନ୍ତୁ ଏଇ ବାକ୍ୟ ଦୁଇଟି ଭିତରେ ରହିଛି ସମଗ୍ର କାହାଣୀର ଇଙ୍ଗିତ । ଘୁଷୁରି କେବଳ ଜାଣେ ଭୋଜନ ଆଉ ମୈଥୁନ । ସେ ଭୋଜନରେ ଶୁଦ୍ଧତା କି ସୂକ୍ଷ୍ମତା କିଛି ନାହିଁ । ତାମ-ସିକତାର ଚୂଡାନ୍ତ ରୂପ ହେଲା ଘୁଷୁରି । ନିଜେ ଖାଇବି, ନିଜେ ସୁଖରେ ରହିବି ଆଉ ଏଇ ଯେଉ Hedonistic life କୁ ନେଇ ହେଲା ସଂସାର, ଘୁଷୁରିଆ ପଲ୍ଲୀ । ସେଇ ଘୁଷୁରିଆ ପଲ୍ଲୀରେ ବଳୀଦତ୍ତ ଗ୍ଲଲିଛି ଘୁଷୁରି ଘୁଅ ଖୋଜି । ଘୁଷୁରି ଘୁଅ କହିଲା ମାତ୍ରେ ଆମର ମନେ ପଡ଼ିବା ଉଚିତ "ପ୍ରତିଷ୍ଠା ଶୂକରୀ ବିଷ୍ଠା" । ଏ ଯେଉଁ ଲୋକଙ୍କର Carze ପ୍ରତିଷ୍ଠା ପାଇଁ ସେ କଣ ? ପ୍ରତିଷ୍ଠା ମାନେ– Self assertion । ସେ ଧନ ପାଇଁ ହେଉ, ପାଠ ପାଇଁ ହେଉ, ଖ୍ୟାତି ପାଇଁ ହେଉ, ଏସବୁ ଘୁଷୁରି ଘୁଅ । ବଳୀଦତ୍ତ ସେ ସବୁ ପାଇଲା, ଟଙ୍କା ପଇସା, ପ୍ରମୋଶନ, ପ୍ରତିପତ୍ତି, ପାଇଲା ସେସବୁ । କିନ୍ତୁ ଟିକିଏ Irony ରହିଗଲା । ନିଜପାଇଁ ନୁହେଁ, ସାହେବର ବଗିଗ୍ଭ ପାଇଁ । ଶେଷରେ ତାହାହିଁ ହେଲା । ପ୍ରମୋଶନ ପାଇଲା, ସବୁକଥା ହେଲା, ଅଥଚ

ସରେଜିନୀ ନାହିଁ, ଘର ଖାଁ ଖାଁ । "ଏଇ ତାର ଜୀବନର ଅଛିଣ୍ଡା କାହାଣୀ । 'ଦାନାପାଣି'ର ମୂଳ ଚଉଇରେ ସାଫଲ୍ୟ ଖୋଜି ଖୋଜି ଗତି ବିତି ଯାଇଛି । ଆପଣାର ଦେହରେ ଲଗି ରହିଛି ନିଆଁ ।" ଏହାର ପାରଲଲ୍ ସାହିତ୍ୟରେ ଅଛି । "The first scene of a Shakespearean tragedy strikes the theme of the whole play"– ଏ ଉକ୍ତି ମୋର ନୁହେଁ ଏ.ସି.ବ୍ରାଡଲେଙ୍କର ।



ଦ୍ୱିତୀୟତଃ ମୋ ଉପନ୍ୟାସରେ ଗୋଟିଏ ଅର୍ଥ ରହିଲ ପଢିଲେ ତା ଉହାଡରେ ଆଉ ଗୋଟିଏ ଅର୍ଥ– ଦୁଇ, ତିନ୍, ଗ୍ରରି ଆଲିଗୋରି । "ଅମୃତର ସନ୍ତାନ"ର ଗୋଟିଏ theme ତ ହେଲ କନ୍ଧ ଆଦିବାସୀଙ୍କର ଜୀବନ । ଆଉ ଗୋଟିଏ theme ହେଲ ଆଦିମ ମନୁଷ୍ୟ ଯେ କି ରୂପାନ୍ତରିତ ହେଉଛି ଆଧୁନିକ ମଣିଷକୁ । ପ୍ରଥମ ଅବସ୍ଥାରେ ତାର କିଛି inhibition ଥିଲ । ଦ୍ୱିତୀୟ ଅବସ୍ଥାରେ repression ବି ଆସିଗଲ । ତୃତୀୟ ଅର୍ଥ ହେଲ ପ୍ରାଚୀନ ଭରତ, ତାର ପ୍ରାଚୀନ ମୂଲ୍ୟବୋଧ । ସେ ମୂଲ୍ୟବୋଧ ହୁଗୁଳି ଯାଉଛି, ରୂପାନ୍ତରିତ ହେଉଛି ଆଧୁନିକ ଭରତରେ । ସବାଶେଷରେ ସେଥିରେ ପୁଣି ରହିଛି ଭରତର ଇତିହାସ । ପ୍ରାଚୀନ ସାମାଜିକ ରଜନୈତିକ ଜୀବନ, ତାପରେ ଶୋଷଣର ଯୁଗ । ତାର କାରଣ ମଧ୍ୟ ଅଛି । ଏଇ ଯେଉଁ ରଜା ରଜୁଡା ଯୁଗ, ସେ କାହିଁକି ଗ୍ରଲିଗଲ । କଥା ନୁହେଁ ଲେଞ୍ଜୁ କନ୍ଧ ଭରୀ ଗୋଟିଏ ଖରପ କାମ କରି ଦେଇ । ସଂସାରରେ ଚଳିବାକୁ ହେଲେ ହଜାର ଲେକଙ୍କ weakness କୁ ନେଇ ସମ୍ଭାଳି ଚଳିବାକୁ ପଡେ । ପରବର୍ତ୍ତୀ କାଳରେ ଯେତେବେଳେ authoritarianism ଆସିଲ ସେତେବେଳେ ସଂଘର୍ଷ ଉପୁଜିଲ । ଯେତେବେଳେ ପରମେଶ୍ୱର ସାହୁକାରର agent ଆସୁଛି, ସାହୁକାର ନିର୍ଦ୍ଦେଶ ଦେଉଛି ପୁରୁଷ ଲେକ ଦେଖିଲେ କଣ କହିବୁ, ସ୍ତ୍ରୀ ଲେକ ଦେଖିଲେ କଣ କହିବୁ । ସେଇଟା ହେଲ East-India Company ର Instrument of Instruction । ଆଉ ବାଟ କଢେଇ ନେଉଛି ଡମ୍ବ ବାରିକ ।

ଯା'ର ଭଷାଟା କେମିତି ଜାଣିଛ ? ବଙ୍ଗାଳିଆ । 'ମକେ ଗୁଟେ କଦ୍‌ଲି ଦେନା', ମକେ ସବୁଜନା, ସବ୍ କହିବି ।" ଅମିନ୍ ଗ୍ରନ୍ଦ ମିର୍ଜାପରର ଏ ହେଉଛି ପ୍ରତିନିଧି ।

ଟା ଦେହରେ ପୁଣି ରହିଛି ରାଜନୈତିକ ଦର୍ଶନର ଆଲୋଚନା, ଗାନ୍ଧୀ-ବାଦ୍ । ସେଠି ଗାନ୍ଧୀତ୍ୱ ଘେନି ଆବିର୍ଭାବ ହୋଇଛନ୍ତି ପାଣ୍ଡୁ ଦିସାରି । ତାର ଚେହେର ଗାନ୍ଧୀପରି । ତାର ଉପାୟ ମଧ୍ୟ ସେଇୟା । ବାଘ ଖାଇଗଲାପରେ ଉଚପଥର ଉପରେ ଚଢି କହୁଛି : "ମାହାପ୍ରୁ, ଦେଖ୍ ଲୋକଙ୍କର ଦୁର୍ଦ୍ଦଶା, ବାଘ କିମିତି ଖାଇଗଲା ? ଆଉ ତାର ଆର ଦିଗ ଦେଖ, କିଛି ଲୋକ ଅଛନ୍ତି, ତାଙ୍କ ଭିତରୁ ଯଦି କାହାକୁ ବାଘ ଖାଇଗଲା ବାଘକୁ ଗୋଡେଇ ଗୋଡେଇ କେମିତି ମାରିବେ, ସେ ଯେଉଁଠି ଥାଉ ତାକୁ ମାରିବେ, ତାର ମାଉଁସ ଟିକେ ଟିକେ ଖାଇବେ, ଫେରିବେ । ସେମାନେ ହେଲେ ଜାପାନିଜ୍ । ଆଉ କଣ ହିଟ୍‌ଲର ? ସେ ସେତେବେଳେ ମଲା । ଚଇତର ଜନ୍ମ ମଲା । ସେ ଜନ୍ମ ବିଷୟରେ ଗୋଟିଏ ଶୋକ ଅଛି । ସେ ହିଟ୍‌ଲର୍‌ର ମୃତ୍ୟୁରେ ଶୋକ । ପରେ ସିନା ଆମେ ଜାଣିଲୁଁ ଏତେ ଜିଉଙ୍କୁ ସେ ମାରିଲା, ଏମିତି କଲା ସେମିତି କଲା । ସେତେବେଳେ ଆମେ ଭରତୀୟ । ଆମେ ଗ୍ରହୁଁଥିଲୁ ଇଂରେଜମାନଙ୍କର ସର୍ବ-ନାଶ ହେଉ । ହିଟ୍‌ଲରର victory ଗୁଡାକ ଆମ ମନରେ ବହୁତ ଉଲ୍ଲାସ ଆଣୁଥିଲା । ଘରେ ଘରେ ଗାଏଁ ଗାଏଁ ବହୁତ ଆନନ୍ଦ ହେଉଥିଲୁଁ । ଯା ହେଉ ଏ ଗୋଟିଏ ବାହାରିଲା ବାଘକୁ ଫାଘ ।

☐

ମୁଁ ଯେଉଁ ଷ୍ଟାଇଲ ଆରମ୍ଭ କଲି, ତାର ମୂଳ ହେଲା ପଡିବା । ପଡିଲେ ତାର ମ୍ୟୁଜିକ ଆସିବ । ସେ ଯେଉଁ passage ଟା ଆମେ ପଡିଲେ, ସେ ଗୋଟିଏ picture ଦେବ । ତାପରେ ସେ ଶବ୍ଦସବୁର ଅର୍ଥ ଅଛି । ସେ ଅର୍ଥ ସମ୍ପର୍କରେ ମଣିଷର ଅନୁଭୂତି ସବୁ ରହିଛି । ଏସବୁ ଯେତେବେଳେ ଏକା ହୋଇଯିବ, ପ୍ରତ୍ୟେକ ଇନ୍ଦ୍ରିୟ ବାଟେ ଜଣେ ପାଠକ ମୋର ଉପନ୍ୟାସକୁ

ଉପଭୋଗ କରିବ । ପୁଣି ଶେଷରେ ମନ ଭିତରେ ତାର ଯେଉଁ ବିସ୍ତୃତ ମନ ଅଛି, ପୁଣି ତାର Super Sensory ଶକ୍ତି ଅଛି, ତାହା ମାଧ୍ୟମରେ ବି ସେ ଉପନ୍ୟାସଟି ଗ୍ରହଣ କରିବ । ସେଇ ଚେଷ୍ଟା ମୁଁ କରିଛି ।

□

ଏତେ କଥା ଅଛି । କୌଣସି ଲେଖକର କର୍ତ୍ତବ୍ୟ ନୁହେଁ, ଏସବୁ ସରଳାର୍ଥ କରି ବୁଝାଇବ । ତାକୁ ବୁଝିବା, ତାକୁ joint କରିବା ପାଠକର କର୍ତ୍ତବ୍ୟ । ମୋର ବହି ଲେଖା ତ ବହୁବର୍ଷ ହୋଇ ଗଲା । କେତେଜଣଙ୍କ ଆଲୋଚନାକୁ ଛାଡ଼ି ଦେଲେ ଅଧିକାଂଶ ଆଲୋଚନାରେ ନ ବୁଝିବା ଲୋକଠାରୁ ତୁଚ୍ଛା ପ୍ରଂଶସା ଅନେକ ପାଇଛି । ଯିଏ ବୁଝେନି, ତାର ନିନ୍ଦା ବା ପ୍ରଶଂସାର ମୂଲ୍ୟ କଣ ? ଉଚ୍ଛ୍ୱସିତ ପ୍ରଶଂସା ବା ସାହିତ୍ୟିକ ଆଲୋଚନା ଯେତିକି ପାଇଛି, ସବୁ ଅଣ ଓଡ଼ିଆଙ୍କର । ସେମାନେ ବୋଧେ ଦୂରରେ ଅଛନ୍ତି । ତେଣୁ objectively କଥାଟାକୁ ଦେଖୁଛନ୍ତି । ଆଉ ତାଙ୍କର perceptive ମଧ୍ୟ ବଡ ।

□

ଓଡ଼ିଆ ଶିଳ୍ପୀର ଆଭିମୁଖ୍ୟ ଏଇୟା, ସେ ବଡ କଥା ଭାବିବ, ବଡ କଥା କରିବ, ଆଉ ନାଁ ପାଇଁ ବ୍ୟସ୍ତ ହେବ ନାହିଁ । କାଲି ଆପଣଙ୍କୁ ସାରଳା ଦାସଙ୍କ କଥା କହୁଥିଲି । ଆମ ସାହିତ୍ୟର ସବୁଠୁ ବଡ ସ୍ରଷ୍ଟା ହେଲେ ମୋ ବିଚାରରେ ସାରଳା ଦାସ । ସେ ଭଳି ଲୋକ ମଧ୍ୟ କୌଣସି ସ୍ଥାନରେ ନିଜର ନାମ କହି ନାହିଁ, ଲୁଚାଇ ଦେଇ ଗଲେ । କୋଉଠି ହେଲେ କୋଣାର୍କ ନିର୍ମାତା ଶିବେଇ ସାନ୍ତରା ନିଜର ନାମ ଲେଖି ନାହିଁ । ନାଁ ନୁହେଁ, କାମ, ଆଉ ବଡ କାମ, ଓଡ଼ିଆ, ଯାଙ୍କ ଦୃଷ୍ଟିଭଙ୍ଗୀ ହେଉଛି ଏମାନେ ପ୍ରଥମେ ସମ୍ପୂର୍ଣ୍ଣ ବିଷୟକୁ ପ୍ରକାଶ କରନ୍ତି । ରବୀନ୍ଦ୍ର ନାଥଙ୍କ ସମ୍ପର୍କରେ ମୁଁ ସେହି କଥା କହିଥିଲି । Why Orissa rejects ରବୀନ୍ଦ୍ର ନାଥ । ଆଉ What Rabindranath borrowed from Orissa । ଆମର ଦୃଷ୍ଟିଭଙ୍ଗୀରେହିଁ ପାର୍ଥକ୍ୟ

ରହିଛି । ପାଦ ମାଟିରେ, ମୁଣ୍ଡ ଆକାଶରେ, ମାଟି– ଏ ଉଭୟଟାକୁ ଆମେ କଳାରେ ମିଶାଉଁ ।



ଆମ ଭଷା, ଆମ ଚରିତ୍ର ବଡ exact, accurate । ଆମେ ଯାହା କହୁ we mean that । ଆମ ଶବ୍ଦ ଗୁଡ଼ିକ ସେଭଳି । ତାକୁ ପ୍ରତିଶବ୍ଦ ଦେଇ ବଦଳେଇ ହେବନି । ଆଉ ପ୍ରତ୍ୟେକ ସୂକ୍ଷ୍ମ ଚିନ୍ତା ଲାଗି ଆମର ଶବ୍ଦ ରହିଛି । ଏତେ ବଡ଼ ଶବ୍ଦ ସମ୍ଭାର ବଙ୍ଗଳାରେ ତ କେବେହେଲେ ନାହିଁ । ରବୀନ୍ଦ୍ର ନାଥଙ୍କ ଯୋଗାଯୋଗ ଅନୁବାଦ କଲାବେଳେ ସେ କଥା ମୁଁ ଅନୁଭବ କରିଛି । ସାଧାରଣ 'ଆଉଁସିବା' ପାଇଁ ବଙ୍ଗଳାରେ ଶବ୍ଦ ନାହିଁ । ରବୀନ୍ଦ୍ର ନାଥ ଲେଖିଲେ : "ପାଏ ହାତ୍ ବୁଲିଇତେ ଲାଗିଲେ ।" ଏଥିରେ କେମିତି ବୁଲାଇଲା ବୁଝା ପଡୁଛି ? ଆଉ ଆମ ଶବ୍ଦର ମ୍ୟୁଜିକ ବଙ୍ଗଳାରେ ତ ଏକାବେଳେ ନାହିଁ ।



ପ୍ରଥମ ପ୍ରେରଣା

ଶାନ୍ତି ନରେନ୍ଦ୍ର ନାଥଙ୍କ କନ୍ୟା । ବୟସରେ ଗୋପୀନାଥଙ୍କଠାରୁ ପାଞ୍ଚବର୍ଷ ବଡ । ତଥାପି ଉଭୟଙ୍କ ମଧ୍ୟରେ ଭଲ ମେଳ ଥିଲା– ନିଷ୍କପଟ ସହୃଦୟତା ଏବଂ ତା ସହିତ ମଧ୍ୟ ଥିଲା ନିଜ ନିଜ କଥାକୁ ନେଇ ବଡାଇ କରିବାର କୈଶୋର ସୁଲଭ ଚପଳ ପ୍ରତିଦ୍ୱନ୍ଦ୍ୱିତା । ଶାନ୍ତି ବହୁତ ବଙ୍ଗଳା ବହି ପଢେ । ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ, ଶରତ ଚନ୍ଦ୍ର ପ୍ରଭୃତିଙ୍କ ଉପନ୍ୟାସ ବହି –

ଦିନେ ପରିହାସରେ ଶାନ୍ତି ପଚାରିଲା– ତୁମ ଓଡ଼ିଆରେ ଏମିତି ଉପନ୍ୟାସ ବହି ଅଛି ?

☐ ଗୋପୀନାଥ ବିଶେଷାଙ୍କ
ନବପତ୍ର– ୧୯୭୪

ମୋ ଉପନ୍ୟାସର ମୂଳ ଲକ୍ଷ୍ୟଥିଲା ରୋମାନ୍‌ଟିସିଜମ୍
ବିରୁଦ୍ଧରେ ଗୋଟାଏ ଜନମତ ସୃଷ୍ଟି କରିବା

☐ ଆମେ ତାଙ୍କୁ ଭେଟିବାବେଳେ ଜ୍ଞାନପୀଠ ପୁରସ୍କାରର ଚହଳ ମଉଳି ନଥାଏ । ଗୋଟିଏ ମାତ୍ର ଉପନ୍ୟାସ ସେ ଲେଖିଛନ୍ତି- 'ଚିତ୍ରଗ୍ରୀବ' । ଶତ-ବାର୍ଷିକୀ ପାଳନ ଅବସରରେ ଆମେ ତାଙ୍କୁ ଭେଟୁଛୁ ଜାଣି ସାକ୍ଷାତକାରର ଭିଡ ଭିତରୁ ଆମକୁ କିଛି ସମୟ ଦେଲେ । ଓଡ଼ିଆ ଉପନ୍ୟାସର ବିସ୍ମୃତପ୍ରାୟ ସେହି ଅଦ୍ୱିତୀୟ ଉପନ୍ୟାସ ସମ୍ପର୍କରେ ସ୍ମୃତିଚାରଣ କରୁଛନ୍ତି ଔପନ୍ୟାସିକ ସଚ୍ଚିଦାନନ୍ଦ ରାଉତରାୟ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ପରେ ।

☐

ଅର୍ଦ୍ଧଶତାବ୍ଦୀ ପରେ 'ଚିତ୍ରଗ୍ରୀବ' ଆପଣଙ୍କୁ କେମିତି ଲାଗେ ?

● କେତେକ ସମାଲୋଚକ କହନ୍ତି ଏଇଟି ହେଉଛି ପ୍ରଥମ ଆଣ୍ଟି ନୋଭେଲ । କିନ୍ତୁ ୟୁରୋପରେ ଆଣ୍ଟି-ନୋଭେଲ ମୁଭ୍‌ମେଣ୍ଟର ଆରମ୍ଭ ହୋଇଥିଲା ୧୯୪୦ ପରେ । 'ଚିତ୍ରଗ୍ରୀବ' (୧୯୩୫) ଲେଖିଲାବେଳକୁ ମୁଁ ସେ ବିଷୟରେ ଜାଣି ନ ଥିଲି । ସେତେବେଳେ କଲିକତା ସିଟି କଲେଜରେ ମୁଁ ଆଇ.ଏ. ପଢୁଥିଲି । ମୋ ଉପନ୍ୟାସର ମୂଳ ଲକ୍ଷ୍ୟ ଥିଲା ରୋମାଣ୍ଟିସିଜମ ବିରୁଦ୍ଧରେ ଗୋଟାଏ ଜନ-ମତ ସୃଷ୍ଟି କରିବା ଓ ରୋମାଣ୍ଟିସିଜମ୍‌ର ସତ୍ତା ଧ୍ୱଂସ କରିବା । ମୁଁ ଭାବେ 'ଚିତ୍ରଗ୍ରୀବ'ର ସେଇ ଲକ୍ଷ୍ୟ ପୂରଣ ହେଇଛି ।

● 'ଚିତ୍ରଗ୍ରୀବ'ର ପ୍ରଥମ ବାହ୍ୟ ବୈଶିଷ୍ଟ୍ୟ ହେଉଛି ସେଥିରେ ନାରୀ ଚରିତ୍ର ନାହିଁ । ଆଉ ଏକ କଥା ହେଲା ଆବେଗ ପ୍ରବଣ ତଥାକଥିତ ନୋଭେଲ୍ ଷ୍ଟାଇଲ୍ ନାହିଁ । ସଚେତନ ଭାବେ କେଉଁ ଲକ୍ଷ୍ୟ ରଖି ଆପଣ ଏହା କରିଥିଲେ କି ?

● ନାରୀ ଚରିତ୍ର ଶୂନ୍ୟତାର ଅନ୍ୟ କିଛି କାରଣ ନଥିଲା, ଏଉଳି ଭାବରେ ଗୋଟିଏ

କଥାବସ୍ତୁ ଗଢି ଉଠିଛି, ତାଭିତରେ ନାରୀର ଛାୟା ଅଛି; କିନ୍ତୁ ନାରୀ ନାହିଁ । ଏଇଟା ମୋ ଭିତରେ ଥିବା ଆଣ୍ଟି-ରୋମାଣ୍ଟିସିଜମ୍ ଭାବନାର ପ୍ରକାଶ ।

● 'ଚିତ୍ରଗ୍ରୀବ' ରେ ଥିବା reference ଗୁଡ଼ିକ ଶୈଳ୍ପିକ ଆବଶ୍ୟକତା ନା ଚାରିତ୍ରିକ ଆବଶ୍ୟକତା ?

● ଉଭୟ । କାରଣ ସେତେବେଳେ ଉପନ୍ୟାସର ଦୃଷ୍ଟିକୋଣ ଉପନ୍ୟାସ ଭିତରେ ହିଁ ଆବଦ୍ଧ ଥିଲା । ଏଣୁ ଓଡ଼ିଆ ପାଠକକୁ ଆନ୍ତର୍ଜାତିକ ଚେତନା ସହ ସଂଯୁକ୍ତ କରିବା ପାଇଁ ଆନ୍ତର୍ଜାତିକ ବହିର ନାଁ reference ଦେବା ଦରକାର ମନେ ହେଉଥିଲା । କୌଣସି ତାତ୍ତ୍ୱିକ ଭିତ୍ତିଭୂମି ନଥିଲେ ସାହିତ୍ୟ ସୃଷ୍ଟି ହୋଇପାରେ ନାହିଁ । 'ଚିତ୍ରଗ୍ରୀବ'ର ତାତ୍ତ୍ୱିକ ଭିତ୍ତିଭୂମି ସୃଷ୍ଟି କରିବା ପାଇଁ 'ଚିତ୍ରଗ୍ରୀବ'ରେ ଏତେ ଗୁଡ଼ିଏ reference ର ଆବଶ୍ୟକତା ରହିଛି । ତାତ୍ତ୍ୱିକ ବିଚାର ପ୍ରକାଶପାଇଁ ପ୍ରବନ୍ଧ ମାଧ୍ୟମରେ ଓଡ଼ିଶାରେ ସେତେବେଳେ ଲୋକାଦୃତ କରିବା ସହଜ ନ ଥିଲା । ଏଣୁ ବାଧ୍ୟହୋଇ ଉପନ୍ୟାସରେ ମୁଁ ତାହା ଗ୍ରହଣ କଲି । ରୋମାଣ୍ଟିସିଜମ ବିରୁଦ୍ଧରେ ଗୋଟାଏ ସଚେତନ ଜନମତ ସୃଷ୍ଟି କରିବାପାଇଁ ସେ ସବୁ କରାଯାଇଥିଲା । ପୁଣି ଚାରିତ୍ରିକ ଆବଶ୍ୟକତା ଏଇଥିପାଇଁ ଯେ ସେ ଚରିତ୍ରକୁ ଫୁଟାଇବା ପାଇଁ ସେ ଚରିତ୍ରର ଯେଉଁ ବିରୋଧାଭାସ ଦରକାର ଥିଲା reference ମାଧ୍ୟମରେ ତାହା ସହଜ ହେଲା ।

● ବେଳେବେଳେ ମନେ ହୁଏ ସେଇଟା ଚମକ୍ ଦେବାପାଇଁ ଚେଷ୍ଟା— ସେଇଟା ଗୋଟାଏ ଗିମିକ୍ ।

● ସେଇଟା ମଧ୍ୟ ଦରକାର । ନହେଲେ ନାରୀ ନାହିଁ, ବର୍ଣ୍ଣନାର ଚାତୁରୀ ନାହିଁ, ଏମିତି ଉପନ୍ୟାସକୁ କିଏ କାହିଁକି ପଢ଼ିବ ?

● ଆପଣ ଯେଉଁ ଚାରିଟା ଚରିତ୍ର ସେଥିରେ ନେଇଛନ୍ତି, ମନେ ହେଉଛି ଯେ ସେମାନେ ଚାରେଟି ନିର୍ଦ୍ଦିଷ୍ଟ ଭାବ-ସତ୍ତା । ଜଣେ ବ୍ୟକ୍ତି ନୁହଁନ୍ତି, ଗୋଟିଏ type !

● ସେମାନେ ସମସ୍ତେ Individual. କିନ୍ତୁ Individual ହୋଇକି ଗୋଟିଏ ଗୋଟିଏ ସାମାଜିକ ଚେତନାର ସେମାନେ ପ୍ରତିନିଧି । ବ୍ୟକ୍ତିସତ୍ତା ସେମାନଙ୍କ ଭିତରେ ରହିଛି; କିନ୍ତୁ ସେ ବ୍ୟକ୍ତିସତ୍ତା isolated phenomenon ନୁହେଁ । ସୌରୀନ୍ଦ୍ର ହେଉଛି ନାଟକର ସୂତ୍ରଧର । ଘଟଣାକୁ ଆଗେଇନେବା ପାଇଁ ଏକ ଚରିତ୍ର । ତା ଭିତରେ ଅଛି ଓଡ଼ିଆ ପ୍ରେମ । ଗଗନ ହେଉଛି ଆନ୍ତ-ର୍ଜାତିକ ଚେତନାର ଏକ ପ୍ରତୀକ । ଗଣେଶ ବାବୁ ହେଉଛନ୍ତି ରୋମାଣ୍ଟିସିଜମ୍‌ର ପ୍ରତୀକ ଏବଂ ମୃଗାଙ୍କବାବୁ ହେଉଛନ୍ତି ଏ ସମସ୍ତଙ୍କୁ ନେଇ ସମନ୍ୱିତ କରିବା ଭଳି ଏକ ବ୍ୟକ୍ତିତ୍ୱ ।

● 'ଚିତ୍ରଗ୍ରୀବ' ମନେହୁଏ କିଛି ସଂଳାପ ପ୍ରବଣ, କିଛି ନାଟ୍ୟଧର୍ମୀ ।

● ନାଟ୍ୟଧର୍ମୀ ନୁହେଁ । ସ୍ୱାଭାବିକ ଭାବେ ଯାହା ଘଟିଛି ତାହାହିଁ ଏଠାରେ ରହିଛି । ଯଦି କହୁଛ ସଂଳାପ ବେଶୀ ଅଛି, ତାର କାରଣ ହେଉଛି ସ୍ଥାନ ଓ କାଳର ବିସ୍ତୃତି ବେଶୀ ନାହିଁ । ଏଭଳି ଏକ ଉପନ୍ୟାସରେ ସଂଳାପର ପ୍ରାଧାନ୍ୟ ରହିବା ସ୍ୱାଭାବିକ ।

● 'ଚିତ୍ରଗ୍ରୀବ' ଲେଖିବାର ମୂଳପ୍ରେରଣା କେଉଁଠୁ ପାଇଲେ ?

● ଘଟଣାବହୁଳ ପଚାଶ ବର୍ଷ ପରେ ସେକଥା ମନେପକାଇ କହିବା ମୁସ୍କିଲ । ତେବେ ଆମର ଗୋଟିଏ 'ଦୀପକ ସଂଘ' ଥିଲା । ଏଇ ଚାରି ପାଞ୍ଚ ଜଣଙ୍କ ଚେଷ୍ଟାରେ ଆମେ କିଛି ବହି ପ୍ରକାଶ କରିଥିଲୁଁ । ପ୍ରଥମ ଚେଷ୍ଟା ଥିଲା 'ପ୍ରେମ ଓ ପଣ୍ୟ' (୧୯୩୫), ତାପରେ ପ୍ରକାଶ ପାଇଲା 'ଚିତ୍ରଗ୍ରୀବ' (୧୯୩୫) । ଆମ ଏଇ ସଂଘର ମୂଳ ଲକ୍ଷ୍ୟ ଥିଲା ରୋମାଣ୍ଟିସିଜମ ବିରୁଦ୍ଧରେ ସ୍ୱର ଉତ୍ତୋ-ଳନ କରିବା । 'ଚିତ୍ରଗ୍ରୀବ' ତାର ଏକ ପରିପ୍ରକାଶ ।

● 'ଚିତ୍ରଗ୍ରୀବ'ର କେଉଁ ଚରିତ୍ର ସହ ଆପଣ ନିଜକୁ ଆଇଡେଣ୍ଟିଫାଏ କରିବେ କି?

● ଗଗନ ଚରିତ୍ର ସହ ।

● 'ଦିଗନ୍ତ' ଗଳ୍ପ ସଂକଳନରେ ସଂପାଦକୀୟରେ ଆପଣ କହିଥିଲେ "ବର୍ତ୍ତମାନ ବିଶ୍ୱ ସାହିତ୍ୟରେ non-fection ର ଯୁଗ ।" ଓଡ଼ିଆ ଉପନ୍ୟାସର ପ୍ରକୃତି ଓ ଶହେ ବର୍ଷର ସଫଳତା ସଂପର୍କରେ ଆପଣ କିଛି କହିବେ କି ?

● ଓଡ଼ିଆରେ ବର୍ତ୍ତମାନ ଯେଉଁମାନେ ଲେଖାଲେଖି କରୁଛନ୍ତି, ସେମାନଙ୍କ ସାମାଜିକ ଚେତନା ଆଉ ଟିକେ ଉନ୍ମୁକ୍ତ ହେବା ଉଚିତ୍— ଆଉ ଟିକେ ପ୍ରଗତିଶୀଳ ହେବା ଉଚିତ୍ । ମଣିଷର ସାମାଜିକ ସମ୍ପର୍କ, ତାର ସ୍ଥିତି ସମ୍ପର୍କରେ ସେମାନେ ଆହୁରି ସଚେତନ ହେବା କଥା । ସାଲିସ୍ ମନୋବୃତ୍ତି ରହିବା ଉଚିତ ହେଉନି । ଓଡ଼ିଆ ଉପନ୍ୟାସରେ ଅଗ୍ରଗାମୀ ଯୁଗାନ୍ତକାରୀ ପଦକ୍ଷେପ ସେମାନେ ନେଇ ପାରି ନାହାନ୍ତି । ଓଡ଼ିଆ ଔପନ୍ୟାସିକମାନଙ୍କର ସାମାଜିକ ମହାସ୍ରୋତ ସହିତ ସଂପର୍କ କମ୍ । ଯେଉଁ ସମାଜ ଶୋଷଣବାଦ ଉପରେ ପ୍ରତିଷ୍ଠିତ ସେଇ ସମାଜ ବ୍ୟବସ୍ଥାକୁ ବଦଳେଇବା ଦିଗରେ ଲେଖକର ଏକ ସକ୍ରିୟ ଭୂମିକା ରହିଛି । ମୁଁ କହୁନି, ସେମାନେ ଯାଇ ଗୋପବନ୍ଧୁଙ୍କ ଭଳି ଚୁଡ଼ା ଗୁଡ଼ ବାଣ୍ଟିବେ । ସମାଜକୁ ବଦଳେଇବା ଦିଗରେ ସେମାନେ ଗୋଟିଏ ସଚେତନତା ସୃଷ୍ଟି କରିବା ଉଚିତ ।

● କଥାକାର ଭବରେ ଆପଣ ବେଶ୍ ପାଠକୀୟ ଆଦୃତି ପାଇଥିଲେ; ତେବେ କାହିଁକି ପାଠକମାନଙ୍କୁ ପରେ ନିରଶ କଲେ ?

● ନା, ମୁଁ କିଛି କିଛି ଗପ ଲେଖୁଛି । ଉପନ୍ୟାସ ଲେଖିବା ପାଇଁ ଦେଖିଲି ଏହା ବେଶ୍ ସମୟ ସାପେକ୍ଷ ।

● ଉପନ୍ୟାସର ଭବିଷ୍ୟତ ସଂପର୍କରେ କିଛି କହିବେ କି ?

● ଉପନ୍ୟାସ ପଢିଲା ପାଇଁ ମଣିଷର ଆଉ ବେଳ ନାହିଁ । ଆମର ଛାତ୍ରାବସ୍ଥାରେ ଆମେ ଯେମିତି ବଡ ବଡ ଉପନ୍ୟାସ ପଢୁଥିଲୁଁ, ଏବେ ଏହା ବିରଳ । ନାନା

ପ୍ରକାରର ଜଟିଳତା ମଧ୍ୟରେ ଆବଦ୍ଧ ସମାଜରେ ମଣିଷ ପାଖରେ ସାହିତ୍ୟ ପଢିବା ପାଇଁ ସମୟ ଓ ସ୍ପୃହା ମଧ୍ୟ ନାହିଁ । ତା'ଛଡା ଶିକ୍ଷା ବ୍ୟବସ୍ଥା ମଧ୍ୟ ସାହିତ୍ୟକୁ ବର୍ତ୍ତମାନ **devalued** କରିବାରେ ଲାଗିଛି । ତେଣୁ ମୁଁ ଭାବୁଛି କବିତା ବେଶୀ ଲୋକ ପଢିବା ଆରମ୍ଭ କଲେଣି ।

● ଓଡ଼ିଆ ଉପନ୍ୟାସମାନଙ୍କ ମଧ୍ୟରୁ କେଉଁ ଗୁଡ଼ିକ ଆପଣଙ୍କୁ ଭଲ ଲାଗେ ?

● ମୋତେ ଗୋପୀ ବାବୁଙ୍କ ଉପନ୍ୟାସ ସବୁଠୁ ଭଲ ଲାଗେ– 'ପରଜା', 'ଦାଦି-ବୁଢା' । ସୁରେନ୍ଦ୍ର ବାବୁଙ୍କ 'ଅଂଧ ଦିଗନ୍ତ' ମୋତେ ଭଲ ଲାଗିଛି । ଶାନ୍ତନୁ ଆଚାର୍ଯ୍ୟଙ୍କ 'ନର କିନ୍ନର' ।

● ଆଉ କେଉଁ କାହାଣୀ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ କୁହାଯାଇ ନାହିଁ ?

● ଓଡ଼ିଆ ଉପନ୍ୟାସରେ ବହୁ ଜିନିଷ ଲେଖା ହେବାର ରହିଯାଇଛି । ସମାଜ ସହିତ ଗଭୀର ଭାବରେ ସଂଶ୍ଳିଷ୍ଟ ନ ଥିବାରୁ ଔପନ୍ୟାସିକମାନେ ତାକୁ ଆବି-ଷ୍କାର କରିପାରି ନାହାଁନ୍ତି । ଗୋପୀବାବୁ କିଛି ଆବିଷ୍କାର କରିବା ପାଇଁ ଆଉ ଏକ ସମାଜକୁ ଚାଲିଯାଇଥିଲେ । ତାଙ୍କ ସମାଜରେ ଥିବା ସ୍ୱଚ୍ଛଳତା, ଜୀବନର ପ୍ରବାହ, ଶୋଷଣ-ଅତ୍ୟାଚାରକୁ ଫୁଟେଇବାକୁ ଚେଷ୍ଟାକରି ସେ ବେଶ୍ ସଫଳ ହୋଇଛନ୍ତି ଓ ଅନ୍ୟମାନଙ୍କୁ ସେ ସମ୍ଭାବନାର ରାସ୍ତା ଦେଖେଇ ଯାଇଛନ୍ତି । ସୁରେନ୍ଦ୍ର ମହାନ୍ତି ବାସ୍ତବତାକୁ ଛାଡ଼ିଯାଇ କେତେବେଳେ ବୌଦ୍ଧ ଯୁଗର କାହାଣୀ– କେତେବେଳେ ଜଗନ୍ନାଥଙ୍କ କାହାଣୀକୁ ନେଇ ଇତିହାସ ଗର୍ଭରେ ଆଶ୍ରୟ ନେଇଛନ୍ତି ।

ମୋ କହିବା କଥା, ଔପନ୍ୟାସିକ ହୁଅନ୍ତୁ, କବି ହୁଅନ୍ତୁ ବା ଗାଳ୍ପିକ ହୁଅନ୍ତୁ କେହି ବର୍ତ୍ତମାନ ସମାଜର ମୂଳ ବିଚାରଧାରାକୁ ବୁଝିବାକୁ ଚେଷ୍ଟା କରୁ-ନାହାଁନ୍ତି । ଧରନ୍ତୁ ବଙ୍ଗଳାରେ ତାରାଶଙ୍କର, ତାଙ୍କ ଗଳ୍ପ ଓ ଉପନ୍ୟାସରେ ଯେଉଁ ଯେଉଁ ସାମାଜିକ ସଚେତନତା ସୃଷ୍ଟି କରିଛନ୍ତି ଓ ମୂଳ ଧାରାର ପରିବର୍ତ୍ତନଶୀଳତା ପ୍ରଦର୍ଶନ କରିଛନ୍ତି, ଓଡ଼ିଆରେ କାହିଁ ? ଦ୍ୱନ୍ଦ୍ୱ ଭିତରେ

ଜୀବନର ରୂପାନ୍ତରଣ– ଏଇଟା ଭାରତୀୟ ଦର୍ଶନ ମଧ୍ୟ ସନ୍ଧାନ ପାଇଥିଲା । ବିଶେଷତଃ 'ଉତ୍ତର ନ୍ୟାୟ' ଦର୍ଶନରେ ଏହା ଅଛି । ମୁଁ ଯାହା ମୋର କବିତାରେ ଫୁଟେଇଛି । ଓଡ଼ିଆ ଉପନ୍ୟାସରେ ତାହାର ଅଭାବ ରହିଗଲା । ଅବଶ୍ୟ ମୁଁ ସେମାନଙ୍କୁ ଖରାପ ଶିଳ୍ପୀ କହୁନି, ସମସ୍ତେ ସଫଳ ଶିଳ୍ପୀ, କିନ୍ତୁ ସେ ଦିଗରେ ତାଙ୍କର ସଚେତନତାହିଁ ନାହିଁ ।
□

## ବିଦ୍ରୋହୀର ସ୍ୱପ୍ନ

ପ୍ରଚଳିତ ବିଧି ବ୍ୟବସ୍ଥା ବିରୁଦ୍ଧରେ ମୋ ସାହିତ୍ୟରେ ବିଦ୍ରୋହ ଓ ବିଦ୍ରୂପର ଅଙ୍କୁଶ ଯେମିତି ସବୁବେଳେ ଅତି ତୀବ୍ର ଓ ନିର୍ଦ୍ଦୟ ଭାବରେ ବାଜି ଉଠିଛି– ନୂତନ ଜୀବନର ସ୍ୱପ୍ନ ଓ ନକ୍ସା ବି ସେପରି ମୂର୍ତ୍ତ ହୋଇ ଉଠିଛି । ରୋମାଣ୍ଟିକ୍, ଶୈଶବର ଛକ ଅତିକ୍ରମକରି ନୂତନ ବାସ୍ତବତାର ଦୀଗନ୍ତ ଅଭିମୂଖରେ ଏହା କ୍ରମ ଅଗ୍ରସର । ଏ ଯାତ୍ରା ଖାଲି ମରୁଭୂମିରେ ଜାଗଭନ୍‌ର ମରୁଯାତ୍ରା ନୁହେଁ, ଏ ଯାତ୍ରାର ଲକ୍ଷ୍ୟ ନୂତନଦିଗନ୍ତର ଆବିଷ୍କାର, ନୂତନ ପୃଥିବୀର ସନ୍ଧାନ ।

□ ସଚ୍ଚିଦାନନ୍ଦ ରାଉତରାୟ
ମୁଁ କାହିଁକି ଲେଖେଁ ।

ମୋଟ ସମଗ୍ର ଉପନ୍ୟାସ ହେବ ଗୋଟିଏ
ନିଃସଙ୍ଗ ବ୍ୟକ୍ତିର ସଂଗ୍ରାମ କାହାଣୀ

□

"ପ୍ରିଥ ଓ ପୃଥିବୀ" ପଢି ସାରିବା ପରେ ସୁରେନ୍ଦ୍ର ମହାନ୍ତି ଲାଗୁଥାନ୍ତି ବେଶୀ ବେଶୀ ନିଜର, ଏକ ଅଶାନ୍ତ ସତ୍ତା ବିରୋଧୀ ବର୍ଷୀୟାନ ଯୁବକ । ଏ ସାକ୍ଷାତକାରରେ ତାଙ୍କ ଔପନ୍ୟାସିକ ସତ୍ତା ଆମକୁ ଯେତିକି ପ୍ରେରଣିତ କଲା ତତୋଧିକ ତାଙ୍କର ସ୍ଥବିର ଯୁବକ ପଣ । ଔପନ୍ୟାସିକ ଜୀବନର ଅପରାହ୍ନରେ ଅତୀତର ରୋମନ୍ଥନ କରୁଛନ୍ତି ସୁରେନ୍ଦ୍ର ମହାନ୍ତି, ଆନନ୍ଦରେ, ଅବଶୋଷରେ ପୁଣି ନିସ୍ପୃହ ବର୍ତ୍ତମାନପାଇଁ ବେଳେ ବେଳେ ହତାଶରେ ।

□

● ଆପଣ ଓଡ଼ିଶାର ଜଣେ ବହୁ ଆଲୋଚିତ ଓ ଆଦୃତ ଔପନ୍ୟାସିକ । ବହୁ ପାଠକ ଆପଣଂକ ଉପନ୍ୟାସ ପ୍ରତି ଶ୍ରଦ୍ଧାନ୍ୱିତ । ଯଦିଓ କେତେକେ କହନ୍ତି ଆପଣଙ୍କ ଉପନ୍ୟାସରେ ଓଡ଼ିଆ ଜାତୀୟତା ଛଡା କ'ଣ ବା ଅଛି ? ତେବେ ଗୋଟିଏ କଥା ସତ୍ୟ, ଓଡ଼ିଆ ଜାତିର ବିତର୍କିତ ଚରିତ୍ରମାନଂକ ପ୍ରତି ଆପଣ ଶ୍ରଦ୍ଧାବାନ୍ ।

● ୧୯୫୦ ଆଗରୁ ଓଡ଼ିଆ ରାଜନୀତି, ସାହିତ୍ୟ-ସମାଲୋଚନା, ଇତିହାସ ସବୁ କ୍ଷେତ୍ରରେ କୌଣସି ବିଧିବଦ୍ଧ ଆଲୋଚନା ନଥିଲା । ୧୯୫୦ ମସିହାରେ ମୁଁ ଫକୀର ମୋହନଂକ ସଂପର୍କରେ "ଫକୀର ମୋହନ ସମୀକ୍ଷା" ଲେଖିଲି, ଏଇଟା ପ୍ରଥମ ବିଧିବଦ୍ଧ ଆଲୋଚନା । ମୋର ଯେତେବେଳେ ବୌଦ୍ଧିକ ଜୀବନର ଉନ୍ମେଷ ହୁଏ ସେତେବେଳେ ଓଡ଼ିଶାରେ ପ୍ରତିବେଶୀ ରାଜ୍ୟମାନଙ୍କର ବହୁତ ପ୍ରଭାବ ଥିଲା, ଆମର ଭାଷାରେ, ଆମର ଆଗ୍ରହରେ, ଆମର ସାହିତ୍ୟରେ, ଆମର ଜନ ଜୀବନରେ । ମୁଁ ବରାବର ଲକ୍ଷ୍ୟ କରୁଥିଲି ଓଡ଼ିଆମାନଂକ

ଭିତରେ ଏକ ହୀନମନ୍ୟତା । ଏମିତିକି ମୋର ଅଳ୍ପ ପୂର୍ବରୁ କେତେକ ବିଷୟ-ରେ ବଂଗଳାରେ ଶିକ୍ଷାଦାନ କରାଯାଉଥିଲା । ସେତେବେଳେ ମୁଁ ଭାବୁଥିଲି ଓଡ଼ିଆ ଜାତିର କିଛି ନାହିଁ ? ତେବେ ଗଂଗାଠାରୁ କୃଷ୍ଣା ପର୍ଯ୍ୟନ୍ତ କିମିତି ସେମାନେ ଶାସନ କରୁଥିଲେ । କୋଣାର୍କ, ଭୁବନେଶ୍ୱର, ପୁରୀ ତା'ହେଲେ କିମିତି ତିଆରି ହେଲା ? ଇଂରେଜ ବିରୁଦ୍ଧରେ ପ୍ରଥମ ଅସ୍ତ୍ର ଏମାନେ କିମିତି ଟେକିଥିଲେ ? ତେଣୁ ଏଇଟା ମୋତେ ଭାରି ଘାରିଥିଲା । ମୋର ରାଜନୀତିରେ କହ କି ସାହିତ୍ୟରେ କହ ଏଇ ଗୋଟିଏ ପ୍ରଶ୍ନ । ମୁଁ ସେଇ ଦିଗରେ ଆଲୋ-ଚନା କରି କାର୍ଯ୍ୟ କରି ଦେଖିଲି ଆମେ ଆମ ଇତିହାସ ସଂପର୍କରେ ସଚେତନ ନୋହୁଁ । କ'ଣ ଥିଲା ଆମର ସଂସ୍କୃତି, କ'ଣ ଥିଲା ଆମର ପରମ୍ପରା ଏ ବିଷୟରେ ଆମେ ସଚେତନ ନୋହୁ । ଦେଖିଲି ଯେଉଁମାନେ ଓଡ଼ିଶାର ମୋ ଦୃଷ୍ଟିରେ ସ୍ମରଣୀୟ ଓ ବରଣୀୟ ସେମାନଂକ ବିଷୟରେ ମୁଁ ଆଲୋଚନା କରିବା ଆରମ୍ଭ କଲି । ଏଇ ହେଲା ମୋ ଆଲୋଚନାରେ, ମୋ ସାହିତ୍ୟରେ ଓଡ଼ିଆ ଜାତୀୟତା ରହିବାର ମୂଳକଥା । ଦ୍ୱିତୀୟରେ ଆପଣ ଯେଉଁ କହୁଛନ୍ତି, ଯେଉଁମାନେ ବିତର୍କିତ ଚରିତ୍ର ଯେମିତି ଦ୍ୱିତୀୟ ରାମଚନ୍ଦ୍ରଦେବ, ସେତେବେଳେ ଇତିହାସ ରଚନାରେ ତାଙ୍କୁ ଜଣେ ନାରୀର ସୌନ୍ଦର୍ଯ୍ୟ ଲୋଲୁପ କାମୁକ ବ୍ୟକ୍ତି କୁହାଯାଉଥିଲା ବା ଗଜପତି ପ୍ରତାପରୁଦ୍ର ଦେବ ସେ ହେଉଛନ୍ତି ଭୀରୁ, ଯେହେତୁ ଜୀବନରେ ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏଇ ସବୁ ବିତର୍କିତ ଚରିତ୍ରମାନଂକୁ ମୁଁ ଆଲୋଚନା କରି ଦେଖିଛି ସେଇମାନଙ୍କ ଜୀବନ-ସଂଗ୍ରାମର ଏକ ମହନୀୟ ଦିଗ । ମୋର ଅନୁଭୂତିରୁ ମୁଁ ଦେଖିଛି, ଆମେ ଯାହାକୁ ନିନ୍ଦିତ କରୁ, ଲାଞ୍ଛିତ କରୁ ତା'ର ନିଜର ମଧ୍ୟ ଗୋଟିଏ ବକ୍ତବ୍ୟ ଅଛି । ପ୍ରତାପରୁଦ୍ର ଦେବ ଜୀବନରେ ସମସ୍ତ ବଡ ବଡ ଯୁଦ୍ଧ କରି ସାରି ଶେଷରେ କାହିଁକି ଚୈତନ୍ୟଙ୍କ ନିକଟରେ ଦୀକ୍ଷିତ ହେଲେ ତାଙ୍କୁ ଏକଥା କିଏ ପଚାରିଛି ? ପ୍ରତିବେଶୀ ଶକ୍ତିଶାଳୀ ଶାସକମାନଂକ ବିରୁଦ୍ଧରେ ଯୁଦ୍ଧକରି ଜୟ ଲାଭ କଲାପରେ ବି ସେ କାହିଁକି ଚୈତନ୍ୟଂକ ଶିଷ୍ୟତ୍ୱ ପାଇଁ, ସାନିଧ୍ୟ

ପାଇଁ ଏତେ ବ୍ୟାକୁଳ ହେଲେ କୌଣସି ଐତିହାସିକ ତାଙ୍କୁ ପଗ୍ଚରିଛନ୍ତି ? ଐତିହାସିକମାନଂକ ସ୍ୱିରୀକୃତ ମତବାଦରେ ମୁଁ ଜମା ବିଶ୍ୱାସ କରେନି । ସବୁବେଳେ ସେ ଚରିତ୍ରମାନଂକ ବକ୍ତବ୍ୟ ଉପରେ ହିଁ ବିଶ୍ୱାସ କରେ । ମୁଁ କେବଳ ଅନ୍ୟ ପକ୍ଷର କଥା କ'ଣ ହୋଇପାରେ ବିଗ୍ଚରକୁ ଆଣେ, ଏଣୁ ମୋର ଚରିତ୍ରମାନଂକ ପ୍ରତି ମୁଁ ଆକୃଷ୍ଟ । ମୋର ରାଜନୀତିରେ ମଧ୍ୟ ସେୟା । ଯେଉଁମାନଂକୁ ସମସ୍ତେ Condemned କରନ୍ତି ମୁଁ ଭାବେ ସେମାନଂକ ପାଖରେ କିଛି ଅଛି ।

● ହଁ, ଆପଣଙ୍କ 'ପଥ ଓ ପୃଥିବୀ' ରେ ଆପଣ କହିଛନ୍ତି, ଗୋଟିଏ ଶବ୍ଦରେ "ମୁଁ ସବା-ବିରୋଧୀ" ।

ହଁ, ମୁଁ ସବା ବିରୋଧୀ । ଯାହାକୁ ସମସ୍ତେ ଗ୍ରହଣ କରନ୍ତି ମୁଁ ତାକୁ ବିରୋଧ କରେ । ଯେଉଁମାନେ ଶାସନ କ୍ଷମତାରେ ଅଛନ୍ତି, ଯାହା ପ୍ରତିଷ୍ଠିତ– ବିଗ୍ଚର ହେଉ, ମୂଲ୍ୟବୋଧ ହେବ ମୁଁ ତାକୁ ବିରୋଧ କରେ । ଏହାହିଁ ମୋ ଜୀବନର ଦାର୍ଶନିକ ଭିତ୍ତି (Philosophical Orientation).

● ଏଇଟା ଭିନ୍ନ ଭିନ୍ନ କାଳରେ ଭିନ୍ନ ଭିନ୍ନ ଚରିତ୍ରକୁ ଆପଣ ନିଜ ଦୃଷ୍ଟିକୋଣରୁ ଦେଖୁଛନ୍ତି । ପାରଂପରିକ ବିଗ୍ଚର ଓ ବିଶ୍ୱାସକୁ ସ୍ୱୀକାର କରି ନାହାନ୍ତି । ଆଉ କେତୋଟି ଉପନ୍ୟାସ ଅଛି ଯେଉଁଠି ଆପଣ ନିଜେ ହିଁ ନାୟକ । 'ନେତି ନେତି' ସଂପର୍କରେ ଆପଣ କେତେ ପରିମାଣରେ ନିଜେ ଓ କେତେ ପରିମାଣରେ ଚରିତ୍ର ?

● ଏଇଟା କହିବା କଠିଣ । 'ନେତି ନେତି'ରେ ମୁଁ କେତେ ପରିମାଣରେ ନିଜେ ଓ କେତେ ପର୍ସେଣ୍ଟ ଚରିତ୍ର । ତେବେ 'ନେତି ନେତି'ର ସେ ମାନା କଣ ଗୋଟିଏ ଖୋଜୁଛି କିଛି ପାଉ ନାହିଁ । ପ୍ରେମରେ ଖୋଜୁଛି, ଗ୍ରାମରେ ଖୋଜୁଛି କିଛି ପାଉ ନାହିଁ । ଶେଷରେ ଯାଇ କଲିକତାର ବେଶ୍ୟା ବସ୍ତିରେ ଖୋଜୁଛି କିଛି ପାଉ ନାହିଁ । ଶେଷରେ ଯାଇ ଗଂଗା କୂଳରେ ବସିଛି । ଗୋଟିଏ ଡଙ୍ଗାକୁ ଦେଖୁଛି । ସେ ଡଂଗା ଦେଉଛି ତାକୁ ଗୋଟାଏ ଇସାରା । ଏ ହେଉଛି ମୋର

mental exprience, ମୋର ଜୀବନରେ ଯଦିଓ ପୂରାପୂରି ସେମିତି କିଛି ଘଟିନି । ମାନସିକ ଉଦ୍‌ବେଳନରୁ ମୋର 'ନେତି ନେତି'ର ସୃଷ୍ଟି । କ'ଣ ତାକୁ କହିବି,............... ଗୋଟିଏ ବସ୍ତୁନିଷ୍ଠ କାହାଣୀ ନୁହେଁ । ମାନାର ବାଲ୍ୟ ଜୀବନ ଯାହା, ଆଦ୍ୟ ଯୌବନ ଯାହା ମୋର ବି ସେମିତି । ସେ କଥା ତ 'ପଥ ଓ ପୃଥିବୀ' ରେ କହିଛି । ସେମିତି ପ୍ରେମ କରୁଥିଲି, ପାଠ ପଢୁନଥିଲି । ତେବେ percentage ହିସାବ କରି ହେବ ନି ।

- ଆମେ percentage ଚାହୁନା, ସେ ସଂପର୍କରେ ଆପଣଙ୍କ ବକ୍ତବ୍ୟ ହିଁ ଚାହୁଁ । ମାନା ନାଁଟି ମାନବେନ୍ଦ୍ର ରାୟଙ୍କୁ ସ୍ମରଣ କରେଇ ଦିଏ ।

- ଆଉ କେତୋଟି ଉପନ୍ୟାସ ଯେମିତି 'ଅଚଳାୟତନ' ବା 'ହଂସଗୀତି' ଯେଉଁଠି ଆମେ ଦେଖୁ ସାମନ୍ତବାଦର କ୍ଷୟିଷ୍ଣୁ ମୂଲ୍ୟବୋଧ କିମ୍ବା କ୍ଷୟଶୀଳ ଭ୍ରାନ୍ତ ନୂତନ ମୂଲ୍ୟବୋଧ । ଏହା ପ୍ରଦର୍ଶନ ମାଧ୍ୟମରେ ପାଠକ ପ୍ରତି ଆପଣ କ'ଣ ନିର୍ଦ୍ଦିଷ୍ଟ ବକ୍ତବ୍ୟ ରଖୁଛନ୍ତି କି ?

- ନା, ମୁଁ ଯାହା ଲେଖୁଛି ଏ ସବୁ ମୋ ଜୀବନର ଅନୁଭବ । ପାଠକମାନେ ଏଥିରୁ ଯାହା ବୁଝନ୍ତୁ । 'ହଂସଗୀତି'ର କଥା ଆପଣ ଯେଉଁ କହୁଛନ୍ତି, ମୁଁ ଯେତେବେଳେ ପଞ୍ଚମ ଲୋକସଭାର ସଦସ୍ୟ ଥିଲି ଶୁଣିଲି ପ୍ରତିବେଶୀ ଜଣେ I A S. ଅଫିସରଙ୍କ ୧୪ ବର୍ଷ ପୁଅ ମରିଗଲା ଡ୍ରଗ୍ ଖାଇକି । ମୁଁ ଗୋଟିଏ ଦାରୁଣ ଆଘାତ ପାଇଲି । ୧୪ ବର୍ଷର ପିଲା କାହିଁକି ଡ୍ରଗ୍ ଖାଇକି ମରିଗଲା ? ମୁଁ ଦେଖିଲି Public School ମାନଂକରେ ଏହି ଡ୍ରଗ୍‌ର ପ୍ରଚଳନ ବେଶି । ତା'ପରେ ସେଇ ପିଲାଟାର ଜୀବନ ସଂପର୍କରେ ମୁଁ ଅନୁସନ୍ଧାନ କଲି । ଦେଖିଲି ତା' ଭିତରେ ଯେଉଁ ନିଃସଂଗତା ବାପା ମାଆଙ୍କ ସ୍ନେହ ନପାଇ, ତାର ଯେଉଁ ପାରିବାରିକ ଜୀବନ ଏହାହିଁ ତାକୁ ଡ୍ରଗ ଏଡ଼ିକଟ୍ କରିଛି । ସେଇ ଅନୁଭବ ପାଇବା ପାଇଁ ମୁଁ ଚରସ୍ ଖାଇଛି ଡାକ୍ତରମାନଂକ ପାଖରେ ବସି । ହାଲୁସିନେସନ୍ କେମିତି ଆସେ ସେଇ ଶୂନ୍ୟବୋଧ କିମିତି ଜାଣିବା ପାଇଁ ଚେଷ୍ଟା କରିଛି । ଏମିତି ପ୍ରତିଟି ଉପନ୍ୟାସର ବର୍ଣ୍ଣନା ସହ ମୋର ପ୍ରତ୍ୟକ୍ଷ ଅନୁଭୂତି ଜଡ଼ିତ ।

ମୋର ରାଜନୀତିକ ଜୀବନରେ ଗୋଟିଏ ବିରୋଧୀଦଳ ଗଢିବା ପାଇଁ ଓଡ଼ିଶାର ବହୁ ରାଜ ପରିବାର ସହିତ ସଂପର୍କିତ ଥିଲି । ସେଠି ମୁଁ ଦେଖିଛି କିପରି ଗୋଟିଏ ମୂଲ୍ୟବୋଧର ସଂକଟ ସେମାନଂକ ମଧ୍ୟରେ ଦେଖା ଯାଇଛି । 'ଅଚଳାୟତନ'ରେ ତାହା ହିଁ ରୂପ ପାଇଛି । ଆଜିର ଏଇ ଅର୍ଥ ସର୍ବସ୍ୱ । ସମାଜ ଓ ସେ ସମୟର ମୂଲ୍ୟବୋଧ ସର୍ବସ୍ୱ, ସମାଜ ମଧ୍ୟରେ ଦ୍ୱନ୍ଦ 'ଅଚଳାୟତନ'ରେ ରହିଛି । ସେଥିରେ ଅଛି ଗୋଟିଏ ଉକ୍ତି : ହତଭାଗାମାନେ ସେମାନେ ମୂଲ୍ୟ ବୁଝନ୍ତି, କିନ୍ତୁ ମୂଲ୍ୟବୋଧ ବୁଝନ୍ତି ନାହିଁ । ଏ ଯେଉଁ ମୂଲ୍ୟ ଓ ମୂଲ୍ୟବୋଧର ସଂକଟ ଏହା କୌଣସି ପରିବାର ଭିତରେ ସୀମିତ ନୁହେଁ ପ୍ରତ୍ୟେକ ପରିବାରରେ ଘଟୁଛି । ମୋ କଥା ମୁଁ ଯାହା ଅନୁଭବ ନ କରିଛି, ତାହା ଲେଖିନି । ସେମିତି 'କାଳାନ୍ତର' ଉପନ୍ୟାସରେ ଗୋଟିଏ ଦିନ ଗୋଟିଏ ଝଡ । ସେ ଝଡ ହେଉଛି ୧୯୭୧ ମସିହାରେ ହୋଇଥିବା ସାମୁଦ୍ରିକ ଝଡର ଏକ ଆଂଶିକ ଅନୁଭୂତି । ସେଇଟା ମୋ ନିର୍ବାଚନ ମଣ୍ଡଳୀରେ ହୋଇଥିଲା । ପୂରାଟା ମୁଁ ଅନୁମାନ କରିଛି, କିନ୍ତୁ ମୋର ଆଂଶିକ ଅନୁଭୂତ ବି ରହିଛି । ଐତିହାସିକ ଉପନ୍ୟାସମାନଂକରେ ମଧ୍ୟ ଜଣେ ଯଦି ତଳେଇକି ପଢିବ, ସବୁଥିରେ କ୍ଷମତା, ରାଜନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଇଛି । ମୋର ଏହା ଏକ ନିର୍ଦ୍ଦିଷ୍ଟ ମତବାଦ ।ଐତିହାସିକ ଅନୁଭବ ସବୁ ବି ଆଜିର ଶୀଳାଭୂତ ଅନୁଭୂତି । ଯାହା ମୋତେ ଆଘାତ ଦେଇନି ସେ ସଂପର୍କରେ ମୁଁ ଲେଖିନି ।

● ଆପଣ 'ଅନ୍ଧ ଦିଗନ୍ତ'ରେ କିଛି ମାତ୍ରାରେ ପେସିମିଷ୍ଟିକ୍ ହୋଇ ଯାଇଛନ୍ତି । ସେହି ସମୟର ଭାରତୀୟ ରାଜନୀତିକୁ ଦେଖିଲେ, ସ୍ୱାଧୀନତାର ସ୍ୱପ୍ନଭଂଗକୁ ଲକ୍ଷ୍ୟ କଲେ ଜଣେ ସଚେତନ ବ୍ୟକ୍ତି ତାହାହିଁ ଅନୁଭବ କରିବ, ତେବେ ବି ନୂଆ ଏକ ସ୍ୱପ୍ନର ଭାରତ ସଂପର୍କରେ ଆପଣ ଚିନ୍ତା କରିପାରିଥାନ୍ତେ ।

● 'ପେସିମିଜମ୍' ବା ନୈରାଶ୍ୟବାଦର ତାହା ହେଉଛି ଜନନୀ । ମୋ ସଂପର୍କରେ ଏକ ସମାଲୋଚନା ଶୁଣାଯାଏ, "ସୁରେନ୍ଦ୍ର ବାବୁ ସିନିକ୍ । ସବୁ କଥାରେ ସେ ନୈରାଶ୍ୟବାଦୀ ।" ମୁଁ ଯେହେତୁ ଅଭିନୟକରେ ନାହିଁ, ତେଣୁ ମୁଁ ଆଶାବାଦୀ

ନୁହେଁ । ଆଜି ଯେଉଁ ଦେଖୁଛି ନୂତନ ଶିକ୍ଷାନୀତି ନାମରେ ବର୍ଣ୍ଣବୈଷମ୍ୟ ସୃଷ୍ଟି କରଯାଉଛି, ତାକୁ ନେଇ କଣ ଆଶାବାଦୀ ହୋଇ ପାରିବି ? ଯଦି ଆଶାବାଦୀ ହେବି ଆତ୍ମପ୍ରବଂଚନା ହିଁ ହେବ । ସତ କଥା କହିଲେ ଲୋକ-ମାନଂକୁ ଲାଗିବ ନୈରାଶ୍ୟବାଦ ବୋଲି । କିନ୍ତୁ ମୁଁ ପ୍ରତିଜ୍ଞା କରିଛି ସତ ହିଁ କହିବି । ତମକୁ ଖୁସି କରିବା ପାଇଁ ମୁଁ ଗୋଟିଏ ଭଲ ସମାଜର ଚିତ୍ର ଉପ-ନ୍ୟାସରେ ଦେଇ ପାରିବି ନାହିଁ । ମୁଁ ସେମିତି ପ୍ରତାରକ ନୁହେଁ ।

● ଆପଣଙ୍କ ଐତିହାସିକ ଉପନ୍ୟାସ ଗୁଡ଼ିକରେ ରବୀନ୍ଦ୍ରନାଥ ଯାହାକୁ କହନ୍ତି; ଐତିହାସିକ ରସ ରହିଛି । ପରିବେଶର ବର୍ଣ୍ଣନାରେ ମଧ୍ୟ ଆପଣ ବେଶ୍ ସତ୍ୟ-ନିଷ୍ଠ । ତେବେ ଭାଷା ବ୍ୟବହାରରେ ଆପଣ ସଂସ୍କୃତାଶ୍ରିତ ମନେ ହୁଅନ୍ତି ।

● ହଁ, ମୁଁ ସଂସ୍କୃତାଶ୍ରିତ । ତେବେ କେବଳ ସଂସ୍କୃତାଶ୍ରିତ ନୁହେଁ, ଗ୍ରାମ୍ୟ ବି । 'କୃଷ୍ଣାବେଣୀର ସଂଧ୍ୟା'ରେ ବୃଦ୍ଧାଟିଏ ତା' ପୁଅ ସହିତ କଥାବାର୍ତ୍ତା କଲା-ବେଳେ ଗ୍ରାମୀଣ ଭାଷା କହୁଛି । 'ନୀଳଶୈଳ'ରେ ତ ଅନେକ ଗ୍ରାମ୍ୟ ଭାଷା ଅଛି, କିନ୍ତୁ କଥା ହେଉଛି ମୁଁ ପାତ୍ରୋମୁଖୀ ଭାଷା ବ୍ୟବହାର କରେ । ଯେମିତି ଫକୀର ମୋହନ କରିଛନ୍ତି ତାଙ୍କ ଉପନ୍ୟାସମାନଙ୍କରେ । ତେବେ ସମ୍ଭ୍ରାନ୍ତ ଚରିତ୍ର ନେଇ ଲେଖା ହୋଇଥିବା ଉପନ୍ୟାସରେ ସଂସ୍କୃତାଶ୍ରିତ ଭାଷା ରହିବା ସ୍ୱାଭାବିକ । ପୁଣି ଗ୍ରାମ୍ୟ ଭାଷାରେ ଉନ୍ନତ, ମାର୍ଜିତ ଚିନ୍ତାଧାରା ପ୍ରକାଶ କରିବା କଷ୍ଟକର । ଫକୀର ମୋହନ ନିଜେ ବି ପାରି ନାହାନ୍ତି ।

● 'ଲଛମା' ପରେ 'ନୀଳଶୈଳ' ହିଁ ସଫଳ ଐତିହାସିକ ଉପନ୍ୟାସ ବୋଲି ଆପଣ କହନ୍ତି । ମଧ୍ୟବର୍ତ୍ତୀ କାଳର ଐତିହାସିକ ଉପନ୍ୟାସ ଗୁଡ଼ିକରେ କ'ଣ ଅପୂର୍ଣ୍ଣତା ଅପଣ ଲକ୍ଷ୍ୟ କରି ପାରିଥିଲେ ?

● ଫକୀର ମୋହନଂକ ପରେ ଐତିହାସିକ ଉପନ୍ୟାସ ଲେଖିଛନ୍ତି ଗୋଦାବରୀଶ ମହାପାତ୍ର "୧୮୧୭", ରାମଚନ୍ଦ୍ର ଆଚାର୍ଯ୍ୟଙ୍କ "ବୀର ଓଡ଼ିଆ" ଓ ତାରିଣୀ ଚରଣ ରଥଙ୍କ "ଅନ୍ନପୂର୍ଣ୍ଣା" ଏମିତି ଅନେକ । ଶେଷ ଦୁଇଟି ସହ "ନୀଳଶୈଳ" ଓ

"କୃଷ୍ଣାବେଣୀରେ ସଂଧ୍ୟା"କୁ ତୁଳନା କଲେ ଏହି ଅପୂର୍ଣତାକୁ ଲକ୍ଷ୍ୟ କରିହୁଏ । ଯେଉଁ ଐତିହାସିକ ଉପନ୍ୟାସ ସବୁ ଥିଲା, ସେ ସବୁ ଥିଲା **Two dimensional–** ଗୋଟିଏ ଘଟଣା, ଗୋଟିଏ ଚରିତ୍ର । ତାକୁ ମୁଁ **Three dimensional even four dimensional** କରିଛି ।

● କେମିତି ?

● ତୃତୀୟ ଡ଼ାଇମେନ୍‌ସନ୍‌ଟି ହେଉଛି ପରିବେଶ, ପରିସ୍ଥିତି ଉପରେ ଚରିତ୍ର କ'ଣ କରୁଛି– **Psychoanalysis Fourth dimension** ଯେମିତି "ନୀଳ ଶୈଳ"ରେ ଜଗନ୍ନାଥ ନିଜେ ଚରିତ୍ର ନୁହନ୍ତି, ଅଥଚ ବ୍ୟାପ୍ତ ଭାବରେ ସେ ସବୁଠି ରହିଛନ୍ତି । ସେମିତି "ନୀଳାଦ୍ରି ବିଜୟ"ରେ ବି । ମୋର ଶେଷ ଐତିହାସିକ ଉପନ୍ୟାସ, ଏହାପରେ ମୁଁ ପ୍ରତିଜ୍ଞା କରିଛି ଐତିହାସିକ ଉପନ୍ୟାସ ଆଉ ଲେଖିବି ନାହିଁ, "ଆଜୀବକର ଅଟ୍ଟହାସ୍ୟ" । ଐତିହାସିକ ଉପନ୍ୟାସ କ୍ଷେତ୍ରରେ ମୁଁ ଯାହା କଲି ଏହା ଆତ୍ମପ୍ରୌଢ଼ି ନୁହେଁ, ତାହା ଭାରତରେ ନାହିଁ । ସବୁ ଜାତୀୟ ଭାଷାରେ ମୋ 'ନୀଳଶୈଳ' ଅନୂଦିତ ହୋଇଛି– କେବଳ ଉର୍ଦ୍ଦୁ ଓ ଇଂରେଜୀ ଛାଡ଼ି । ଐତିହାସିକ ଉପନ୍ୟାସ କ୍ଷେତ୍ରରେ ମୁଁ ଯାହା ଆଣିଛି, ତାହା ଏକ ନୂଆ ଅନୁଶୀଳନ । ମୁଁ ଚାହୁଁଛି ସେଇ ନୂଆ ଯାଆଁର [Genre] ଆହୁରି ପ୍ରତିଭାଯୁକ୍ତ ନୂଆ ନୂଆ ଲେଖକଂକ ଲେଖନୀରେ ପରିପୁଷ୍ଟ ହେଉ । ଓଡ଼ିଶାର ଇତିହାସର ଖାରବେଳ ସଂପର୍କରେ ଏକ ଉପନ୍ୟାସ ଲେଖିବା ଇଚ୍ଛା ଥିଲା, ସେଇ ଗବେଷଣା କରିବା ପାଇଁ ମୋର ଆଉ ସମୟ କି ଶକ୍ତି ନାହିଁ ।

● ଐତିହାସିକ ଉପନ୍ୟାସ ଲେଖିଲା ବେଳକୁ ଔପନ୍ୟାସିକ ଦୁଇଟି ଅସୁବିଧାର ସମ୍ମୁଖୀନ ହୁଅନ୍ତି । ପ୍ରଥମକଥା ହେଲା, କାହାଣୀର ଏକ ଛାଞ୍ଚ ପାଠକମାନଂକ ପାଖରେ ରହିଯାଇଥିବା, ଯାହାକୁ ଔପନ୍ୟାସିକ ଆଉ ପରିବର୍ତ୍ତନ କରି ପାରିବେ ନାହିଁ, ନୂଆ ଚରିତ୍ର ମାଧ୍ୟମରେ ଯଦିଓ ସେ କିଛି ପରିବର୍ତ୍ତନ କରି ପାରିବେ । ଦ୍ୱିତୀୟ ଅସୁବିଧା ହେଲା ଐତିହାସିକ ରସ ସୃଷ୍ଟି ପାଇଁ ସେଇ ସମକାଳର ରାଜନୀତିକ, ସାମାଜିକ, ସାଂସ୍କୃତିକ ଅବସ୍ଥା ସଂପର୍କରେ ତାକୁ

ଗବେଷଣା କରିବାକୁ ପଡ଼ିବ । ଆପଣ ଯେଉଁ କହିଲେ "ମୁଁ ଆଉ ଐତିହାସିକ ଉପନ୍ୟାସ ଲେଖିବି ନାହିଁ ପ୍ରତିଜ୍ଞା କରିଛି" ପ୍ରଥମ କାରଣଟି ନିଶ୍ଚୟ ନୁହେଁ ?

● ନା ନା ଲେଖିବା ଶକ୍ତି ଭଗବାନ ନେଇ ନାହାନ୍ତି, ଖୋଜିବା ପାଇଁ ଆଉ ଶକ୍ତି ନାହିଁ ।

● ଆପଣ କେଉଁ ଐତିହାସିକ ଉପନ୍ୟାସରେ ପ୍ରଥମ ଅସୁବିଧାଟି ଅନୁଭବ କରି-ଛନ୍ତି କି ? ସ୍ୱାଧୀନ ଚରିତ୍ର ଅନୁପ୍ରବେଶ କରାଇବା ପାଇଁ ମୂଳ କାହାଣୀ ଅସୁ-ବିଧା ସୃଷ୍ଟି କରିଛି କି ?

● ସ୍ୱାଧୀନ ଚରିତ୍ର କହିଲେ ତୁମେ କହୁଛ ଇତିହାସ ଦ୍ୱାରା ଅସମର୍ଥିତ ଚରିତ୍ର । ପ୍ରତାପରୁଦ୍ର ଦେବ କ'ଣ ଏକୁଟିଆ ଯୁଦ୍ଧ ଯାତ୍ରା କରିଥିଲେ ? ଏପରି ଅଗଣିତ ନାଁ ଅ ଣା ଚରିତ୍ର ଇତିହାସରେ ରହିଛନ୍ତି ସେମାନଂକୁ ନାମିତ କରିବା ଓ ସମ-କାଳୀନ ପରିସ୍ଥିତିର ଏକ ପ୍ରତୀକ କରିବା ଐତିହାସିକ ଉପନ୍ୟାସରେ ଏକାନ୍ତ ଆବଶ୍ୟକ । ଯେମିତି ସରଦେଈ ଚରିତ୍ର ମାଧ୍ୟମରେ ମୁଁ ଓଡ଼ିଆ ଜାତୀୟ ଜୀବନର ଅସହାୟତା ଓ ଆତ୍ମପ୍ରତ୍ୟୟ [Inner strength] କୁ ପ୍ରତୀକିତ କରିଛି । ତେଣୁ ସ୍ୱାଧୀନ ଚରିତ୍ରମାନଂକ ପାଇଁ ବହୁତ scope ଐତିହାସିକ ଉପନ୍ୟାସରେ ରହିଛି । ତୁମେ ଯେଉଁ କାହାଣୀର ଛାଞ୍ଚ କଥା କହିଲ ତାହା ଇତିହାସର କଂକାଳ । କଂକାଳ ତ ମଣିଷ ନୁହେଁ, କଂକାଳ ଉପରେ ମାଂସ, ରକ୍ତ ଦେବା ଔପନ୍ୟାସିକର କାମ ।

● ଆପଣ ଯେତେବେଳେ ଗୋଟିଏ ଐତିହାସିକ ଉପନ୍ୟାସ ଲେଖିବି ବୋଲି ସ୍ଥିର କରୁଛନ୍ତି, ଏହାର ମୂଳ ପ୍ରେରଣାଟା କେଉଁଠୁ ପାଉଛନ୍ତି, କେମିତି ଆରମ୍ଭ କରୁଛନ୍ତି ?

● 'ନୀଳଶୈଳ' ସଂପର୍କରେ ତ ମୁଁ ତା'ର ଭୂମିକାରେ ଲେଖିଛି । ମଧୁସୂଦନ ବିଷୟରେ ବଡ ଦୁର୍ଭାଗ୍ୟର ବିଷୟ ତାକୁ ଇତିହାସରୁ ନିଭେଇ ଦେବା ପାଇଁ ସ୍ୱାଧୀନତା ପରେ ଏକ ପ୍ରଚେଷ୍ଟା ହୋଇଥିଲା । ତାଙ୍କ ବିଷୟରେ ଯାହା ଥିଲା

କାଗଜ ପତ୍ର, ଐତିହାସିକ ପ୍ରମାଣ ତାକୁ ଧ୍ୱଂସ କରିବାକୁ ସେମାନେ ଚେଷ୍ଟା କଲେ । ଏ କଥା ମୁଁ ବହୁ ଯାଗାରେ କହିଛି । ସେଥିରୁ ଯାହା କିଛି ଉଦ୍ଧାର କରି ପାଇଲି, ଦେଖିଲି ଯେ ଏହା ଏକ ଆହ୍ୱାନ– Challange ଏବଂ ସେଥିପାଇଁ "ଶତାବ୍ଦୀର ସୂର୍ଯ୍ୟ" ଲେଖିଲି, ତାପରେ 'କୁଳବୃଦ୍ଧ' । ତାପରେ ଦେଖିଲି ତାଙ୍କର ଯାହା ସାଧନା, ତ୍ୟାଗ ସମଗ୍ର ଭରତରେ ସେପରି କେହି କରି ନାହାନ୍ତି । National Book Trust ଦ୍ୱାରା ଇଂରାଜୀରେ ମଧ୍ୟ ଏ ବିଷୟରେ ଲେଖିଲି । ଏହା ବହୁ ଆଦୃତ ହୋଇଛି । ସ୍ୱାଧୀନତା ପରେ ଯେଉଁ-ମାନେ କ୍ଷମତାକୁ ଆସିଲେ ଏ ପ୍ରକାର ବିରାଟ ବ୍ୟକ୍ତିତ୍ୱ ଆସିଲେ କ୍ଷତି ହେବ ଭାବି ଏପରି କଲେ । 'ଶତାବ୍ଦୀର ସୂର୍ଯ୍ୟ' ପାଇଁ ଦିନକୁ ଅଠର ଘଣ୍ଟା ପରିଶ୍ରମ କରୁଥିଲି, ମୋର Blood Pressure ହେଲା ସେଇଥି ପାଇଁ ।

● 'ନେତି ନେତି' କିମ୍ବା 'ଅନ୍ଧ ଦିଗନ୍ତ' ପାଇଁ କେମିତି ?

● 'ନେତି ନେତି' ଲେଖି ବଡ ଆନନ୍ଦ ପାଇଛି । ଏଇଟା ଗୋଟେ Relax moodର ରଚନା ।

ଏଇଟା ଆପଣ ବାଲ୍ୟ ସ୍ମୃତି ସହିତ ଜଡ଼ିତ ବୋଲି କହିଛନ୍ତି ।

● ଯା' ବି ହେଉ ସେ ଉପନ୍ୟାସ ଲେଖାର ସମୟ ଥିଲା ଆନନ୍ଦର ମୁହୂର୍ତ୍ତ । ସେଟା ସରିଗଲା ପରେ ମୋତେ ଭରି ଦୁଃଖ ଲାଗିଲା, ଆନନ୍ଦ ଆଉ ବେଶି ସମୟ ରହନ୍ତା କି ? ପ୍ରାୟ ମୋର ଉପନ୍ୟାସ ଲେଖାର ପ୍ରେରଣା କେଉଁଠୁ ପାଏ ମୁଁ ବି ଜାଣି ନି । ଅନେକେ ଯେପରି ଭାବି ଚିନ୍ତି Synopsis କରି ଚିନ୍ତାକରି ଲେଖନ୍ତି ମୋର ଗପ ଉପନ୍ୟାସ ଲେଖିଲେ ମୁଁ ସେମିତି କରେନି ।

● ଏମିତି ବସନ୍ତି ଓ ଲେଖା ଆରମ୍ଭ କରନ୍ତି ?

● ନା, ତା' ଆଗରୁ ଯାଏ ଗୋଟେ ଅସ୍ଥିର ସମୟ, ଗୋଟେ ଉଦ୍‌ବେଗର ସମୟ ତା'ପରେ ଆସେ ଗୋଟେ ପ୍ରେରଣା । 'ନୀଳଶୈଳ' କ୍ଷେତ୍ରରେ ମୋତେ

ଯେପରି ଗୋଟେ କିଏ ନିର୍ଦ୍ଦେଶ ଦେଲା । ଦୃଶ୍ୟ ସବୁ ଦେଖୁଲା ପରି ମନେ ହେଲା । କୌଣସି ଗୋଟିଏ ବିଷୟ ଲେଖିବା ପାଇଁ Challange ନପାଇଲେ ମୁଁ ଲେଖି ପାରେ ନାହିଁ । 'ଅଂଧ ଦିଗନ୍ତ' ସଂପର୍କରେ ମୁଁ 'ପଥ ଓ ପୃଥିବୀ' ରେ ଲେଖିଛି, କି ପ୍ରକାର ଭାବରେ ତାଙ୍କ ସହିତ ମୋର ଦେଖା ହୋଇଥିଲା । ମୁଁ ତାଙ୍କ ଘରେ ଗୋଟିଏ ରାତି ରହିଥିଲି । ସକାଳୁ ଯେତେବେଳେ ମୁଁ ତାଙ୍କ ଠାରୁ ବିଦାୟ ନିଏ, ସେ ତାଙ୍କ ପିଠିରୁ ଗାମୁଛାଟା କାଢିଦେଲେ × × × × । ମୋ ଜୀବନ ଓ ମୋ ସଗ୍ରାମରୁ ମୁଁ ପ୍ରେରଣା ପାଇଛି ସବୁ କିଛି ଲେଖିବା ପାଇଁ ।

● ଓଡ଼ିଆ ଉପନ୍ୟାସର ଶହେ ବର୍ଷ ପୂରିଗଲା ବୋଲି ଏସବୁ କଥାବାର୍ତ୍ତା ବହୁ ଭାବରେ, ବହୁ କାହାଣୀ କୁହାଯାଉଛି । ଆପଣ କ'ଣ କିଛି କାହାଣୀ ଅନୁକ୍ତ ରହିଗଲା ବୋଲି ମନେ କରୁଛନ୍ତି ?

● ବହୁ ବର୍ଷ ତଳେ ମୁଁ ଜଣେ ପ୍ରତିଭବାନ୍ ଔପନ୍ୟାସିକଂକ ସାକ୍ଷାତ ପାଇଥିଲି ତାଙ୍କର 'ଖମାରୀ' ଉପନ୍ୟାସ ମାଧ୍ୟମରେ । ତା'ର ଲେଖକ ହେଉଛନ୍ତି ଯମେଶ୍ୱର ତ୍ରିପାଠୀ । 'ଖମାରୀ' ଟା ପଢି ସାରିଲା ପରେ ସେ ଲେଖକ କେଉଁଠି, ତାଙ୍କୁ ଦେଖିବି ଓ ଆଲିଂଗନ କରିବି ବୋଲି ମୁଁ ବିହ୍ୱଳିତ ହୋଇ ପଡ଼ିଲି । ମୋତେ କିଏ କହିଲେ, ସେ ଆଠଗଡରେ । ମୁଁ ଆଠଗଡ ଯାଇଥିଲି । ତାପରେ ତାଙ୍କର ଦ୍ୱିତୀୟ ଉପନ୍ୟାସ ଦେଖିଲି 'ଗଡତିଆ' । କିନ୍ତୁ 'ଗଡତିଆ'ରେ ସେ ସଫଳତା ନାହିଁ । କିନ୍ତୁ 'ଖମାରୀ' ଓ 'ଗଡତିଆ' ଦୁଇଟା ହେଉଛି ଅସାଧାରଣ ଉପନ୍ୟାସ । ସମ୍ବଲପୁରୀ ଭାଷା ଓ ଗଡଜାତ ଅଂଚଳର ଯେଉଁମାନେ ପଡ଼ ତୋଳନ୍ତି ତାଙ୍କ ଜୀବନକୁ ଏଠିରେ ସ୍ଥାନ ଦେଇଛନ୍ତି କିନ୍ତୁ ସେ ସବୁ ସମ୍ପର୍କରେ ପଶ୍ଚିମ ଓଡ଼ିଶାର ଲେଖକମାନେ କାହିଁକି ଯେ ଲେଖୁ ନାହାନ୍ତି ?

● କେତେକ ଯେଉଁ ଆଂଚଳିକ ଉପନ୍ୟାସ କହନ୍ତି ?

● ନା, ପୃଥିବୀର ସବୁ ବଡ ବଡ ଉପନ୍ୟାସ ହେଉଛି ଆଂଚଳିକ ଉପନ୍ୟାସ ।

ଗୋପୀନାଥ ମହାନ୍ତି ଯେଉଁ 'ପରଜା', 'ଅମୃତର ସନ୍ତାନ' ତା'ପରେ ସେମିତି କେହି ଆଉ ଲେଖିଲେ ନି । କ'ଣ ସେ ସମୁଦ୍ର କୂଳବର୍ତ୍ତୀ କେଉଁଟମାନଂକ ବିଷୟରେ କେହି ତ ଲେଖିଲେ ନି ?

● 'ସାମୁଦ୍ରିକ' ବୋଲି ଗଣେଶ୍ୱର ମିଶ୍ର ଉପନ୍ୟାସଟିଏ ଲେଖିଛନ୍ତି ।

● ନା, ସେ କିଛି ହୋଇନି । ସେ ନୋଳିଆମାନଂକ ଉପରେ ଲେଖିଛନ୍ତି । ଓଡ଼ିଶାରେ କିଛି– ସେମିତି କିଛି ଲେଖା ହୋଇନି, କାହ୍ନୁବାବୁ ଲେଖିଛନ୍ତି ଗାଁ ଗହଳର ଚିତ୍ର । ବାସ୍ ଏତିକି ତ । ପ୍ରେମ ଆଉ ବିରହକୁ ନେଇ ବାକି ସବୁ ଉପନ୍ୟାସ । ଏ ଶହେ ବର୍ଷ ଭିତରେ ଅନେକ ସମୃଦ୍ଧି ହୋଇଛି ସତକଥା, ଗର୍ବ କରିବା କଥା ତା' ସତ୍ତ୍ୱେ ଆମ୍ଭମାନଂକ ଅପେକ୍ଷା ଆହୁରି ଶକ୍ତିଶାଳୀ ଔପନ୍ୟାସିକମାନ'କ ଦରକାର ରହିଛି ।

● ଏ ଗଳ୍ପ କଥାବସ୍ତୁ ଦୃଷ୍ଟିରୁ, କିଛି ଶୈଳ୍ପିକ ବିଫଳତା ବି ରହିଛି କି ?

● ଶୈଳ୍ପିକ–ସଫଳତା, ବିଫଳତା କହିଲେ ଆମେ ଗୋଟିଏ ଯୁଗର ମୂଲ୍ୟ–ବୋଧରେ ଆଲୋଚନା କରୁଛୁ । ଆମେ ଆଜି ୧୯୮୭ ମସିହାରେ Continental literature ପଢି ତା' ଶୈଳ୍ପିକ ଦିଗ ଦେଖି ଆମ ଉପନ୍ୟାସ-ମାନଙ୍କରେ ସେଇ ଢାଞ୍ଚା ନାହିଁ । ଆଉ ଅନୁଭବ କରୁଛୁ ଆମେ ଅନେକ ପଛରେ ପଡ଼ିଛୁ, କିନ୍ତୁ ମୋର ମନେହୁଏ ଲେଖକର ଧାରଣା ହେବା ଉଚିତ ନୁହେଁ, ଆଂଗିକର ଉତ୍କର୍ଷ ହିଁ ସାହିତ୍ୟର ଉତ୍କର୍ଷ । ଆଜି ଖାଲି ପ୍ରୟୋଗବାଦ– Experimentation ନାଁରେ ଏଠୁ ସେଠୁ ଗୁଡାଏ ଆଣି ଏକାଠି କରିଦେଲେ ସାହିତ୍ୟ ହୁଏ ନି । ସାହିତ୍ୟର ଆତ୍ମା ହେଉଛି ବଡ କଥା, ତାର ବିଷୟବସ୍ତୁ, ତାର ସୌନ୍ଦର୍ଯ୍ୟ ଏବଂ ସେଇଥି ପାଇଁ ଅନ୍ୟାନ୍ୟ Classic ଉପନ୍ୟାସର ଶିଳ୍ପ ସିଦ୍ଧିଠାରୁ ବିଷୟବସ୍ତୁର ଗୁରୁତ୍ୱ ବେଶି । ଓଡ଼ିଆ ଉପନ୍ୟାସର ବଡ ଅସୁବିଧା, ନୂଆ କିଛି ତା'ର ବକ୍ତବ୍ୟ ନାହିଁ ।

● ଆପଣଂକ ଉପନ୍ୟାସରେ ଆମେ ହାସ୍ୟ ବ୍ୟଂଗର ଅଭାବ ଲକ୍ଷ୍ୟ କରୁ ।

● ନା, ମୁଁ ହାସ୍ୟରସର ବିଶେଷ ଚର୍ଚ୍ଚା କରିନି । କିନ୍ତୁ ମୋର ବ୍ୟକ୍ତିଗତ ଜୀବନରେ ସେମିତି ନୁହେଁ ।

● ଆପଣଂକ ସେଲ୍‌ଫ୍‌ରେ 'Hundred years of solitude' ଦେଖିଲୁ । ଆପଣ ସତ୍ୟକୁ ସତ୍ୟ ଭବରେ ହିଁ ଭଲ ପାଆନ୍ତି, ଉପସ୍ଥାପିତ ବି କରନ୍ତି । ମାର୍କେଜ୍ କିନ୍ତୁ Fantasy ର Master । ତାଙ୍କ ବିଷୟରେ କିଛି କହିବେ କି ?

ସ୍ପେନିସ୍‌ରୁ ଯେତେବେଳେ ଇଂରାଜୀରେ ଅନୂଦିତ ହେଲା ଦଶ ବର୍ଷ ପରେ ସେତେବେଳେ ମୁଁ କିଣିଥିଲି । ଲାଟିନ୍ ଆମେରିକେନ୍ ଲେଖକମାନଂକର Fantasyକୁ ସେମାନେ କହୁଛନ୍ତି 'Black Humour'. ଏସବୁ ଭିତରେ ତାଙ୍କର Dictatorship ବିରୁଦ୍ଧରେ ଯେଉଁ ସଂଗ୍ରାମ ତାହା ହେଉଛି ତାର ବିଷୟବସ୍ତୁ । ମାର୍କେଜ୍ ମତେ କାହିଁ impress କଲାନି ।

● ଏମିତି ନୂଆ କିଛି ଓଡ଼ିଆରେ ଲେଖାଯାଇ ପାରନ୍ତାନି ?

● ଯେଉଁମାନେ ଲେଖୁଛନ୍ତି, ସେମାନେ ସରକାରୀ କର୍ମଚାରୀ କିମ୍ବା କଲେଜର ଅଧ୍ୟାପକ । ସେମାନେ ଏକ ବନ୍ଧନ ଭିତରେ ହିଁ ଅଛନ୍ତି । ତାକୁ ଅତିକ୍ରମ କରି ଲେଖିପାରୁ ନାହାନ୍ତି । କାରଣ ମୁଁ ଯେଉଁ 'ଅଂଧ ଦିଗନ୍ତ' ଲେଖିଲି ତା'ପରେ ଆଉ ରାଜନୀତିକ ଉପନ୍ୟାସ କାହିଁ ?

● ହରେକୃଷ୍ଣ ମହତାବଂକ '୧୯୭୫', 'ଯୁଗଧର୍ମ' ?

● ନା, ସେ ସବୁ ରଚନା । ଅବଶ୍ୟ ସେ ଜଣେ ନମସ୍ୟ ଲେଖକ, ଆମର ବୟୋଜ୍ୟେଷ୍ଠ । ଅବଶ୍ୟ ସେ କେତେକ ରାଜନୈତିକ ଉପନ୍ୟାସ ଲେଖିଛନ୍ତି 'ପ୍ରତିଭା', 'ନୂତନ ଧର୍ମ' । କିନ୍ତୁ '୧୯୭୫'କୁ ତ ଆମେ ଏକ ଉପନ୍ୟାସ ବୋଲି କହିବାନି ତାର ଗୋଟିଏ ବୋଲି dimension । ଯେ ଲେଖିବ ତା'ର ଗୋଟିଏ ରାଜନୈତିକ ଅନୁଭୂତି ରହିବା କଥା ।

● ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସରେ ଆମେ କିଛି Fantasy ଲକ୍ଷ୍ୟ କରୁ, ଯଦିଓ ତାଙ୍କ ଉପନ୍ୟାସକୁ ରାଜନୈତିକ ଉପନ୍ୟାସ କହି ପାରିବା ନାହିଁ । Fantasy ଭିତରେ ହିଁ ସେ ରାଜନୈତିକ କଥା କହିବାକୁ ଚାହାନ୍ତି ।

● କାହିଁକିନା ସେ ସ୍ପଷ୍ଟ ଭାବରେ କହି ପାରିବେ ନାହିଁ । ଯେଉଁଟା ମାର୍କେ୍ଜ୍‌ଙ୍କର ଅସୁବିଧା, ଶାନ୍ତନୁ ବାବୁଙ୍କର ବି ଅଛି । ତଥାପି ତା' ଭିତରେ ସେ ଗୋଟେ ବାଟ ଖୋଜିଛନ୍ତି Communicate କରିବା ପାଇଁ । ଶାନ୍ତନୁ ବାବୁଙ୍କ ଗଳ୍ପ ଉପନ୍ୟାସରେ ପ୍ରଚୁର Fantasy ଅଛି । କେତେକ ଗଳ୍ପରେ ଖୁବ୍ ଶକ୍ତିଶାଳୀ ଭାବରେ ତାହା ପ୍ରକାଶ କରିଛନ୍ତି- ସେ ଜଣେ powerful Story teller. 'ନରକିନ୍ନର' ଟାକୁ ମୁଁ ପ୍ରଥମେ rev ew କରିଥିଲି– 'କଳିଂଗ' ପତ୍ରିକାରେ । ଲେଖିଥିଲି ଏଟା ଗୋଟେ ଅସାମାନ୍ୟ ଉପନ୍ୟାସ ।

● ଆପଣଙ୍କ ଉପନ୍ୟାସ ଶୈଳୀ ସମ୍ପର୍କରେ କେତେକ କହନ୍ତି ଯେ 'ସାମ୍ବାଦିକତା' ରହିଛି ।

● ରହିଛି ତ । ମୋର ଜୀବିକା ଓ ଜୀବନରେ ମୁଁ ଚେଷ୍ଟା କରିଛି ସାହିତ୍ୟକୁ ସାମ୍ବାଦିକତାର ନିକଟବର୍ତ୍ତୀ କରିବା ଓ ସାମ୍ବାଦିକତାକୁ ସାହିତ୍ୟର ନିକଟବର୍ତ୍ତୀ କରିବା । ଏହାଦ୍ୱାରା ଓଡ଼ିଆ ସାହିତ୍ୟର ଉନ୍ନତିହିଁ ହୋଇଛି– ସମୃଦ୍ଧ ହୋଇଛି- ସିନା ଦରିଦ୍ର ହୋଇନି ।

● ଆପଣ ଆଉ କାହାର ଲେଖା ଭଲ ପାଆନ୍ତି ?

● ଟଲଷ୍ଟୟ, ସୋଲକୋଭ୍, ଦସ୍ତୋଭସ୍କି, ଆଇଜେନ୍ ବର୍ଗ; ଫ୍ରେଞ୍ଚ୍‌ରେ ରେମାର୍ଭୋଲାଁ; ଆମେରିକାନ୍‌ରେ ହେମିଂୱେ, ମିଲର୍; ରବୀନ୍ଦ୍ରନାଥ, ଶରତଚନ୍ଦ୍ର, ନଜରୁଲ ଇସ୍‌ଲାମ୍, ତାରାଶଙ୍କର; ପ୍ରେମଚାନ୍ଦଙ୍କର କେତେକ ଉପନ୍ୟାସର ଓଡ଼ିଆ ଅନୁବାଦ ମୁଁ ପଢ଼ିଛି– ହିନ୍ଦୀ ମୁଁ ପଢ଼ିପାରେ ନି । ଓଡ଼ିଆରେ 'ମାଟିର ମଣିଷ', କାହ୍ନୁବାବୁଂକ କେତେକ ଉପନ୍ୟାସ– 'ଶାସ୍ତି' । ଏମିତି ଅନେକ ।

● ଏହି Audio-visual media ଯୁଗରେ ଉପନ୍ୟାସ ପାଠକମାନଙ୍କଠାରୁ ଦୂରେଇ ଯାଉଛି କି ?

● ମୋର ବିଶ୍ୱାସ ଏହି Mass media ସୃଜନଧର୍ମୀ ସାହିତ୍ୟ ଆଗରେ ଯେଉଁ ଆହ୍ୱାନ ଆଣିଛି ତା' ଭିତରୁ ଏକ ବଳିଷ୍ଠତମ ସାହିତ୍ୟ ଜନ୍ମ ନେବ । ଆମ ସାଂସ୍କୃତିକ ମୂଲ୍ୟବୋଧରେ ଯେଉଁ ଅବକ୍ଷୟ ଦେଖା ଦେଇଛି ତାହା ତ ଆଉ ଚିରସ୍ଥାୟୀ ହୋଇ ରହିବ ନାହିଁ । ପାଶ୍ଚାତ୍ୟରେ ବି ସେମାନେ ଆଶାବାଦୀ ଯେ ଏକ ବଳିଷ୍ଠ ସାହିତ୍ୟ ଅଦୂର ଭବିଷ୍ୟତରେ ଜନ୍ମନେବ ।

● ସେ ନୂଆ ସାହିତ୍ୟର ରୂପ କେମିତି ହେବ ବୋଲି ଆପଣ ଭାବୁଛନ୍ତି ?

● ଆଜିର ବିଡମ୍ବନା, ମୂଲ୍ୟବୋଧର ଅବକ୍ଷୟରୁ ଯେଉଁ ଶକ୍ତିଶାଳୀ ଲେଖକମାନେ ବାହାରିବେ ସେମାନେ ହିଁ ଏହା ସ୍ଥିର କରିବେ ।

● ଆପଣଂକ ଉପନ୍ୟାସ ଲେଖାର ଐକ୍ୟତାନ କ'ଣ ? ସମସ୍ତ ଉପନ୍ୟାସରେ ଆପଣ କ'ଣ ଉପସ୍ଥାପନ କରିବାକୁ ଚାହିଁଛନ୍ତି ?

● ମୋ ନିଜ ସମ୍ପର୍କରେ ବି ମୁଁ ଆଲୋଚନା ସମାଲୋଚନା ମନରେ କରିଛି । ମତେ ପାଠକମାନେ ଠିକ୍ ଭାବରେ ବୁଝିପାରି ନାହାନ୍ତି । ଏଇଟା ପାଠକମାନଂକ ଆଦୌ ଦୋଷ ନୁହେଁ । ମୁଁ ହେଉଛି ଭବିଷ୍ୟତ କାଳର ଲେଖକ ଯାହାକି ଇଂରଜୀରେ କହନ୍ତି– I am ahead of time. ସମୟର ମୁଁ ହେଉଛି ଅଗ୍ରଗାମୀ । ମୋର ଗୋଟିଏ କ୍ଷୁଦ୍ରଗଳ୍ପ "ଭାରତ ଆବିଷ୍କାର", ସେତେବେଳେ କୌଣସି ଓଡ଼ିଆ ପତ୍ରିକା ଛପେଇଲେ ନାହିଁ । ବଂଗଳା ଅନୁବାଦ ହୋଇ ତାହା ପ୍ରଥମେ ବାହାରିଲା । ତା'ପରେ ଦୁଇ ତିନିଟା ଗଳ୍ପ ବାହାରିଲା । ତା'ପରେ ଯାଇ ଓଡ଼ିଆ ସମ୍ପାଦକମାନେ ମୋତେ ଚିହ୍ନିଲେ । ମୁଁ ଯେଉଁ ଐତିହାସିକ ଉପନ୍ୟାସ ଲେଖିଲି କାହିଁକି ଲେଖିଲି ? ମୁଁ ହେଉଛି ଆଧୁନିକ ସମୟର ସମାଜ ପ୍ରତି ବୀତସ୍ପୃହ । ସମକାଳୀନ ଜୀବନରେ ଅଛି କେବଳ ପେଟ ପାଟଣାର କଥା । ଏଣୁ ମୁଁ ଅତୀତକୁ ଫେରିଗଲି । ତେବେ ବି ମୋତେ ଠିକ୍ ଭାବରେ ନବୁଝି ପାଠକମାନେ ଯେଉଁ ଅନାବିଳ ଶ୍ରଦ୍ଧା ଢାଳି ଦେଇଛନ୍ତି ସେଇଥି ପାଇଁ ମୁଁ କୃତଜ୍ଞ । ଭବିଷ୍ୟତରେ ପାଠକ ମୋର ମୂଲ୍ୟାୟନ କରିବେ । ନିଧିଦାସର ସଂଗ୍ରାମ ଓ ବିଫଳତା– ଗୋଟିଏ ଦିଗ; ଅନ୍ୟ

ଦିଗଟି ହେଉଛି ମଣିଷର ସ୍ୱାଧୀନତା ପାଇଁ ସନାତନ ସଂଗ୍ରାମ । ମୋର ସବୁ ଉପନ୍ୟାସରେ ଏ ହେଉଛି ଗୋଟିଏ ନୂଆ କଥା । ମୋର ଚରିତ୍ରମାନେ ସମସ୍ତେ ହେଉଛନ୍ତି ନିଃସଂଗ । ମୋର ସମଗ୍ର ଉପନ୍ୟାସ ହେବ ଗୋଟିଏ ନିଃସଂଗ ବ୍ୟକ୍ତିର ସଂଗ୍ରାମର କାହାଣୀ । ସେ ନିଧିଦାସ ହୁଅନ୍ତୁ, ରାମଚନ୍ଦ୍ରଦେବ ହୁଅନ୍ତୁ ଅବା ପ୍ରତାପରୁଦ୍ର ଦେବ ହୁଅନ୍ତୁ ସମସ୍ତେ ନିଃସଂଗ ସଂଗ୍ରାମୀ । ମଣିଷର ଏଇ ଚିର ସଂଗ୍ରାମୀ ଭାବମୂର୍ତ୍ତି ମୋତେ ଆକୃଷ୍ଟ କରିଛି । ବୁଝିକି ହେଉ କି ନବୁଝିକି ହେଉ ପାଠକମାନେ ମତେ ଭଲ ପାଆନ୍ତି ।

● ଆପଣଙ୍କ ବିପକ୍ଷରେ ପାଠକ କିଛି ମନ୍ତବ୍ୟ ଦେଇଛନ୍ତି କି ?

● ଜଣେ ଆଲୋଚକ ଲେଖିଥିଲେ 'ସମାବେଶ' ପତ୍ରିକାରେ ଛଦ୍ମନାମରେ । ଏ ବିଷୟରେ ମୋର କିଛି କହିବାର ନାହିଁ, କାହିଁକି ନା ଲେଖାଟା ଯେ ପର୍ଯ୍ୟନ୍ତ ମୋର ଟେବୁଲରେ ଅପ୍ରକାଶିତ ଅଛି, ସେ ପର୍ଯ୍ୟନ୍ତ ମୋର । ଥରେ ପ୍ରକାଶିତ ହୋଇଗଲା ପରେ ତାହା ପାଠକ ସମାଜର । ପାଠକ ସମାଜ ତ କାହାର ବଶମ୍ବଦ ନୁହନ୍ତି, ସେମାନଙ୍କର ସାଧାରଣ ବିଚାର ଅଛି, ଚିନ୍ତା ଅଛି, ସେମାନେ ନିନ୍ଦା ଓ ପ୍ରଶଂସା ଯାହା କରି ପାରନ୍ତି । ମୁଁ ବରଂ ସମାଲୋଚନାକୁ ସବୁବେଳେ ଆମନ୍ତ୍ରଣ କରେ । କିନ୍ତୁ ଈର୍ଷାନ୍ୱିତ ସମାଲୋଚନା ହେଲେ ମୁଁ ଦୁଃଖିତ ହୁଏ । ସମୃଦ୍ଧ ସାହିତ୍ୟ ସୃଷ୍ଟି ପାଇଁ ସମାଲୋଚନା ହେବା ଉଚିତ, ଓଡ଼ିଆରେ ଯାହାର ଏକାନ୍ତ ଅଭାବ ।

● ଓଡ଼ିଆ ଉପନ୍ୟାସ ସାହିତ୍ୟର ସମାଲୋଚନା ସମ୍ପର୍କରେ ଆପଣ କିଛି କହିବେକି ? ଆପଣ ଏକାଧାରରେ ଜଣେ ଔପନ୍ୟାସିକ ଓ ସମାଲୋଚକ ।

● ମୁଁ ଜଣେ ପାଠକ ଓ ସମଧର୍ମୀ ଲେଖକ ଭାବରେ ଶହେ ବର୍ଷର ଇତିହାସ ଯେତେବେଳେ ପର୍ଯ୍ୟାଲୋଚନା କରିଛି, ସେତେବେଳେ ମୁଁ ଦେଖୁଛି ୧୮୮୮ ମସିହାରେ ଉମେଶ ଚନ୍ଦ୍ର ସରକାରଂକ 'ପଦ୍ମମାଳୀ' ଉପନ୍ୟାସ ବାହାରିଲା, ଏ ହେଉଛି ଗୋଟିଏ ଐତିହାସିକ କାହାଣୀ । ତା'ପୂର୍ବରୁ 'ସୌଦାମିନୀ' ଆଦି କେତେକ ଅପୂର୍ଣ୍ଣ ଉପନ୍ୟାସ ବାହାରିଥିଲା ସେ ସବୁ କିଛି ନୁହେଁ । ଏହା ପରେ ବିରାଟ ପରିବର୍ତ୍ତନ ଆଣିଲେ ଅନନ୍ୟ ପ୍ରତିଭାବାନ୍ ଫକୀରମୋହନ । ସମଗ୍ର ଭାରତୀୟ ସାହିତ୍ୟରେ ଏହା ବିରଳ । ଏମିତି ଗଢ଼ି ଚାଲିଲା ଓଡ଼ିଆ ଉପନ୍ୟାସ ସାହିତ୍ୟର ପରଂପରା । ଏ ସଂପର୍କରେ ଆଲୋଚନା କରିଥିବା

ସମାଲୋଚକମାନଂକର ସବୁ ଲେଖା ଆଲୋଚନାମୂଳକ । ସମାଲୋଚନା ହେଉଛି ଗୋଟିଏ ଲେଖକକୁ ଆବିଷ୍କାର କରିବା ଓ ସେ କେଉଁ ପରିସ୍ଥିତିରେ କାହିଁକି ଏ ସବୁ ଲେଖିଲେ ଏହା ହେଉଛି ସମାଲୋଚନା । ଯେମିତି "ଫକୀର ମୋହନ ସମୀକ୍ଷା" ରେ ମୁଁ ଚେଷ୍ଟା କରିଛି । ସମାଲୋଚନା ହେଲା **sense of creation** ସହିତ ଏକାତ୍ମ ହୋଇ ତା'ର ଉତ୍କର୍ଷ, ଅପକର୍ଷ ନୁହେଁ ତାର ଆତ୍ମାକୁ ଆବିଷ୍କାର କରିବା । ଲେଖକର ଅପୂର୍ଣ୍ଣତାକୁ ଯିଏ ସମାଲୋଚନାରେ ପୂର୍ଣ୍ଣ କରିପାରେ ସେ ହିଁ ପ୍ରକୃତ ସମାଲୋଚକ ।

● ଓଡ଼ିଆ ଉପନ୍ୟାସର ଭବିଷ୍ୟତ ସମ୍ପର୍କରେ ଆପଣ କିଛି କହିବେ କି ?

● ଓଡ଼ିଆ ଉପନ୍ୟାସରେ କ୍ରମେ ଶକ୍ତିଶାଳୀ ଔପନ୍ୟାସିକଂକ ଉନ୍ମେଷ ଘଟୁଛି, ସେମାନଂକର ସାଧନା, ଆନ୍ତରିକତା ଓ ପରିଶେଷରେ ସେମାନଂକର **honesty** ଦରକାର । ସେମାନେ ନିଜକୁ ନିଷ୍କମ୍ପ ଭାବରେ ପ୍ରକାଶ କରନ୍ତୁ କ୍ଷତି ଆସୁ ବା ଲାଭ ଆସୁ । ସେମାନଂକର ସତ୍ୟ ପ୍ରତି ପ୍ରତିବଦ୍ଧତା ରହୁ । ☐

## କଥା ପନ୍ଥା

ମୋର ସମସ୍ତ ଲେଖାର ପୁରୋଭାଗ ଓ ପୃଷ୍ଠଭୂମିରେ ରହିଛି ଏହି ବ୍ୟକ୍ତି– ଯେ ଶୁଭ୍ର, ସୁନ୍ଦର, ମୁକ୍ତ, ଅନନ୍ୟ ସାଧାରଣ ଓ ଅମଳିନ । ପରିସ୍ଥିତିର ପ୍ରଭାବ ତାର ବ୍ୟକ୍ତିତ୍ୱକୁ ମଳିନ କରେ ନାହିଁ । ପରିସ୍ଥିତି ସହିତ ସେ କ୍ଷୁଧାରେ, ଅନାହାରରେ, ଶତ ନିପୀଡନ, ଲାଞ୍ଛନା, ଦୁର୍ଗତି ପୁଣି ସ୍ଖଳନ ମଧ୍ୟରେ ସୁଦ୍ଧା ସଂଗ୍ରାମକରି ଆସିଛି । ଯେଉଁଠି ନପାରିଛି, ସେଠି ହୋଇଛି ସେ ନୈରାଶ୍ୟବାଦୀ । ସେ ଅବଶ୍ୟ କୌଣସି ଝଣ୍ଡା ଉଠାଇନାହିଁ କି ଶସ୍ତା ସ୍ଲୋଗାନ ଦେଇନାହିଁ । କାରଣ ଝଣ୍ଡା ବା ସ୍ଲୋଗାନ ସମାଧାନ ନୁହେଁ । ସମାଧାନର ଏକ ପନ୍ଥା କେଜାଣି ହୋଇପାରେ । କିନ୍ତୁ ସେ ସମାଧାନର ପରିପୂର୍ଣ୍ଣ ସ୍ୱରୂପ କଣ ? ତାହାହିଁ ଏଯୁଗର ସବୁଠୁ ଦୁର୍ବୋଧ୍ୟ ପ୍ରଶ୍ନ ।

☐ ସୁରେନ୍ଦ୍ର ମହାନ୍ତି
ମୁଁ କାହିଁକି ଲେଖେ ।

## ଚରିତ୍ର ଅନ୍ୱେଷଣ

ଜଣେ ଲେଖକ ଯଦି ନିଜକୁ ନାୟକ କରି, ତା ଜୀବନର ଦୈନନ୍ଦିନ ଅନୁଭୂତିକୁ ଗଳ୍ପ ଆକାରରେ ଲେଖିବାକୁ ଚେଷ୍ଟା କରିବ, ତା'ହେଲେ ସେଲେ ଗଳ୍ପ ଲେଖିବାପାଇଁ ତାର ଶାରୀରିକ କ୍ଷମତା ସୁଦ୍ଧା ରହିବ ନାହିଁ । କିନ୍ତୁ ସେଥିପାଇଁ ପୁରୁଣା ଆଙ୍ଗିକ ଓ ଶୈଳୀ ଚଳିବ ନାହିଁ । ଆଙ୍ଗିକ ଓ ଶୈଳୀ, କଳା ସୃଷ୍ଟିରେ ଅବଶ୍ୟ ବଡ କଥା ନୁହେଁ; ବଡ କଥା ହେଉଛି, ତାହାର ଆତ୍ମା । ତଥାପି ପୁରାତନ ଆଙ୍ଗିକ ଓ ଶୈଳୀରେ ନୂତନ ବକ୍ତବ୍ୟ ଠିକ୍ ଉତୁରେ ନାହିଁ । ଏହି ନୂତନର ସନ୍ଧାନରେ କିନ୍ତୁ, ଲେଖକକୁ ଚେତନ-ଜଗତରୁ ତାର ଅବଚେତନକୁ ଓହ୍ଲାଇ, ନିଭୃତ ମନର ଜଗତକୁ ଫେରି ଯିବାକୁ ହେବ; ଯେଉଁଠି କୋଳାହଳ ନାହିଁ....... ଚିତ୍କାର ନାହିଁ;........ ଆଲୋକ ନାହିଁ ........ସୂର୍ଯ୍ୟ ନାହିଁ– ସବୁ କୁହୁଡ଼ି ବୋଳା ! ତା'ରି ଭିତରେ ଯେଉଁମାନେ ଛାଇଛଇଆ ସିଲହୋଟ ପରି ଦିଶୁଛନ୍ତି, ସେହିମାନେ ହେବେ ତାର ଚରିତ୍ର ।

☐ ସୁରେନ୍ଦ୍ର ମହାନ୍ତି

ପଥ ଓ ପୃଥିବୀ ।

## ମଣିଷ ଚେତନାକୁ କ୍ଷୁଦ୍ର ପରିବେଷ୍ଟନୀ ମଧ୍ୟରୁ ଊର୍ଦ୍ଧ୍ୱକୁ ନେଇଯିବା ସାହିତ୍ୟର ଲକ୍ଷ୍ୟ

☐

ବହୁଦିନ ବିତିଯାଇଛି, ତାଙ୍କର ଶେଷ ଉପନ୍ୟାସ ପ୍ରକାଶ ପାଇବା ପରେ । ଓଡ଼ିଆ ସାହିତ୍ୟରେ ସେ ଏବେ ଜଣେ ପ୍ରତିଷ୍ଠିତ ଗାଳ୍ପିକ । କେହି କେହି କହନ୍ତି :'ଅଭିଶପ୍ତ ଗନ୍ଧର୍ବ' ଏକ ଉପନ୍ୟାସ ନୁହେଁ ତ ଆଉ କଣ ? ଆମେ ଏଥିରେ ସନ୍ତୁଷ୍ଟ ନୋହୁଁ । ଦୁଇଟି ଦଶକ ପରେ, ବହୁ ଅନୁଭବ ସ୍ନାତ ମହାପାତ୍ର ନୀଳମଣି ସାହୁଙ୍କଠାରୁ ପାଠକ ଦାବୀକରେ ନୂଆଁ ଏକ ଉପନ୍ୟାସ ।

☐

● 'ଧଉ ଓ ଧାଉ'ର ମୁଖବଂଧରେ ଆପଣ କହିଥିଲେ ଗଳ୍ପ ଲେଖିବା ମୂର୍ତ୍ତିଗଢିବା ପରି ଆଉ ଉପନ୍ୟାସ ଲେଖିବା ମନ୍ଦିର ତୋଳିବା ପରି । ଆପଣ ଯିଏ ମନ୍ଦିର ତୋଳୁଥିଲେ ଏବେ କେବଳ ମୂର୍ତ୍ତିଗଢିଲେ କାହିଁକି ?

● 'ତାମସୀ ରାଧା' ଲେଖିଲାପରେ ମୁଁ ଏପରି କିଛି Critic ପାଇଲି ନାହିଁ ଯେଉଁ-ମାନେକି ମୋତେ ଉତ୍ସାହିତ କରିଥାନ୍ତେ । ମୁଁ ତ popular novel ଲେଖୁ ନଥିଲି । ଯଦିଓ 'ତାମସୀ ରାଧା' ଆଉ ଥରେ ଛାପା ହେଲ । ପରେ ଏବେ ବଡ ବଡ Critic ମାନଙ୍କର ଉତ୍ସାହ ପାଇଛି । ତାଛଡା ଯେଉଁ ସମୟ ମୁଁ ପାଆନ୍ତି ଉପନ୍ୟାସ ଲେଖିବା ପାଇଁ ସେମିତି ସମୟ ପାଇଲି ନାହିଁ ।

● ପୁଣି ସେଥିରେ ଲେଖିଥିଲେ ଷଷ୍ଠ ଦଶକରେ ଆସିଥିବା ଶିଳ୍ପ ସଭ୍ୟତା କଥା ସାହିତ୍ୟକୁ ସମୃଦ୍ଧ କରିବ; ଅଥଚ ତାପରେ ଆପଣ ପଲ୍ଲୀ ସ୍ମୃତିକୁ ନେଇ ଗପ ଲେଖିଲେ ସିନା ଉପନ୍ୟାସ ଲେଖିଲେ ନାହିଁ । ପିଲା ଦିନ ଓ ଗାଁ ଆଡକୁ କିପରି ଆପଣ ମୁହାଁଇଲେ ?

● ମୁଁ ଯେତେବେଳେ 'ଅଭିଶପ୍ତ ଗନ୍ଧର୍ବ' ଲେଖିଲି, ମୋ ନିଜ ବିଷୟରେ କିଛି ଲେଖିବାକୁ ଇଚ୍ଛା ହେଲା । ତାକୁ ତୁମେ Autobiographical novel ବି କହିପାର (ଗୋପୀ ମହାନ୍ତିତ ଏହାକୁ Novel କହନ୍ତି) । ମୋ ଜୀବନର ଅନେକ ଅଭିଜ୍ଞତାର କଥା ମୁଁ ସାହିତ୍ୟରେ ଲେଖିନି; ଏୟା ଭାବୁଥିଲି । ଦିନେ ହଠାତ୍ ଯେମିତି ରାଧାନାଥ କହନ୍ତି– "ଧରନ୍ତି କଳ୍ପନା ନାମ ସେ ସୁନ୍ଦରୀ/ ବୀଣାପାଣିଙ୍କର ଚିର ସହଚରୀ/ସ୍ୱପ୍ନେ ଭାସି କାଳ ସ୍ରୋତ ପ୍ରତିଲୋମେ", ସେମିତି ମୋର କଳ୍ପନାଟା କାଳର ପ୍ରତିଲୋମକୁ ଭାସିଗଲା । ମୋର ସମଗ୍ର ବାଲ୍ୟକାଳଟାକୁ ବର୍ତ୍ତମାନ ବୟସରେ ମୁଁ ଅନୁଭବ କଲି । ସେ ଭାଷା ବି ସ୍ୱାଭାବିକ ଭାବରେ ଆସିଲା । ପୁଣି ମୋ ପିଲା ଦିନର ଅଭିଜ୍ଞତାକୁ ମୋ ଭିତରେ ଥିବା ବର୍ତ୍ତମାନର ଲୋକ ମୂଲ୍ୟାୟନ ବି କଲା । ମୁଁ ଠିକ୍ କରିଛି ପରେ ମୁଁ ଏହାର ଦୁଇଟି part ବି ଲେଖିବି– 'ଅଭିଶପ୍ତ ପ୍ରେମିକ' ଓ 'ଅଭିଶପ୍ତ ବୈରାଗ୍ୟ' । ବର୍ତ୍ତମାନ ସେ ଦୁଇଟି ବହିର theme କୁ ନେଇ ଦୁଇ ଚାରିଟା ଗପ ବି ଲେଖି ସାରିଛି । କିନ୍ତୁ ସେଇଟା ଆଉ ସେହି form ରେ ବାହାରିବ ନାହିଁ । ଆଉ ଗପ ଲେଖିବାପାଇଁ ମୋର ମନ ବି ନାହିଁ, ସ୍ୱପ୍ନ ବି ନାହିଁ ।

● ଆପଣ ଉପନ୍ୟାସ ଲେଖିଲାବେଳେ କେମିତି ଆରମ୍ଭ କରନ୍ତି, ମନେ କରନ୍ତୁ 'ଧାଗ ଓ ଧାରା' ?

● 'ଧାଗ ଓ ଧାରା' ଗୋଟିଏ Objective Novel । ପ୍ରତି ନୋଭେଲ୍ ପଛରେ ଗୋଟିଏ ପ୍ରେରଣା ଥାଏ । ଜୀବନସହ ବୁଝାମଣା । 'ଧାଗ ଓ ଧାରା' ଲେଖିଲା-ବେଳେ ମୁଁ ଗୋଟିଏ ନୈତିକ ପ୍ରେରଣା ଅନୁଭବ କରୁଥିଲି ଯେ ମଣିଷ ଭୁଲ-କରେ କିନ୍ତୁ ସେ ଭୁଲକୁ ସେ ସଜାଡ଼ି ନେଇପାରେ । ଏଇଟା ମୋର ନୈତିକ ଅବବୋଧ ହେଉଥିଲା । ଅବଶ୍ୟ 'ଧାଗ ଓ ଧାରା'ରେ ଚରିତ୍ର ଚିତ୍ରଣ ଅଛି । ଭିନ୍ନ ଭିନ୍ନ ପ୍ରକାର ଚରିତ୍ରର ସମାବେଶ ଘଟିଛି । କିନ୍ତୁ ସମସ୍ତେ ଯେପରି ମୋର ମନେ ହୁଅନ୍ତି ନୈତିକ ଦୃଷ୍ଟିକୋଣରୁ ତିଆରି ହୋଇଛନ୍ତି ।

● ତାର ମୂଳପ୍ରେରଣା ଆପଣ କେଉଁଠୁ ପାଇଲେ କିମ୍ବା କେଉଁ ଚରିତ୍ର ଆପଣଙ୍କ ମାନସ ଜଗତକୁ ପ୍ରଥମେ ଓହ୍ଲାଇ ଆସିଲା ?

● ମୂଳପ୍ରେରଣା ପ୍ରକୃତରେ ବୁଝିବାକୁ ଗଲେ ମୁଁ ଗୋଟିଏ ଘଟଣାରୁ ପାଇଲି । ମୋର ଜଣେ ବଂଧୁଙ୍କଠାରୁ ଶୁଣିଲି– ଅବଶ୍ୟ ସେ ନିଜେ କହିଛନ୍ତି, ତାଙ୍କର ଜଣେ ପରିଚିତ ଲୋକ ଗୋଟିଏ ଝିଅକୁ ଭଲ ପାଉଥିଲେ ଓ ପରେ ଫରେନ୍ ଗ୍ଲଲିଗଲେ । ଏକଥା ମୋତେ ବ୍ୟଥିତ କରିଥିଲା । ତାପରେ ଏପରି କେତେକ ଘଟଣା ଓ ଚରିତ୍ର ମୋର ମନେ ପଡ଼ିଗଲା । କହିବାକୁ ଗଲେ ପ୍ରଫେସର ଚୌଧୁରୀ ନା କଣ– ଜୟନ୍ତର ବାପ ଚରିତ୍ର ସହ ମୋର identification ହୋଇଗଲା । ଯଦି ମୋର ପୁଅ ଏମିତି କରିଥାନ୍ତା, ତାହେଲେ ମୁଁ ଯାହାସବୁ ଅନୁଭବ କରିଥାନ୍ତି, ମୁଁ ସେଇୟା କରିଥାନ୍ତି, ଉପନ୍ୟାସରେ ଯାହାସବୁ ଘଟିଛି । ତା ଛଡା ବି କେତେକ ଘଟଣା ଅଛି ଯେମିତି କଣ୍ଟ୍ରାକ୍ଟର ତାର ବଂଧୁ-ସେମିତି ଜଣେ ଚରିତ୍ର ସହ ମୋର ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କ ଜୀବନର ଅନେକ ଘଟଣା ଏଇ ଉପନ୍ୟାସରେ ଲିପିବଦ୍ଧ ହୋଇଯାଇଛି । କିନ୍ତୁ ମୂଳ ପ୍ରେରଣା ହେଉଛି ଗୋଟିଏ ନୈତିକ ଚେତନା । ମଣିଷ ତାର ପ୍ରକୃତି ବଶରେ କଣ କଣ କରିପକାଏ । କିନ୍ତୁ ଇଚ୍ଛାକଲେ ତାକୁ ପୁଣି ସଜାଡ଼ି ଦେଇ ପାରିବ, ଏଇଟାହିଁ ପ୍ରେରଣା ଥିଲା । କିନ୍ତୁ 'ତାମସୀ ରାଧା'ର ମୂଳ ପ୍ରେରଣା ଭିନ୍ନ ପ୍ରକାର । ତିନି ବର୍ଷର ବ୍ୟବଧାନରେ ଲେଖା ହେଲେବି ମୋ ଜୀବନର, ମୋ ଚେତନାର ଗୋଟିଏ ଅଧ୍ୟାୟ ଯେତେବେଳେ ଶେଷ ହୋଇଗଲା । 'ତାମସୀ ରାଧା'ରେ ମୁଁ ଦେଖେଇଛି ପ୍ରତ୍ୟେକ ମଣିଷ ଭିତରେ ଗୋଟିଏ ଉଚାଟପଣିଆ ଅଛି । ଯେଉଁ ଉଚାଟପଣିଆ ତାକୁ ଧାଇଁବାକୁ ପ୍ରବର୍ତ୍ତାଏ । ତା ଭିତରେ ଗୋଟିଏ passonate being ଅଛି । ଯିଏକି ତାକୁ ରଖେଇ ଦିଏ ନାହିଁ, ଯେମିତି ରାଧା ଛୁଟି ଗ୍ଲଲିଛନ୍ତି ସତ୍ୟ ପାଇବା ପାଇଁ କିମ୍ବା ପ୍ରେମ ପାଇବାପାଇଁ । ସେମିତି ମଣିଷମାନେ କିଛି ଗୋଟିଏ ପାଇବା ପାଇଁ ବ୍ୟାକୁଳ । କିନ୍ତୁ ତାକୁ pas onate ବା ତାମସୀ କହିବାର କାରଣ ହେଲା, ସବୁ ମଣିଷ ତ ସମାନ ନୁହଁନ୍ତି; ସମସ୍ତେ ତ ଠିକ୍ ବାଟରେ ଯାଆନ୍ତି ନାହିଁ । ପରେ ଯେତେବେଳେ ମୁଁ ଶ୍ରୀ ଅରବିନ୍ଦ ପଢ଼ିଲି, ମୁଁ ବୁଝିଲି ଆମ ଭିତରେ ଗୋଟିଏ ନିମ୍ନ ପ୍ରାଣସତ୍ତା ଅଛି । ନିମ୍ନ ପ୍ରାଣସତ୍ତାର ଅନେକ passion, ଅନେକ ଆବେଗ, ଅନେକ ପ୍ରବେଗ, ଅନେକ କାମନା । ଏହା ଆମକୁ ଉଚାଟ କରେ, ରଖେଇ ଦିଏନା । 'ତାମସୀ

ଗଧା'ର ଚରିତ୍ରସବୁ ଏପରି ଆବେଗ ପ୍ରବଣ । ଏମିତିକି ସାଧୁଚରଣ ସାଂସାରିକ ନିର୍ଲିପ୍ତତା ସତ୍ତ୍ୱେ ତାଙ୍କ ଭିତରେ ମଧ୍ୟ passion ରହିଛି । 'ତାମସୀ ଗଧା'-ରେ ବହୁବିଧ ଚରିତ୍ର ରହିଛନ୍ତି । ସମସ୍ତେ ନିଜ ବାଟେ ସ୍ୱତନ୍ତ୍ର ଓ ଉଚ୍ଛାଟିତ । ଯେତେବେଳେ ଡକ୍ଟର ସୁରେନ୍ ସହ ତନୁଜାର ପ୍ରେମ ହୋଇଛି, ତାପରେ ପରେ ଉପନ୍ୟାସରେ ଏକ ପ୍ରଶାନ୍ତି ଆସିଛି । ଆମର ନିମ୍ନସ୍ତରର ଆବେଗ ଯେତେବେଳେ ଉଚ୍ଚତର ସ୍ୱପ୍ନ ସଂଗେ ଯୁକ୍ତ ହୁଏ, ସେତେବେଳେ ହିଁ ଗୋଟିଏ ପ୍ରେମର ପୂର୍ଣ୍ଣତା ଆଣେ । ଏଠାରେ ତାହାହିଁ ହୋଇଛି । ଗୋଟିଏ ଆଦିବାସୀର ହୃଦୟ ଓ ଗୋଟିଏ ଆର୍ଯ୍ୟର ମସ୍ତିଷ୍କର ସମନ୍ୱୟରେ ପ୍ରେମର ନୂଆରୂପ ପ୍ରକାଶ ପାଇଛି । ସୁରେନ୍ ଓ ତନୁଜା ଚୀନ୍‌ସହ ଭରତର ଯୁଦ୍ଧକ୍ଷେତ୍ରକୁ ଚାଲିଯାଇଛନ୍ତି ।

● 'ତାମସୀ ଗଧା' ରଚନାର ମୂଳ ପ୍ରେରଣା, 'ଧଗ ଓ ଧାଗ' ପରି କାହାଣୀଟିଏ ଶୁଣିବାପରେ ପାଇଥିଲେ କି ?

● 'ତାମସୀ ଗଧା'ର ଚରିତ୍ର ସବୁ ମୋର ପରିଚିତ । ସେ ଚରିତ୍ରମାନଙ୍କୁ ମୁଁ ଏକତ୍ର କରିଛି । ଯେମିତି ନୈତିକ ପ୍ରେରଣାରେ ଲେଖିଥିଲି 'ଧଗ ଓ ଧାଗ'; ସେମିତି ମୋ ନିଜ ଭିତରେ ଯେଉଁ passion, ଯେଉଁ ପ୍ରବେଗ, ତାକୁ ଅନ୍ୟ ଚରିତ୍ର ମାଧ୍ୟମରେ ପ୍ରକାଶ କରିବାପାଇଁ ମୁଁ 'ତାମସୀ ଗଧା' ଲେଖିଲି । ମଣିଷ ଭିତରେ ଥିବା ଏଇ ପ୍ରବେଗ ତାକୁ ସାତ୍ତ୍ୱିକ ଗଧା କରିବାକୁ ଦେଉ-ନାହିଁ । ଅଥଚ ପ୍ରତ୍ୟେକ ମଣିଷ ଭିତରେ ସଂଭବନା ଅଛି, ସେ ଗଧା ହୋଇ ପାରିବ ।

● ଉପନ୍ୟାସ ରଚନା ପୂର୍ବରୁ ଆପଣ ଗୋଟିଏ idea ଓ କେତୋଟି ଚରିତ୍ରକୁ ନେଇ ସଂଗଠନଟିଏ ସୃଷ୍ଟି କରନ୍ତି; ତେବେ ଏହାର ସଂପୂର୍ଣ୍ଣ ପରିକଳ୍ପନାପାଇଁ ସ୍କେଚ୍‌ଟିଏ ତିଆରି କରନ୍ତି ନା କଣ ?

● ମୋଟା ମୋଟି ସ୍କେଚ୍‌ଟିଏ ତିଆରି କରେ । କିନ୍ତୁ ମୋର ଉପନ୍ୟାସ ବା ଗଳ୍ପ ସେହି ସ୍କେଚ ଭିତରେ ରହିବାକୁ ବାଧ୍ୟ ନୁହେଁ । କାରଣ ଯେତେବେଳେ ଚରିତ୍ର-ମାନଙ୍କୁ ତିଆରି କରଯାଏ, ସେମାନେ ପୂର୍ବ plan ଅନୁଯାୟୀ ରହିଯାଉନ୍ତି ।

କାରଣ ସେମାନେ ଜୀବନ୍ତ ହୋଇ ଉଠନ୍ତି । ସେମାନେ ନିଜେ କହନ୍ତି– ମୁଁ ଏଯା ମତେ ଏଯା କର । ପ୍ରଥମର ଗୋଟିଏ Outline ଥାଏ । ସେମାନେ କିନ୍ତୁ ଏହା ମାନନ୍ତି ନାହିଁ । କାରଣ ଗଳ୍ପ କୁହ, ଉପନ୍ୟାସ କୁହ, ମୋ ଚରିତ୍ର ସବୁ ଟାଇପ୍ ଚରିତ୍ର ନୁହଁନ୍ତି । ପ୍ରତ୍ୟେକ ଚରିତ୍ରର ନିଜସ୍ୱ ସ୍ୱାତନ୍ତ୍ର୍ୟ ରହଛି; ବ୍ୟକ୍ତିତ୍ୱ ରହିଛି ଆଉ ବିଶିଷ୍ଟତା ବି ଅଛି ।

● ଓଡ଼ିଆ ଉପନ୍ୟାସ ସାହିତ୍ୟର କେଉଁ ସ୍ରଷ୍ଟାମାନଙ୍କ ପ୍ରତି ଆପଣ ଶ୍ରଦ୍ଧାନ୍ୱିତ ।

● ପ୍ରଥମେ ମୁଁ ଗୋପୀନାଥ ମହାନ୍ତିଙ୍କ ନାମ ନିଶ୍ଚିତ ଭାବେ କହିବି । ଯାହାଙ୍କୁ ମୁଁ ଭାବପ୍ରବଣ ହୋଇ କହେଁ, ଆଧୁନିକ ସାହିତ୍ୟର କଥା ସମ୍ରାଟ । ଯେପରି ଗୋଟିଏ ସମୟରେ ଫକୀର ମୋହନ । ଗୋପୀନାଥ ମହାନ୍ତିଙ୍କପରେ ବହୁ ପ୍ରତିଭା ଆମର ସମସାମୟିକ କଥା ସାହିତ୍ୟରେ ଲେଖନୀ ଚାଳନା କରିଛନ୍ତି । ଯେମିତି ଶାନ୍ତନୁ କୁମାର ଆଚାର୍ଯ୍ୟ । ତାଙ୍କୁ ମୁଁ କହେଁ ଆଗାମୀ ଯୁଗର ଔପନ୍ୟାସିକ । ତାଙ୍କରି 'ନର କିନ୍ନର', 'ଦକ୍ଷିଣାବର୍ତ୍ତ', 'ଶକୁନ୍ତଳା' କହିବାକୁ ଗଲେ ଗୋପୀବାବୁଙ୍କପରେ ଶାନ୍ତନୁ ବାବୁହିଁ ଓଡ଼ିଆ ଉପନ୍ୟାସରେ ଅଗ୍ରଦୂତ ।

● ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ଆପଣ ଭୁବନେଶ୍ୱରରେ କେବଳ ପରସ୍ପର ନିକଟରେ ରହନ୍ତି; ଏପରି ନୁହେଁ, ଓଡ଼ିଆ ସାହିତ୍ୟରେ ମଧ୍ୟ କେତେକ କ୍ଷେତ୍ରରେ ଆପଣ ପରସ୍ପର ନିକଟବର୍ତ୍ତୀ ।

● ମୋର 'ଆକାଶ ପାତାଳ' ଗଳ୍ପ ସଂକଳନରେ 'ମୁଁ, ତୁମେ ଓ ସେମାନେ' ଗଳ୍ପରେ ଶାନ୍ତନୁ ବାବୁଙ୍କ ସହ ମୋର ସଂପର୍କ ସୂଚୀତ ହୋଇଛି । ତାଙ୍କ ସହ ମୋର ସଂପର୍କ ଗୋଟିଏ ରହସ୍ୟପୂର୍ଣ୍ଣ ସଂପର୍କ । ମୁଁ ତାଙ୍କଠୁ ବୟସରେ ବଡ଼ । କହିବାକୁ ଗଲେ ସେ ଉଜ୍ଜ୍ୱଳ ଜ୍ୟୋତିଷ୍କଙ୍କୁ ଦିଗ୍‌ବଳୟରୁ କାଢ଼ିବା ପାଇଁ ମୁଁ କିଛି ପରିମାଣରେ ଶ୍ରମ କରିଥିଲି । ମୁଁ ଏବେ ଗର୍ବିତ ଯେ ମାର୍କଣ୍ଡ ଭଳି ସେ ସାହିତ୍ୟ ଆକାଶରେ ଦେଦୀପ୍ୟମାନ । ସାହିତ୍ୟ କ୍ଷେତ୍ରରେ ଭାବରାଜ୍ୟରେ ଅନେକ ପ୍ରକାରର ରହସ୍ୟପୂର୍ଣ୍ଣ ସଂପର୍କ ରହିଛି । ମୋର ମନେହୁଏ, ଶାନ୍ତନୁ ବାବୁ ସାହିତ୍ୟ ଜଗତରେ ମୋର ମାନସ ପୁତ୍ର । ଭାବ ଜଗତରେ ତାଙ୍କ ସହ ମୋର ସଂପର୍କଟା ବାତ୍ସଲ୍ୟ । ଏଇ ସଂପର୍କଟା ଶୁଣିଥିଲି ରାଧାନାଥ ଓ ମଧୁସୂଦନଙ୍କ

ଭିତରେ । ରାଧାନାଥ ଗଙ୍ଗାଧରଙ୍କୁ ଭଲ ପାଉଥିଲେ ବନ୍ଧୁ ଭାବରେ, ମଧୁସୂଦନଙ୍କୁ ଭଲ ପାଉଥିଲେ ପୁତ୍ରବତ୍ ।

● ଉଭୟଙ୍କ ରଚନାରେ ଅତି ବାସ୍ତବତା ରହିଛି, ଏ ସମ୍ପର୍କରେ କିଛି କହିବେ କି ?

● ଆମେ ଯାହାକୁ ବାସ୍ତବତା ବୋଲି କହୁଁ, ତାହା ପୂର୍ଣ୍ଣ ସତ୍ୟ ନୁହେଁ । ବାସ୍ତବ ଜୀବନରେ ସ୍ୱପ୍ନ ମଧ୍ୟ ଏକ ସତ୍ୟ । ମଣିଷ ଭାବେ ପରିଦୃଶ୍ୟମାନ ଜଗତହିଁ ବାସ୍ତବ । ତା ବାହାରେ ଆଉ ଗୋଟିଏ ସୂକ୍ଷ୍ମ ଜଗତ ରହିଛି । ଯେଉଁ ଜଗତରେ ଡାହାଣୀ ପିଶାଚୁଣୀଠାରୁ ଆରମ୍ଭ କରି ସ୍ୱୟଂ ଈଶ୍ୱରବି ଏକ ଚରିତ୍ର । ଉଭୟ ଜଗତକୁ ଏକାଠି ନକଲେ ସାହିତ୍ୟ ସମ୍ପୂର୍ଣ୍ଣ ହୁଏନା, ଜୀବନ ମଧ୍ୟ ସମ୍ପୂର୍ଣ୍ଣ ହୁଏନା ।

● ଆପଣ କେଉଁ ଏକ ସଙ୍କଳନରେ ଲେଖିଛନ୍ତି : "ମୁଁ ଯେତେବେଳେ ବ୍ୟଙ୍ଗ ବିଦ୍ରୂପ ଲେଖୁଥିଲି ଲୋକମାନଙ୍କୁ ମୋ ଠାରୁ ଅଲଗା କରି ଦେଖୁଥିଲି । କିନ୍ତୁ ଯେତେବେଳେ ସେଇ ଦୋଷ ଦୁର୍ବଳତା ମୋ ନିଜ ଭିତରେ ଦେଖିଲି, ତାଙ୍କ ପ୍ରତି ମୋର ସହାନୁଭୂତି ଜାତ ହେଲା ।" ସାହିତ୍ୟରେ ସମାଜ ସଂସ୍କାର ପାଇଁ ବ୍ୟଙ୍ଗ ରହିବ କି ?

● ସମାଜ ସଂସ୍କାର କରିବା ସାହିତ୍ୟର ଏକ ଲକ୍ଷ୍ୟ ହେବା କଥା କି ? ସାହିତ୍ୟ ଏପରି ଏକ ବିଷୟ ହେବା ଉଚିତ ଯାହାକି ମଣିଷର ଚେତନାକୁ ଉର୍ଦ୍ଧ୍ୱଗାମୀ କରାଇବ । ମଣିଷ ଭିତରେ ଗୋଟିଏ ମହାନ ପ୍ରେମ ସୃଷ୍ଟି କରାଇବ, ସଦ୍-ଭାବ ସୃଷ୍ଟି କରାଇବ । ତାହା ବ୍ୟଙ୍ଗ ମାଧ୍ୟମରେ ବି ହୋଇପାରେ । ଯେମିତି ରାଧାନାଥଙ୍କ 'ଦରବାର' କିମ୍ବା ସର୍ଭେଣ୍ଟିସ୍‌ଙ୍କ 'Don Quixote' । ମଣିଷ ଚେତନାକୁ କ୍ଷୁଦ୍ର ପରିବେଷ୍ଟନୀ ଭିତରୁ ଉର୍ଦ୍ଧ୍ୱକୁ ନେଇଯିବା ସାହିତ୍ୟର ଲକ୍ଷ୍ୟ ।

● ଆପଣ ଏଇ 'Don Quixote' କଥା କହୁଥିଲେ । ଆଉ କେଉଁ ବିଦେଶୀ ଉପନ୍ୟାସ ଆପଣଙ୍କୁ ଭଲ ଲାଗେ ?

● ମୁଁ ବାହାର ନୋଭେଲ ପଢା ଅନେକ ବର୍ଷ ହେଲାଣି ଛାଡ଼ି ଦେଇଛି । ପନ୍ଦର

କୋଡ଼ିଏ ବର୍ଷ ହେଲା ମୁଁ ଆଉ ଉପନ୍ୟାସ ପଢୁନି । ମୁଁ ବର୍ତ୍ତମାନ ଦର୍ଶନ ସମ୍ପର୍କୀୟ ବହିସବୁ ପଢୁଛି । ଆମ କାଳର ଔପନ୍ୟାସିକମାନଙ୍କୁ ମୁଁ ପଢ଼ି-ଦେଇଛି, ଯେମିତି ଲରେନ୍‌ସ, ଦସ୍ତୋଭସ୍କି, ଟଲଷ୍ଟୟ, ତା' ବାଦ କାମ୍ୟୁ, ସାର୍ତ୍ରେ ।

● ଓଡ଼ିଶାରେ ଯେଉଁ କେତେଜଣ ନାରୀ ଔପନ୍ୟାସିକା ଅଛନ୍ତି–

● ବସନ୍ତ କୁମାରୀ ପଟ୍ଟନାୟକଙ୍କ ଉପନ୍ୟାସ ମତେ ଖୁବ୍ ଭଲ ଲାଗିଥିଲା । ପ୍ରତିଭା ରାୟଙ୍କ ଖଣ୍ଡେ ଉପନ୍ୟାସ 'ଯାଜ୍ଞସେନୀ' ଖୁବ୍ ଉଚ୍ଚକୋଟୀର ହୋଇଛି । ସେଇଟା ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ । କିନ୍ତୁ ତାଙ୍କର ଅନ୍ୟ କୌଣସି ଉପନ୍ୟାସ ଏଇ ଉଚ୍ଚତାକୁ ଆସିଲା ଭଳି ମନେ ହେଉନି ।

● ଯେତେବେଳେ ସମସାମୟିକ ପୃଥିବୀର ଘଟଣା ସବୁ ମଣିଷର ଅସ୍ତିତ୍ୱପ୍ରତି ଆହ୍ୱାନ କରୁଛି, ଲଜ୍ଜିତ ଓ ସ୍ତବ୍ଧ କରୁଛି, ସେତେବେଳେ ସାହିତ୍ୟିକ ସଜ୍ଜିତ ଟେବୁଲରେ ବସି ସୁନ୍ଦର ଭବିଷ୍ୟତର ସ୍ୱପ୍ନ ଦେଖିପାରେ ? ସାହିତ୍ୟରେ କଣ ତାର ପ୍ରଭାବ ରହିବ ନାହିଁ ?

● ମୋ ଜୀବନ ସମ୍ପର୍କରେ ତମେ ବୋଧେ ବିଶେଷ ଜାଣିନ । ମୁଁ କେବଳ ବସି ଲେଖେନି; ମୋ ବିଶ୍ୱାସ ଅନୁସାରେ ସାମାଜିକ ସଂଗଠନରେ ଲାଗିଥାଏଁ । ପ୍ରଥମରୁ ବାମପନ୍ଥୀ ଥିଲି; ତାପରେ ଗାନ୍ଧୀ ଦର୍ଶନକୁ ଗଲି । ବିବେକାନନ୍ଦ, ରାମକୃଷ୍ଣଙ୍କ ଦ୍ୱାରା ପ୍ରଭାବିତ ହେଲି ତାପରେ ବହୁ ପରିମାଣରେ । ତାହାହିଁ ମତେ ଟାଣି ନେଲା ଶ୍ରୀ ଅରବିନ୍ଦଙ୍କ ଆଡକୁ । ଯେଉଁ ସବୁ ବିପର୍ଯ୍ୟୟ ଏବେ ଘଟୁଛି, ମଣିଷର ପ୍ରକୃତିହିଁ ତା'ର ମୂଳ କାରଣ । ତାକୁ କୌଣସି ଉପର ଠାଉରିଆ ପରିବର୍ତ୍ତନ କରିଦେଲେ ହେବ ନାହିଁ । ମଣିଷକୁ ପୂର୍ଣ୍ଣ କରିବାକୁ ହେବ । ତାକୁ ଅନ୍ତତଃ ସେଇ ଅନୁଭବ ଦେବାକୁ ହେବ । ଆମେ ଏବେ ସେଇ ଚେଷ୍ଟା କରୁଛୁ ।

● ଏହା ଆପଣଙ୍କ ସାହିତ୍ୟିକ ଜୀବନରେ ବ୍ୟାଘାତ ଆଣୁନି ?

● ନିଶ୍ଚୟ, ବହୁ ସମାଲୋଚକ ମୋର ସାହିତ୍ୟରେ ଏଇ ଦର୍ଶନର ଉପସ୍ଥିତି ଲକ୍ଷ୍ୟ କରନ୍ତି ।

● ନା', ସାର୍, ଏହା ଆପଣଙ୍କ ଲେଖାଲେଖିରେ ବ୍ୟାଘାତ କରୁନି ?

● ମୁଁ ପ୍ରକୃତରେ ଲେଖକ ହିଁ ହେବି ବୋଲି ଭାବୁନି । ମୁଁ ଗୋଟିଏ ମାନବବାଦୀ ଲୋକ । ମୁଁ ଏଇ ପୃଥିବୀକୁ ଭଲ ପାଏଁ । ମୁଁ ଚାହେଁ, ଏହା ସ୍ୱର୍ଗଠାରୁ ଆହୁରି ସୁନ୍ଦର ହେଉ, ମଣିଷ ଦେବତାଠୁଁ ବଳିଯାଉ । ମଣିଷ; ଯେମିତି ଗାନ୍ଧୀ, ରାଜା ହରିଶ୍ଚନ୍ଦ୍ର– ଏମାନଙ୍କ ତୁଳନାରେ କେଉଁ ଦେବତା ବା ବଡ ? ସମଗ୍ର ଭାବେ ମଣିଷ ଜାତିର ଯେଉଁ ଉଚ୍ଚତାଟା ଆସିବା କଥା ଆସିପାରି ନାହିଁ । ଚାଲ ଆମେ ସମସ୍ତେ ମିଶି ପୃଥିବୀକୁ ସ୍ୱର୍ଗରେ ରୂପାନ୍ତରିତ କରିବା ।

☐

## ଯା ନିଶା ସର୍ବ ଭୂତାନାଂ.....

ରାତିରେଇ ମୋର ଅନ୍ତର୍ଦୃଷ୍ଟି ଖୋଲିଯାଏ । ଭବଜଗତର ରହସ୍ୟ ପରଦା ଖୋଲି, ଖୋଲିଯାଏ । ଏଇ ରାତିରେ ହିଁ ଜୀବନର ବହୁ ରହସ୍ୟ ରସମୟ ଅର୍ଥ ବହନ କରି ଶବ୍ଦମାନଙ୍କ ଭିତରେ ବିଗ୍ରହବନ୍ତ ହୋଇ ଉଠନ୍ତି । ଗୋଟିଏ କଥା ସଙ୍ଗେ ଆଉ ଗୋଟିଏ କଥା ଯୋଡ଼ି ହୋଇଯାଏ । ଗୋଟିଏ ଚରିତ୍ର ସଙ୍ଗେ ଆଉ ଗୋଟିଏ ଚରିତ୍ର ସାଙ୍ଗ ହୋଇ ଆସେ । ଗୋଟିଏ ଘଟଣା ସଙ୍ଗେ ଆଉ ଗୋଟିଏ ଘଟଣାର ଯୋଗସୂତ୍ର ମିଳିଯାଏ । ମୋତେ ଲାଗେ ସତେକି ମୁଁ ଭୂତଗ୍ରସ୍ତ ହୋଇଛି ଅଥବା ମୋତେ କାଳେସୀ ଲାଗିଛି କିମ୍ବା କିଏ ସବୁ ଅଶରୀରୀ ସତ୍ତାମାନ ମୋ ଉପରେ ସବାର ହୋଇ ଯାଇଛନ୍ତି । ମୋ ଭିତରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଏକାଠି ହୋଇଯାଏ ।

☐ ମହାପାତ୍ର ନୀଳମଣି ସାହୁ
ମୁଁ କ ହିଁକି ଲେଖେ– ୧୯୮୪

## ବେଦନା ବୋଧରୁ ସାହିତ୍ୟର ସୃଷ୍ଟି

□

ଉପନ୍ୟାସଟିଏ ଶେଷ କଲାପରେ ପାଠକ ଆଖିରେ ଭାସି ଉଠେ ଔପନ୍ୟାସିକଙ୍କର କଳ୍ପିତ ଅବୟବ। ଏ କଳ୍ପନା ଲଜ୍ଜିତ ହୁଏ, ଯେତେବେଳେ ସେ ଔପନ୍ୟାସିକଙ୍କୁ ଭେଟେ। ଆମର ସୌଭାଗ୍ୟ, ଔପନ୍ୟାସିକ ଚନ୍ଦ୍ରଶେଖର ରଥଙ୍କୁ ଭେଟିବା ବେଳେ ଆମେ ବିସ୍ମିତ ହେଲୁ ଉଭୟର ସୌସାଦୃଶ୍ୟ ଦେଖି। ଯାହାର ଔପନ୍ୟାସିକ ଜଗତରେ ଏତେ ଶୁଭ୍ରତା, ସେ ଏମିତି ସୌମ୍ୟ, ଏମିତି ଋଷି ପ୍ରତିମ ହେବା ସ୍ୱାଭାବିକ।

□

● ଆପଣ ତିନୋଟି ଉପନ୍ୟାସ ଲେଖିଛନ୍ତି, ଜୀବନର ତିନୋଟି ପରିଚ୍ଛେଦ ସମ୍ପର୍କରେ। 'ଯନ୍ତ୍ରାରୂଢ଼' ଜୀବନର ଅସ୍ଥିର ମୂଲ୍ୟବୋଧ, ଦ୍ୱିତୀୟ ଉପନ୍ୟାସ 'ଅସୂର୍ଯ୍ୟ ଉପନିବେଶ' ଅସୂର୍ଯ୍ୟମ୍ପଶ୍ୟ ବିବର ଓ 'ନବ ଜାତକ' ଅନୁଭୂତି ଉତ୍ତର ଏକ ମହାନ ଅନୁଭବ। ଆପଣଙ୍କ ପରବର୍ତ୍ତୀ ଉପନ୍ୟାସରେ ଆମେ କଣ ଆଶା କରିବୁଁ ?

● ଯଦି ତିନୋଟିକୁ ଏଭଳି ଭାବରେ ପର୍ଯ୍ୟାୟ ଭୁକ୍ତ କରାଯାଏ, ତା ହେଲେତ ବୃତ୍ତ ସମ୍ପୂର୍ଣ୍ଣ ହୋଇଗଲା। ସେ ଭୂମିରେ ଆଉ କିଛି ହେବନାହିଁ। ଗୋଟିଏ ଥେସିସ୍ ଅନ୍ୟଟି ଆଣ୍ଟି ଥେସିସ୍; ପରେ ସିନ୍ଥେସିସ୍ ସେଥିରେ ଆଉ କଣ ଯୋଡ଼ିହେବ ? ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ଟ୍ରାୟଲୋଜି। ତାପରେ ଯଦି କିଛି ଉପନ୍ୟାସ ଲେଖାଯାଏ, ସେ ସମ୍ପୂର୍ଣ୍ଣ ଭିନ୍ନ ହେବ। ମୁଁ ଭାବୁଛି ଏ ତିନୋଟି ନିର୍ଯ୍ୟାସ ଥାଇକି କିଛି ଗୋଟିଏ ଉପନ୍ୟାସ ହୋଇପାରେ।

● ତାହା ଏବେ ହାତରେ ଅଛି କି ?

● ଆମେ କେବଳ କୋଣାର୍କ ମନ୍ଦିର ଦେଖି ଭାବୁଁ ଯେ ଯା ହେଉ ଗୋଟିଏ

କିର୍ତ୍ତୀ ସ୍ଥାପିତ ହେଲା । କିନ୍ତୁ ତା ପୂର୍ବରୁ ଓ ତାପରେ ଯେଉଁ ଅଜସ୍ର ମନ୍ଦିର ଅଧା ଗଢ଼ା ହୋଇ ଭଙ୍ଗା ହୋଇଯାଏ ତାର ସଂଖ୍ୟା ଗରିଷ୍ଠ । ତିନୋଟି ଉପନ୍ୟାସ ଯେ ଲେଖିଛି, ତା ହାତରେ ଅନ୍ତତଃ ଦଶଟି ଖଣ୍ଡିଆ ଉପନ୍ୟାସ ଥିବବୋଲି ମୋର ବିଶ୍ୱାସ । ଉପନ୍ୟାସ ଲେଖା ଯଦି ଯାନ୍ତ୍ରିକ କାର୍ଯ୍ୟ ହୋଇଥାନ୍ତା ମୁଁ ହୁଏତ ଆଉ ପାଞ୍ଚ ଦଶ ଖଣ୍ଡ ଉପନ୍ୟାସ ଲେଖିଥାନ୍ତି । କେନାଲ ଖୋଳି ପାଣି ମଡ଼ାଇବା ଯାହା ଆଗରୁ ଗୋଟିଏ ମାଷ୍ଟର ପ୍ଲାନକରି ଉପନ୍ୟାସ ଲେଖିବା ତାହା । ଉପନ୍ୟାସ ହେଲା ନଦୀ ପ୍ରବାହ ପରି । ସେ ହଠାତ୍ କେଉଁ ଦିନ ଗିରି ଗହ୍ୱରରୁ ବାହାରି ଆସିବ ତାପରେ ନିଜ ଗଡ଼ାଣିରେ ଗଡ଼ିଯିବ । ଯଦି ଏଭଳି ସେ ସ୍ୱତ ପ୍ରବାହିତ ନ ହେଲା, ମୁଁ ତାକୁ ଉପନ୍ୟାସ ବୋଲି କହିବିନି ।

କିନ୍ତୁ ସେ ପାହାଡ଼ ବିଦୀର୍ଣ୍ଣ ହୋଇ ଯିବାର ଦୁଃଖ ?

● କେଉଁଠି ଗୋଟାଏ ଲେଖିଛି ନା କଣ ? ହଁ ଦାସେ ଆପଣଙ୍କ ସଂପର୍କରେ 'ମଧୁ ସନ୍ଧାନେ' ସଙ୍କଳନରେ ଲେଖିଛି । ତାହା ଆଉ ଗୋଟିଏ ଆଖି ଫିଟି ଯିବାର ଅନୁଭବ । ଆଖି ସାମ୍ନାରେ ଘଟଣା ଘଟିଯିବ । ପିଲା, ବୁଢ଼ା, ସବୁ ଚରିତ୍ରମାନ କଥାବାର୍ତ୍ତା ହେବେ । କିନ୍ତୁ ସବୁଠୁ ବିଚିତ୍ର କଥାହେଲା ସେ ଚରିତ୍ରମାନେ କଦାପି ଲେଖକ ସଙ୍ଗେ କଥାବାର୍ତ୍ତା ହୁଅନ୍ତି ନି । ଇଏ ସେଇଠି ଅଦୃଶ୍ୟ ରହି ଶୁଣେ । ଏହା ହେଉଛି ସୃଷ୍ଟିର ରହସ୍ୟ । ଆମେ ଯେଉଁ କଥାବାର୍ତ୍ତା କରୁଛୁ ଏକ ବିରାଟ ଉପନ୍ୟାସର ଚରିତ୍ରମାନେ ଓ ଆମର ସ୍ରଷ୍ଟାଟି ଏଇଠି ରହି ଅଦୃଶ୍ୟରେ ଶୁଣୁଛି ଆମେ ତାକୁ ଦେଖି ପାରୁନୁ ।

● ଉପନ୍ୟାସର ଚରିତ୍ରମାନଙ୍କୁ ପାଠକ ନିକଟରେ ଉପସ୍ଥାପନ କଲାବେଳେ ପାଠକକୁ ଲାଗେ ଆପଣ ଯେପରି ଆପଣଙ୍କ ପ୍ରିୟ ପୁରୁଷ ସଂପର୍କରେ କହୁଛନ୍ତି ; ଚରିତ୍ର ପ୍ରତି ଆପଣଙ୍କର ଏତେ ଆସକ୍ତି ଆସେ କେମିତି ?

● ଠିକ୍ । ତାହା ହୁଏ କଣ କି, ସେ ଚରିତ୍ରଟି ମୋର ଆତ୍ମାର ଅଂଶ ବିଶେଷ । ମମୈବାଂଶୋ ଜୀବଲୋକେ ଜୀବ ଭୂତାଃ' ଯେଉଁ କୁହା ଯାଇଛି ମୋର ଅଂଶ ବିଶେଷ ହିଁ ଏଠାରେ ମୂର୍ତ୍ତୀମାନ ହୋଇ ଯାଇଥାଏ । ତା ସାଙ୍ଗରେ ମୋର

ଯେଉଁ ସଂପର୍କ, ସେ ଗୋଟିଏ ଆନ୍ତରିକ ସଂପର୍କ । ଏଥିରେ ଦୁଷ୍ଟ ଚରିତ୍ର ଆସିଲେ ମଧ୍ୟ ସେ ମୋର ସନ୍ତାନ ।

● ଆପଣଙ୍କ ଉପନ୍ୟାସର ଚରିତ୍ର ସବୁ କଣ କେବଳ ଆପଣଙ୍କ ମାନସଲୋକର ଚରିତ୍ର ? ନା ବାହ୍ୟ ଜଗତର ମଧ୍ୟ ଆପଣ ଚରିତ୍ର ନିଅନ୍ତି ।

● ଚେତନା ଗର୍ଭରୁ ସାଧାରଣତଃ ସେମାନେ ଆସନ୍ତି । ଚେତନା ଗର୍ଭରେ ବହୁ-କଥା ସଞ୍ଚିତ ହୋଇଥାଏ ବହୁବର୍ଷ ଧରି । ମୁହୂର୍ତ୍ତକ ସକାଶେ ଗୋଟିଏ ବ୍ୟକ୍ତିକୁ ଦେଖି ଦେଇଛି, ବସ୍‌ରେ ଗଲାବେଳେ, ଟ୍ରେନ୍‌ରେ ଗଲାବେଳେ, ସେବି ମୋର ସ୍ମୃତି ମଧ୍ୟରେ ସଞ୍ଚିତ ହୋଇ ରିହିଛି । ବିଭିନ୍ନ ବ୍ୟକ୍ତିର ବିଭିନ୍ନ ଅଂଶ ଗୋଟାଏ ଆଚମ୍ବିତ ମୁହୂର୍ତ୍ତରେ ଏକାଠି ହୁଏ । ଚରିତ୍ର ଟିଏ ସୃଷ୍ଟି ହୁଏ । 'ସନାତନ ଦାସ' ଏହି ଜଗତର ନୁହେଁ । ମୁଁ ତାକୁ କେଉଁଠି ଦେଖିନାହିଁ । ଭିନ୍ନ ଭିନ୍ନ ବ୍ୟକ୍ତିର ଉପାଦାନ ସବୁ ତାଙ୍କଠି ଏକତ୍ରିତ ହୋଇଛି ତତ୍‌ସତ୍ତ୍ୱେ ସବୁ ଉପାଦାନ ମିଶାଇ ଦେଲେବି 'ସନାତନ ଦାସ' ହୁଅନ୍ତି ନାହିଁ । ତା ଭିତରେ ଆଉ ଗୋଟିଏ କଣ ରହସ୍ୟାବୃତ ନୂତନତା ଅଛି । ସେ ନୂତନତାହିଁ ଚରିତ୍ର ସୃଷ୍ଟି କରେ ।

● ଆପଣଙ୍କ ଉପନ୍ୟାସର ମହତ ଚରିତ୍ର ସବୁ ଅସାଧାରଣ ଓ ଏକା ଭଳି ମନେ ହୁଅନ୍ତି ।

● ସାଧାରଣ ଜୀବନଠାରୁ ମହତ୍ତର କିଛି ତାଙ୍କ ନିକଟରେ ଅଛି । ଏଣୁ ଦେଖିଲେ ଏକ ପ୍ରକାର ମନେ ହୁଅନ୍ତି । ଠିକ୍ ନିରେଖିକି ଦେଖିଲେ ଜଣା ପଡ଼ିବ, ସେମାନେ ଏକା ପ୍ରକାର ନୁହନ୍ତି । ଯେମିତି ସନାତନ ଦାସ ଜଣେ ସାଧାରଣ ମଣିଷ । ତାକୁ ଜଣେ ଯେପରି ଟେକି ନେଉଛନ୍ତି ସାଧାରଣଠାରୁ ଅସାଧାରଣ ଆଡକୁ । ଜୟଗମ ଅନ୍ୟପକ୍ଷରେ ଅସାଧାରଣ ବ୍ୟକ୍ତି କିନ୍ତୁ ସଂସାରରେ ଖୁବ୍ ସଂଶ୍ଳିଷ୍ଟ ଏବଂ ସମର୍ଥ ବ୍ୟକ୍ତି । ସବୁ ଶୁଦ୍ଧତା ସତ୍ତ୍ୱେ ସେ ଲୋକକୁ ଗୋଟିଏ ବନ୍ୟ ପଶୁ ଗ୍ରେବାଇ ଖାଇ ଯାଉଛି । ଏଣୁ ଉଭୟଙ୍କ ମଧ୍ୟରେ ଗୋଟିଏ ଉତ୍ତରଣଗତ ସାଦୃଶ୍ୟ କଳନା କରଯାଇପାରେ । ଅନ୍ୟ ପକ୍ଷରେ ବୃହତ, ସେ ଗୋଟିଏ ଅତୀନ୍ଦ୍ରିୟ ଜଗତର ଚରିତ୍ର ।

● ଆପଣଙ୍କ ଅନ୍ୟ ଏକ ପ୍ରକାର ଚରିତ୍ର 'ଜୟନ୍ତ ପରିଡ଼ା', ତା ବିଷୟରେ—?

● ଜୟନ୍ତ ପରିଡ଼ାକୁ ଢାରଜ କୁହାଯାଇଛି । ତେବେବି ସେ ଜଣେ ଅସାଧାରଣ ଚରିତ୍ର । ତେବେ ସେ ଗୋଟିଏ ଅନ୍ୟ ମେରୁ । ତା'ର ଉଣା ସାହାସ ଅଛି ? ଉଣା ସାମର୍ଥ୍ୟ ଅଛି ? ହୋଇପାରେ ସେ ଦୁଃସାହସ । ସେ କହୁଛି ସମଗ୍ର ସମାଜକୁ ବଦଳାଇ ଦେବ । କିଛି ଦର୍ପ, କିଛି ଦମ୍ଭ ଓ ତା' ସହିତ କିଛି ଅବିବେକିତା ମିଶିବାରୁ ସେ ଚରିତ୍ର ସୃଷ୍ଟି । ତା ବିଷୟରେ କଣ କହୁଛ ?

● ସେ ସଂପର୍କରେ ମୋର ଗୋଟିଏ ସନ୍ଦେହ ରହିଛି ଯେ ଜୟନ୍ତ ପରିଡ଼ା ଯେତେବେଳେ ଜୟଗମ ବାବୁଙ୍କ ପଗଡ଼ିକୁ ବଜାର ଭିତରେ ନିଲାମ କରୁଛି, ମନେ ହେଉଛି ସଂସାରର ସମସ୍ତ ସତ୍ ମୂଲ୍ୟବୋଧ ଏହା ସହିତ ହିଁ ନିଲାମ ହୋଇଯାଉଛି ।

● ସେହିଭଳି ଗୋଟିଏ ପ୍ରତିକ୍ରିୟା ହେବ ବୋଲି ମୁଁ ଜାଣିଛି । ନହୋଇଥିଲେ ବରଂ ନିରାଶ ହୋଇଥାନ୍ତି । ତାହାହିଁ ସେଠି କୁହାଯାଉଛି । କିନ୍ତୁ ଗୋଟିଏ କଥା ସେଠାରେ ଲକ୍ଷ୍ୟ କରିବ, ନାମକରଣ ହୋଇଛି 'ଅସୂର୍ଯ୍ୟ ଉପନିବେଶ' ଉପ-ନିବେଶଟା ଆମ ନିଜ ରାଜ୍ୟ ନୁହେଁ । ସେଠାରେ ମୁଁ କିଛି ଦିନ ରହିପାରେଁ । ତାପରେ ମୁଁ ସ୍ୱସ୍ଥାନକୁ ଫେରିଯିବି । ସେଠାରେ ସୂର୍ଯ୍ୟ ନାହିଁ ନିଶ୍ଚୟ, ସେ ଭୂମିଟା ଅନ୍ଧକାର ଆଚ୍ଛନ୍ନ । ସବୁ ମୂଲ୍ୟ ସେଇଠି ମରିଯାଇଛି । ତତ୍ ସତ୍ତ୍ୱେ ସେଇଟା ଉପନିବେଶ । ଆମ ଉପରେ ତାହା ମଡେଲ ହୋଇ ପଡ଼ିଛି କେଉଁଠୁ ଆସି ।

● 'ଛବି' ଆଉ 'ସୋମନାଥ'ର ମୃତ୍ୟୁରେ ମୁଁ ଦୁଃଖିତ ।

● (ହସି) ମନେ ପଡୁଛି, ମୋତେ ଯେତେବେଳେ କଲିକତାରେ ଇଂରାଜୀରେ 'ଅସୂର୍ଯ୍ୟ ଉପନିବେଶ' ର କାହାଣୀ କହିବାପାଇଁ ଅନୁରୋଧ କରା ଯାଇଥିଲା, ମୋର ଉତ୍ତର ହୋଇଥିଲା ମୋତେ ଆଉ ସେ ଅଗ୍ନି ବର୍ଷଣ ଭିତରେ ପୁରାଅ ନାହିଁ । କାରଣ ଯେତେବେଳେ ମୁଁ ଲେଖିଲି, ଲାଗିଲା ଯେମିତିକି ମୁଁ ଗୋଟାଏ ନିଆ ଭିତରେ ପାରି ହେଉଛି । ଛବି କଥା ଯେତେବେଳେ ଇଂରାଜୀରେ କହିଲି,

ସେଠି ହଠାତ୍ କେତେଜଣ ଛିଡାହୋଇ କହିଲେ No...No...No...It can't have. କିନ୍ତୁ ଛବିର ମୃତ୍ୟୁର ଯେଉଁ ଭୟାବହତା ସେଇଟା କଣ ପାପର ପ୍ରାୟଶ୍ଚିତ ? କିଏ ଫଳ ଭୋଗ କରୁଛି ? କେବଳ ଗୋଟିଏ କଥା ପ୍ରତିପାଦିତ ହେଉଛି— ଏ ଉପନିବେଶରେ ସାମାନ୍ୟତମ ଆଲୋକ ବି ଯଦି କେଉଁଠି ଥାଏ, କମନୀୟତା କେଉଁଠି ଥାଏ— ତାର ସ୍ଥାନ ନାହିଁ ।

● ଆଉ ଗୋଟିଏ କଥା ଏ ଉପନ୍ୟାସରେ ଆଶ୍ଚର୍ଯ୍ୟ ଲାଗେ । ଆପଣଙ୍କର ଯାହା prose style ଏ ଉପନ୍ୟାସରେ ତାହା ନାହିଁ ।

● ସମ୍ଭବ । ସମ୍ଭବ । କାରଣ ଅସୂର୍ଯ୍ୟ ଉପନିବେଶରେ ଯାହା ଆଗରୁ କହୁଥିଲି, ସେଠି ବିଭିଷୀକା ଗୁଡାକ ଯାହା ଲେଖୁଛି, ସେଥିରେ ମୁଁ ସମ୍ପୂର୍ଣ୍ଣ ସ୍ୱସ୍ଥ ଅନୁଭବ କରିନାହିଁ । ସେଥିପାଇଁ କେମିତି ଘୋଷାରିଲାପରି ମୁଁ ଟାଣି ହୋଇ ଯାଉଥିଲି ।

● 'ଅସୂର୍ଯ୍ୟ ଉପନିବେଶ'ରେ ଆଉ ଏକ କଥା— ପ୍ରଥମ ଉପନ୍ୟାସଠାରୁ ଏଥିରେ ଦୃଶ୍ୟଧର୍ମୀ ରୂପକଳ୍ପ ବେଶୀ ।

● ସେଠି କେବଳ ନୁହେଁତ । ଏଇଟା ଖୁବ୍ ଭଲ କଥାଟାଏ । ମୋର ଖୁବ୍ କମ୍ ପାଠକ କହନ୍ତି ମୁଁ ବେଶି visual । ଉପନ୍ୟାସରେ, ଗଳ୍ପରେ ମୁଁ ଦୃଶ୍ୟଧର୍ମୀ ରୂପ କଳ୍ପ ବ୍ୟବହାର କରେ ।

● ଏହା ବୋଧହୁଏ ଏଥିପାଇଁ ଘଟିଛି ଯେ ଆପଣ ଦେଖିଥିବା ଜୀବନ ଏଥିରେ ବେଶି ପ୍ରତିଫଳିତ ?

● ନା, କଣ ହୁଏକି; ତାହା ତ ଅନ୍ୟ ଗୋଟିଏ ରାଜ୍ୟରେ ଘଟେ ଓ ମୁଁ ତାକୁ ଦେଖେ । ସେ ଦେଖିଲା ବେଳେ ମନ ଭିତରେ ହଠାତ୍ ଯେଉଁ ରୂପକଳ୍ପଟା ଆସେ ତାକୁ ମୁଁ ଲେଖି ପକାଏଁ ।

● 'ଅସୂର୍ଯ୍ୟ ଉପନିବେଶ'ର ଗୋଟିଏ କଥା ସମ୍ପର୍କରେ ମୁଁ ସନ୍ଦିଗ୍ଧ । ଗୋଟିଏ ସ୍ଥାନରେ ସୁଜାତା କହୁଛି "ମୁଁ ନଟବର ରାୟଙ୍କ ଝିଅ" (ପୃଷ୍ଠା—୯୫) ଅଥଚ ଆମେ ଜାଣୁ ଯେ ତା ବାପା ମାୟାଧର ରାୟ ।

● ନା, ନା, ସେଇଟା ଭୁଲ, ସେଇଟା ପ୍ରିଣ୍ଟିଂ ମିଷ୍ଟେକ୍ । (ହସି) 'ଅସୂର୍ଯ୍ୟ ଉପନିବେଶ' ଅନ୍ଧାରୀ ମୂଳକତ ସେଠି ସେମିତି ହୋଇପାରେ ।

● ଆପଣଙ୍କ ଉପନ୍ୟାସରେ କାଳର ବିସ୍ତୃତି ପାଠକ ଜାଣି ପାରେନି । ପାଠକ ନିକଟରୁ ଆପଣ ତାକୁ ଲୁଚେଇ ରଖନ୍ତି ।

● ସେ କଣ ହୁଏ କି, ଯେତେବେଳେ ଜଣେ ଘଟଣା ପ୍ରବାହକୁ ଦେଖେ ସେତେ-ବେଳେ ସେ କାଳ ବିଷୟରେ ସଚେତନ ହୁଏ । ଜଣେ ଯେତେବେଳେ ଚିତ୍ର-ପଟ ଦେଖେ ସେ ପ୍ରବାହ ବିଷୟରେ ସଚେତନ ହେବ ନାହିଁ । ସେଠି ଗୋଟାଏ ଗୋଟାଏ ଦୃଶ୍ୟ ବଦଳି ବଦଳି ଗ୍ଲଲିଛି । ପ୍ରତ୍ୟେକ ପରିଚ୍ଛେଦରେ ଗୋଟିଏ ନୂଆ ଦୃଶ୍ୟ ଏବଂ ତିନିଟା ସ୍ରୋତ ସେଠି ପରିଷ୍କାର ଲକ୍ଷ୍ୟ କରିବ । ତାର ଯେଉଁ ଗଠନ ଶୈଳୀ ବା ବିନ୍ୟାସ କହିବ ସେ ବିନ୍ୟାସରେ ଗୋଟାଏ ବେଣୀ ବଂଧନ ଭଳି ଅଛି । ଗୋଟାଏ ଆଦି ବିନ୍ଦୁ ହେଉଛି ଜୟନ୍ତ ଓ ସୁଜାତା । ଆଉ ଗୋଟାଏ ହେଉଛି ଦିଗମ୍ବର ମଙ୍ଗରାଜ ଆଉ ସେହି ପରିବେଶ ଓ ତୃତୀୟଟି ହେଉଛି ଜୟଗମ । ଏହି ତିନୋଟି ଧାର ସମଗ୍ର ଉପନ୍ୟାସରେ ପ୍ରବାହିତ । କିନ୍ତୁ 'ଯନ୍ତ୍ରାରୂଢ଼'ରେ ସେ ବିନ୍ୟାସଟି ସମ୍ପୂର୍ଣ୍ଣ ଅଲଗା । ପ୍ରଥମେ ଗୋଟାଏ ବିସ୍ତୃତି, ଗୋଟାଏ, ଗୋଟାଏ Horizontal...... ତାପରେ ସେଟା ଭାଙ୍ଗିଯାଇ vertical ଉଠିଛି । ଅତଏବ ପରିଷ୍କାର ଭାବରେ ସେ ବିନ୍ୟାସର ତାତ୍ପର୍ଯ୍ୟ ବୁଝିହେବ । 'ନବଜାତକ' ମୋ ପକାଶେ ଗୋଟିଏ ବିଚିତ୍ର ଅନୁଭବ । ତାକୁ ପରେ ରଖ । ଏହା ସହିତ ମିଶେଇକି କହିବା ନି ।

● ଆପଣ ଗଳ୍ପ ଲେଖନ୍ତି; ଉପନ୍ୟାସ ବି ଲେଖନ୍ତି । ଆପଣ ଯେଉଁ କହିଲେ ଆପଣଙ୍କ ପ୍ରତ୍ୟେକ ପରିଚ୍ଛେଦ ଗୋଟାଏ ଗୋଟାଏ ଦୃଶ୍ୟ, ସେ ପରିଚ୍ଛେଦକୁ ଜଣେ ପାଠକ ଗଳ୍ପ ଭାବରେ ପଢ଼ିପାରିବ କି ?

● ନା, ସେଥିରେ ଗୋଟାଏ ବର୍ତ୍ତୁଳତା ଆସୁନି । ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ପାରୁନି ଗୋଟାଏ ପରିଚ୍ଛେଦ । ପରିଚ୍ଛେଦର ଉଭୟ ପାର୍ଶ୍ୱରେ ଯେପରି ଛାଡ଼ି ଦେଉଛି ଗୋଟାଏ ଖୋଲାଯାଗା । ଅବଶ୍ୟ ଗଳ୍ପରେ ଯେ ସବୁବେଳେ ଗୋଟାଏ ପୂର୍ଣ୍ଣତା

ରହିବ ଏମିତି କିଛି ନିୟମ ନାହିଁ । ଏବେ କେବଳ ବାତାବରଣଟିଏ ସୃଷ୍ଟି କରି ଗଳ୍ପ ଲେଖାଯାଉଛି । କେତେକ ଲେଖୁଛନ୍ତି ଏବଂ ତାଙ୍କର ବଳିଷ୍ଠ ଯୁକ୍ତି ହେଲା : "କେଉଁଠି ଜୀବନରେ ମୋତେ ଗୋଟିଏ ବର୍ତ୍ତୁଳ ଘଟଣା ଦେଖାଇ ଦିଅ ।" ଜୀବନ ଗୋଟାଏ ପ୍ରବାହ । ଯଦି ଜୀବନ ଏପରି ସାହିତ୍ୟ– ଗଳ୍ପ ବା ଉପନ୍ୟାସ କାହିଁକି ସେମିତି ହେବନି ?

● ଆପଣଙ୍କ ଉପନ୍ୟାସରେ ବର୍ତ୍ତୁଳ ଚରିତ୍ରର ଅଭାବ ପରିଲକ୍ଷିତ ହୁଏ । ଚରିତ୍ର-ମାନଙ୍କ ବିକାଶ ଘଟିଛି, ବିବର୍ତ୍ତନ ଘଟିନାହିଁ ।

● ଠିକ୍ ସେମିତି ନୁହେଁ । ବର୍ତ୍ତୁଳ ଚରିତ୍ର କହିଲେ ତୁମେ Round ଚରିତ୍ର କଥା କହୁଛ ତ ? ଉପନ୍ୟାସରେ ଜୟରାମ ବାବୁଙ୍କର କଣ କିଛି ପରିବର୍ତ୍ତନ ହୋଇନି ? ସେ ଯେ ଏତେ ଗର୍ବିତ ଲୋକ ପରିଶେଷରେ ଏମିତି ହାରିଯିବେ ଏହି କଥାଟି କଣ ମୂଳରୁ ଜଣା ପଡୁଥିଲା କି ? ଏମିତି ହାରିଯିବେ, କୁକୁର-ଟିଏ ସହିତ ଗ୍ରାସ ଖାଇବେ ଓ ଚାଲିଯିବେ ?

● ଜୟରାମ ବାବୁଙ୍କ ଏହି କୁକୁର ସହିତ ଚାଲିଯିବା କେମିତି Artificial ଲାଗେ ?

● ହଁ, ସତ । ସତ୍ୟଟି ଯେ ସେ କୁକୁର ପିଲା ଏବଂ ତାକୁ ଛାଡ଼ି ବି ସେ ଚାଲି ଯାଉଛି ।

● ଆପଣଙ୍କ ଉପନ୍ୟାସମାନଙ୍କରେ ତିନି ଚାରିଟି ସ୍ୱପ୍ନ ଅଛି । ସ୍ୱପ୍ନ ଗୁଡ଼ିକ ପରବର୍ତ୍ତୀ କାଳରେ କିଛି ପରିବର୍ତ୍ତନ ସହ କିମ୍ବା ଗୋଟାପଣେ ସତ୍ୟ ହୋଇଛି ।

● ସ୍ୱପ୍ନଟି ସେୟା । ସେଇଟା ଆଉ ଗୋଟାଏ ପର୍ଯ୍ୟାୟର ସତ୍ୟ । ସ୍ୱପ୍ନର ଭିନ୍ନ ଭିନ୍ନ ସ୍ତର ଅଛି । ଯେଉଁ ସ୍ୱପ୍ନ ଗୁଡ଼ିକରେ କୌଣସି ପ୍ରକାର ଛନ୍ଦ ନାହିଁ, କୌଣସି ବ୍ୟକ୍ତିକତା ନାହିଁ, ଭଙ୍ଗା ଭଙ୍ଗା ମନେ ହେବ ସେ ଗୋଟାଏ ସ୍ୱପ୍ନ । ଆଉ ଗୋଟାଏ ସ୍ୱପ୍ନ ଖୁବ୍ ସଂଗଠିତ, ବିନ୍ୟସ୍ତ ଏବଂ ମନେହେବ ଜାଗ୍ରତ ଅବସ୍ଥାରେ ଗୋଟାଏ ପ୍ରତ୍ୟକ୍ଷ ଅନୁଭବ ପାଉଛୁଁ । ଏହାକୁ Vision ବୋଲି କହନ୍ତି । ମନ ମଧ୍ୟରେ ଭବିଷ୍ୟତକୁ ଧାରଣ କରିବାର ଅସଂଖ୍ୟ ସମ୍ଭାବନା ରହିଛି;

ଅବଶ୍ୟ ସମସ୍ତଙ୍କ କ୍ଷେତ୍ରରେ ନୁହେଁ । ଯେଉଁମାନେ ପ୍ରସ୍ତୁତ ତାଙ୍କ ମନ ଭିତରେ ଏଇ ଭବନା ଗୁଡାକ ରହିଛି । ଅତଏବ ଯାହା ଘଟିବାକୁ ଯାଉଛି ତାହା ଆଭସ । ତାକୁ Premonition ବୋଲି କୁହାଯାଏ । ସେ ଆସି ଧଗ ଦିଏ । ସେହି-ଭଳି ସ୍ୱପ୍ନ କଥା କିଛି କୁହାଯାଉ । ସାଧାରଣ ଭଂଗାରୁଜା ସ୍ୱପ୍ନ ନୁହେଁ ।

● ମନ୍ଦିର ପାଖେ ସନାତନ ଦାସ ଯେଉଁ ସ୍ୱପ୍ନ ଦେଖିଲେ, ସୁନ୍ଦର ଛୋଟ ଠେକୁଆଟିଏ ଜଣେ ଅଦୃଶ୍ୟ କେଉଟ ବନିଶୀ କଣ୍ଟାରେ ଟଣା ହୋଇ ଯାଉଛି । ମୁଁ ସେତେବେଳେ ଧାରଣା କରି ନେଲି ଯେ ସ୍ୱପ୍ନଟି ସତ୍ୟ ହେବ । ପୁଣି ମେଘ ଗମ୍ଭୀର ଗତିରେ ଗର୍ଜନ ନାହିଁ ବର୍ଷା ନାହିଁ, ଗୋଟିଏ ମଇଁଷି ଆସି ଘର ଭିତରକୁ ପଶି ଯାଇଛି, ସନାତନ ଦାସଙ୍କ ନିଦ ଭଂଗି ଯାଇଛି, ସେ ପାଣି ଖୋଜୁଛନ୍ତି—

● ପ୍ରଥମଟିରେ ସନାତନ ଦାସଙ୍କ ପୁଅଟିଏ ମରି ଯିବାର Premonition ଓ ଦ୍ୱିତୀୟଟି ଟୁକୁମାର ମୃତ୍ୟୁ ସଂପର୍କୀୟ ।

● ବର୍ଷା ଶୂନ୍ୟ ଗୋଟାଏ ଆକାଶ, ପବନ ଶୂନ୍ୟ ଗୋଟାଏ ପୃଥିବୀ, କୃପଣ ଗୋଟାଏ ପରିବେଶ ସହ ଦୁର୍ଘଟଣାର ଗୋଟାଏ association ଆପଣଙ୍କ ଉପନ୍ୟାସରେ ରହିଛି ।

● ହଁ, ଲେଖକ ସେ ବିଷୟରେ ସଚେତନ ନୁହେଁ; ତାହା ହୋଇପାରେ । Association ରହିଛି ନା କଣ ? କଣଟାଏ କୋଉଠି କାହା ସଙ୍ଗେ ଯୋଡ଼ି ହୋଇ ଯାଇଥିବ ଏବଂ ସୂତା ଦେହରେ ମାଳି ଗୁନ୍ଥେଇ ହେଲା ଭଳି ସେ ସବୁ ଟାଣି ଆଣିଲେ ବଢେ ବଢେ ଗ୍ଭଲି ଆସିବ ।

● 'ଜାଇ କୁମ୍ଭାରୁଣୀ' ଗଳ୍ପରେ ଯାହା ପରବର୍ତ୍ତୀ କାଳରେ ପ୍ରକାଶ ପାଇଲା, ସ୍ରଷ୍ଟା ସହିତ କୁମ୍ଭାରର ତୁଳନା— 'ଯନ୍ତ୍ରାରୂଢ'ରେ ସନାତନ ଦାସ ସେହି କଥାହିଁ କହିଛନ୍ତି । ଏଇଟା ଆପଣଙ୍କ ମନରେ ମୋଡ଼ି ହୋଇଥିବା ସେମିତି ଗୋଟିଏ ରୂପକଳ୍ପ ।

● ସ୍ରଷ୍ଟାର Image ସହିତ କୁମ୍ଭାରର ଯୋଡା ଯିବାଟା ମୋର ନୁହେଁ, ସେଇଟା ଉପନିଷଦୀୟ । ସେଥିରେ ଯେତେବେଳେ କୁହାଯାଉଛି ଉପାଦାନ କାରଣରୁ ନିମିତ୍ତ କାରଣ ଏକ ବୋଲି ଏଇ କୁମ୍ଭକାର କଥାଟା ଆସିଛି । ଆମେ ଲେଖୁଛୁ ଯେ ମାଟି ହେଉଛି ଉପାଦାନ ଏ ଅଲଟ ଚକ୍ର ହେଉଛି ଯନ୍ତ୍ର । କୁମ୍ଭକାର ହେଉଛି ସ୍ରଷ୍ଟା । ଏପରି ପରିସ୍ଥିତି କଣ ସମ୍ଭବ କି ? ଯେତେବେଳେ ସ୍ରଷ୍ଟା ନିଜେ ସେ ଯନ୍ତ୍ରରେ ନିଜକୁ ଥୋଇ ଗଢିବ– ଯଦି ଗଢିପାରେ, ତାହା ହିଁ ଏ ସୃଷ୍ଟିର ରହସ୍ୟ ।

● ନବ ଜାତକର ପୃଷ୍ଠଭୂମି ସଂପର୍କରେ ଏବେ କହିବେ କି ?

● ମୋର ପ୍ରଥମ ବିସ୍ମୟ ହେଉଛି ତମେମାନେ 'ନବ ଜାତକ' କିପରି ପଢିଲ ? କେମିତି ଲାଗିଲା ।

● ପାଠକମାନଙ୍କ ପ୍ରତି ଏତେଟା ସନ୍ଦେହ କରିଥିବାରୁ ଆମେ ଦୁଃଖିତ । ଆପଣ ଯେତେବେଳେ ହୃଦାନନ୍ଦ ରାୟଙ୍କ ଟୀକା ଖଂଜି ଆମକୁ ବହିଟି ଦେଉଛନ୍ତି ମୋର ମନେହେଲା ପାଠକମାନଙ୍କ ସାମର୍ଥ୍ୟ ଉପରେ ଆପଣଙ୍କ ସନ୍ଦେହ ଥିଲା ।

● 'ନବ ଜାତକ'ରେ ପ୍ରକୃତ ଉପନ୍ୟାସ ଲେଖିବାପାଇଁ ଉପନ୍ୟାସ ଲେଖା ଯାଇ-ନାହିଁ । ମୁଁ ତୁମକୁ ଥରେ କହିଥିଲି ନା କଣ, ଭାରତୀୟ ଦର୍ଶନର ସବୁ ବୃତ୍ତାନ୍ତ କଥା ତା ଭିତରେ ଗର୍ଭିତ ହୋଇଛି । ଭାରତୀୟ ଦର୍ଶନରୁ ସାମାନ୍ୟ ଗୋଟିଏ ଗୋଟିଏ କଣିକା ନେଇ ଯେଉଁଭଳି କୃତି କରିଛନ୍ତି ଯେମିତି 'ସିଦ୍ଧାର୍ଥ', 'ଜନାଥନ୍ ସିଗଲ୍' । ଅଥଚ ଦୁଃଖ ଓ ବିସ୍ମୟ କଥା ଭାରତୀୟ ସାହିତ୍ୟରେ ଏ ପର୍ଯ୍ୟନ୍ତ କିଛି ସେ ବିଷୟରେ ପ୍ରକାଶ ପାଇନାହିଁ । ରାଜା ରାଓଙ୍କର "Sarpent and the rope" ରେ କାହିଁ ସେଭଳି ଭାବରେ ତାହା ପରିସ୍ଫୁଟ ହୋଇନାହିଁ, ପ୍ରତିଫଳିତ ହୋଇନାହିଁ । ଭାରତୀୟ ଦର୍ଶନ ଭାରତୀୟ ସାହିତ୍ୟରେ କାହିଁକି ପ୍ରତିଫଳିତ ହୋଇନି ଏଇୟା ମୋ ମନରେ ଗୋଟିଏ ପ୍ରତିକ୍ରିୟା ହେବାରୁ ମୁଁ ସେ ବିଷୟରେ କିଛି ଦିନ ଚିନ୍ତା କଲି ଓ ତାପରେ 'ନବ ଜାତକ' ଜନ୍ମ ନେଲା । ତୁମେ ଲକ୍ଷ୍ୟ କରିଥିବ ବହୁ ଅସାଧାରଣ ଓ ଅତିନ୍ଦ୍ରିୟ ଜଗତର କଥା ଗୁଡ଼ାକ

ଅତି ସରଳ ଭାବରେ କହି ଦିଆ ଯାଇଛି । ଯାହା ଯାହା ସେଥିରେ ଘଟିଛି ସବୁ ଆଲୌକିକ । ସେଥିରେ ଚରିତ୍ର ଗୁଡ଼ିକ ଗୌଣ, ତତ୍ତ୍ୱ ପ୍ରଧାନ ଲେଖା ।

● 'ଯନ୍ତ୍ରାରୂଢ଼' ଉପନ୍ୟାସ ଆରମ୍ଭ ସଂପର୍କରେ ଆପଣ ଲେଖିଛନ୍ତି; 'ନବଜାତକ'ର ଆରମ୍ଭ ବିଷୟରେ ଏବେ କହିଲେ । 'ଅସୂର୍ଯ୍ୟ ଉପନିବେଶ' ସଂପର୍କରେ କଣ ଘଟିଲା ?

● 'ଅସୂର୍ଯ୍ୟ ଉପନିବେଶ'ଟା ଉପନ୍ୟାସ ଲେଖିବାପରେ ନାମକରଣ ହୋଇଛି ଏଣୁ ପ୍ରଥମେ ଅସୂର୍ଯ୍ୟ ଉପନିବେଶ ଦେଖିନି ଓ ତାପରେ ଉପନ୍ୟାସ ଲେଖିଛି ଏଇଟା ନୁହେଁ । ମୋ ମନଭିତରେ ସେତେବେଳେ ଗୋଟାଏ ଦ୍ୱନ୍ଦ୍ୱ ଥିଲା । ଭୁବନେଶ୍ୱର ଓ ଅନ୍ୟାନ୍ୟ ସହରମାନଙ୍କରେ ମୁଁ ଯେଉଁ ମୂଲ୍ୟବୋଧର ପତନ ଦେଖୁଥିଲି, ଯେଉଁମାନେ ନ୍ୟାୟନିଷ୍ଠ ସତ୍ୟବାନ ଲୋକ ତାଙ୍କର ଯେଉଁ ବିନାଶ ଦେଖୁଥିଲି ତାଙ୍କ ସକାଶେ ମୁଁ ଆଶଂକିତ ଥିଲି । ସେଇଠୁ ଏହାର ଆରମ୍ଭ ହୋଇଛି । ଯେକୌଣସି ଉପନ୍ୟାସରେ ଆମେ ଦେଖୁଛୁଁ ସତ୍ ଚରିତ୍ରର ଜୟହେବ ଓ ଅସତ୍ ଚରିତ୍ରର କ୍ଷୟହେବ, ସେ ଦଣ୍ଡିତ ହେବ । ସତ୍ ଚରିତ୍ରଟି ଯେତେ କଷ୍ଟ ସହି-ଥାଉନା କାହିଁକି ତାର ଉତ୍ତରଣ ହେବ । ଅଥଚ ଏବେ ସଂସାରରେ ଖଳ ଚରିତ୍ରମାନେ ଜୟ ଲାଭ କରୁଛନ୍ତି । ସେଇଥିରୁ ଏହା ଏକ ପ୍ରତିକ୍ରିୟାତ୍ମକ ଉପନ୍ୟାସ । ଏହି ପ୍ରତିକ୍ରିୟାରୁ ଗୋଟିଏ ତୀକ୍ଷ୍ଣତା ଆସିଛି ଏବଂ ସେହି ଅନୁପାତରେ କିଛି କିଛି ଅସ୍ୱାଭାବିକତା ବି ରହିଛି ।

● ଆପଣ କେବେ ଓ କେମିତି ଠିକ୍‌କଲେ ଏ ସମ୍ପର୍କରେ ଗୋଟିଏ ଉପନ୍ୟାସ ଲେଖିବି ?

● ମୁଁ ପ୍ରଥମେ ଜୟରାମ ଚରିତ୍ର ଠିକ୍ କଲି । ସେ ହେଉଛନ୍ତି ପ୍ରଫେସର ଜୟରାମ । ପ୍ରଫେସର ଜୟରାମଙ୍କୁ ମୁଁ ବାରିପଦାରେ ଭେଟିଛି । ତାଙ୍କରି ଝିଅର ନାଁ ମଧ୍ୟ ରାଣୀ । ତାଙ୍କ ଘରକୁ ମୁଁ ବାରମ୍ବାର ଯାଇଛି—ଏକୁଟିଆ ରହିବା ସମୟରେ ସେ କେମିତି ଖାଇବେ, କେମିତି ରହିବେ ଇତ୍ୟାଦି । ତାଙ୍କ ପ୍ରତି ଗୋଟିଏ ପ୍ରକାର ସମ୍ବେଦନଶୀଳ ହୋଇ ପଡ଼ିଲି ଏବଂ ସେଇଟା ମୋ ଭିତରେ ସଞ୍ଚିତ ହେଲା । ତାପରେ ହଠାତ୍ ଦିନେ ସନାତନ ଦାସ ଆସି ଯେମିତି ଉଭା ହେଲେ ସେମିତି

ଜୟରାମ ଆସି ପହଞ୍ଚିଲେ । ତାପରେ ଉପନ୍ୟାସର ପ୍ରଥମ ପରିଛେଦଟି ମୁଁ ଦେଖିଲି : ଜୟରାମ ତାଙ୍କ ଅତୀତ ଜୀବନ ଉନ୍ମୋଚନ କରୁଛନ୍ତି । ଏଇଟା ଲେଖି ଦେଲାପରେ ମୋତେ କିଛି ସମୟ ପୁଣି ଅପେକ୍ଷା କରିବାକୁ ପଡ଼ିଥିଲା । ଯେମିତି 'ଯନ୍ତ୍ରାରୂଢ଼'କୁ ଏକୋଇଶ ଦିନରେ ଦେଖିଲି । ଏତେ ସହଜ ଭାବରେ ଏତେ ସୁନ୍ଦର ଭାବରେ କୌଣସି ଉପନ୍ୟାସ ପ୍ରବାହ ବୋଧହୁଏ ମୋ ଜୀବନରେ ଆଉ ସମ୍ଭବ ନୁହେଁ । 'ଅସୂର୍ଯ୍ୟ ଉପନିବେଶ' ପ୍ରଥମ ପରିଛେଦ ଲେଖାର ମାସେ ଦି ମାସ ପରେ ଆଉ ଗୋଟିଏ ଦୃଶ୍ୟ ଦେଖିଲି । ଜୟରାମ ସିଗାରେଟ୍ ପିଉ-ଛନ୍ତି । ସେଇଠୁ ଆସ୍ତେ ଆସ୍ତେ ଲେଖା ଲାଗିଗଲା ଏବଂ ଯାହା 'ଯନ୍ତ୍ରାରୂଢ଼' ପାଇଁ ସତ୍ୟ ତାହା 'ଅସୂର୍ଯ୍ୟ ଉପନିବେଶ' ପାଇଁ ସତ୍ୟ । ଗୋଟାଏ ପରିଛେଦ ଲେଖି ସାରିଲା ପରେ ମତେ ସେତେବେଳେ ପଚାରିଲେ କହି ପାରିବିନି, ତାପରେ କ'ଣ ହେବ । ଗୋଟାଏ ନଦୀ ପରି ତା ମନକୁ ବିନ୍ୟସ୍ତ ହୋଇଯିବ ।

● 'ଅସୂର୍ଯ୍ୟ ଉପନିବେଶ' ଲେଖିଲାବେଳେ ଆପଣ ଟିଟିଲାଗଡରେ ଥିଲେ ?

● ହଁ, ଟିଟିଲାଗଡରେ ଥିଲି । ଟିଟିଲାଗଡରେ ଭୀଷଣ ଗରମ ହୁଏ । (ହସି) ପବନ ଜମା ହୁଏନି । ତମେ ଯଦି ଅଢେଇ ବର୍ଷ ଧରି ଗୋଟାଏ ଉପନ୍ୟାସକୁ ଜଠର ଭିତରେ ଧାରଣ କରିବ,ତମ ଜୀବନରେ ଘଟୁଥିବା ଘଟଣା ଗୁଡ଼ିକ କୌଣସି ପ୍ରକାରେ ଯାଇ ସଞ୍ଚରୀ ଯିବ ନା ନାଇଁ ? କିଛି କିଛି ତା ଭିତରେ ପ୍ରତିଫଳନ ଅଛି ନା କଣ ?

● ମୁଁ ସେଇଟା ଭାବୁଥିଲି, ସେଠାରେ ଲେଖିଛନ୍ତି । ଏଠାରୁ ସନ୍ଧ୍ୟାରେ ବାହାରି ସକାଳେ ରାଜଧାନୀରେ ପହଞ୍ଚି ହୁଏ । ତେବେ ଉପନ୍ୟାସର ଘଟଣାସ୍ଥଳ ରାଜଧାନୀଠାରୁ ଦୂରରେ କଳ୍ପନା କରିଛନ୍ତି ନିଶ୍ଚୟ ।

● ଏତେ ଦୂର ନିଠେଇ ପଡିଛ ନା କଣ ? ଆରେ ବାପ୍‌ରେ (ହସି) ।

● ଆମେ 'ଯନ୍ତ୍ରାରୂଢ' ରେ ଦେଖୁଁ ମୁଖ୍ୟତଃ ଗୋଟିଏ ଗାଆଁ । 'ଅସୂର୍ଯ୍ୟ ଉପ-ନିବେଶ'ରେ ଏକ ସହର, 'ନବ ଜାତକ'ରେ ସହର ନୁହେଁ, ଗାଆଁ ନୁହେଁ, ଆଉ କିଛି; ଅଥଚ ସହର ବାହାରେ । ତାହା କଣ ?

● ଏଥିରୁ ଏହା ସୂଚିତ ହେଉଛି ଯେ ଏହା 'ଯନ୍ତ୍ରାରୂଢ'ର ଗାଁ ନୁହେଁ । 'ଅସ୍ପୃଶ୍ୟ ଉପନିବେଶ'ର ସହର ନୁହେଁ । ଏହା ଏହା ନୁହେଁ, ଏହା ନୁହେଁ । (ହସି) ସହର ଉପାନ୍ତଟା କଣ ଏ ବିଷୟରେ ତାଙ୍କ ବ୍ୟାଖ୍ୟା ତ ଚିଦାନନ୍ଦ ବାବୁ ଦେଇ ଛନ୍ତି ।

● ସେଇଟା ବି ପଢ଼ିଛୁଁ । ତେବେ ସେ ବି ଜଣେ ଆମପରି ପାଠକ । ଆପଣଙ୍କ ମତ କଣ ?

● ହଁ, ତା ଠିକ୍ । ସେ ବି ଜଣେ ପାଠକ । ତେବେ ସେ ଜଣେ ମୁଗ୍ଧ ପାଠକ ।

● ଆପଣ ଗପ ଲେଖନ୍ତି, ଉପନ୍ୟାସ ଲେଖନ୍ତି, ଚିତ୍ର କରନ୍ତି, ପୁଣି ମୂର୍ତ୍ତି ଗଢନ୍ତି । କେଉଁ ମାଧ୍ୟମରେ ଆପଣ ମନେ କରନ୍ତି ନିଜକୁ ଠିକ୍ ପ୍ରକାଶ କରିପାରନ୍ତି ।

● ଏ ସବୁ ଗୋଟାଏ ଗୋଟାଏ expression । ବେଳେବେଳେ ମତେ ଲଗେ ଯେ କଥାରେ ଯାହା କହିହେବନି ତାକୁ ରଂଗରେ କହିହେବ ଏବଂ ଯାହା ରଙ୍ଗରେ କହିହେବନି ତାହା କଥାରେ କହିହେବ ।

● ଆପଣଙ୍କ ଉପନ୍ୟାସରେ ଯେଉଁ ଚିତ୍ରଧର୍ମୀ ରୂପକଳ୍ପ ଅଧିକ ପରିଲକ୍ଷିତ ହୁଏ, ଏହା ହେଉଛି ଏହାର ଏକ ପରିପୂରକ କ୍ରିୟା ।

● ସମ୍ଭବ ।

● ଓଡ଼ିଆ ଉପନ୍ୟାସକାରମାନଙ୍କ ସମ୍ପର୍କରେ କିଛି କହିବେ କି ?

● ଗୋପୀନାଥ ମହାନ୍ତିଙ୍କ ସାଙ୍ଗରେ ବହୁ ଦିନର ଘନିଷ୍ଠ ସମ୍ପର୍କ । ଗୋପୀନାଥ ମହାନ୍ତିଙ୍କ ସ୍ଥାନ ଓଡ଼ିଆ ଉପନ୍ୟାସରେ ବୋଧହୁଏ ଅନନ୍ୟ । ଚରିତ୍ରର ଗଭୀରକୁ ଯାଇ ସତ୍ୟ ଖୋଜିବାର ସେ ପ୍ରଥମ ଔପନ୍ୟାସିକ । ଚରିତ୍ରକୁ ଟିକିନିଖି ଦେଖାଇବା ଓ ତା ସାଙ୍ଗରେ ପରିବେଶକୁ ଗୁନ୍ଥିବାର ପରେ ଭାଷା ବେଶୀ ବେଶୀ ସମ୍ପୃକ୍ତିଆ ହୋଇଗଲା । ସାରଳାଙ୍କ ମହାଭାରତରେ ଯେଉଁ ମୌଳିକ ଓଡ଼ିଆ ମିଳେ, ସେ ଭାଷାଟା ଆମେ ଆଦରି ପାରିଲୁ ନାହିଁ । ଆମେ କିଛି କିଛି ଇଂରାଜୀ ଶବ୍ଦ ନେଇ ଆସୁଛୁଁ, କିନ୍ତୁ ଓଡ଼ିଆ ଶବ୍ଦ ସମ୍ଭାର ଏତେ ବେଶୀ ଅଛି,

ତାକୁ କିଏ ଆମକୁ ପଢି ଶୁଣାନ୍ତା ହେଲେ । ସେ ଭଷାର ଗୋଟିଏ ଛନ୍ଦ ଅଛି ଶକ୍ତି ଅଛି । ପିଲବେଳୁ ତାହା ମୁଁ ଶୁଣି ଶୁଣି ଆସିଛି । ଯତ୍ ସାମାନ୍ୟ ତୁମେ ମୋର ଭଷାରେ ଗୋଟିଏ ମୌଳିକତା ଲକ୍ଷ୍ୟ କରୁଛ ଏଇଯା ।

● ଆପଣ ବିଦେଶୀ ଔପନ୍ୟାସିକମାନଙ୍କର କଥା କହୁଥିଲେ ?

● ଯଦି ନିହାତି କାହାକୁ ଶ୍ରେଷ୍ଠ ସ୍ଥାନ ଦେବାକୁ ହୁଏ, ମୁଁ ଦସ୍ତୋଭସ୍କିଙ୍କୁ ଦେବି, ଟଲଷ୍ଟୟ ନିଶ୍ଚୟ ଆସିବେ, ଫକ୍‌ନର ଆସିବେ, ହେମିଙ୍ଗ ଓ୍ୱେ ଆସିବେ, ଏମିତିତ ତାଲିକା ଲମ୍ବା ହେବ । ଇଂରାଜୀ– ସାହିତ୍ୟର ଅଧ୍ୟାପକ ହୋଇଥିବା ହେତୁ ବହୁ ଉପନ୍ୟାସ ପଢିଛି, ପଢାଉଛି ।

● ଉପନ୍ୟାସର ଭବିଷ୍ୟତ ସମ୍ପର୍କରେ ଆପଣ କ'ଣ ମନେ କରନ୍ତି ? ଏହି **visual media** ପାଠକକୁ ଉପନ୍ୟାସଠାରୁ ଦୂରେଇ ନେବା ସମ୍ଭବ କି ?

● ନା, କଥା ହେଉଛି କୋଉଠି କଣ ମିଳେ ? ଟି.ଭି.ରେ ଯାହା ମିଳୁଛି, ଯଦି ସେଇ କଥାହିଁ ସେଇଭଳି ଭବରେ ଓଡ଼ିଆ ଉପନ୍ୟାସରେ ଲେଖାଯାଏ, ତାକୁ ପଢିବାର ଆବଶ୍ୟକତା ନାହିଁ । କିନ୍ତୁ ଯାହା ଟେଲିଭିଜନରେ ମିଳିବ ନାହିଁ, ତାକୁ ଯଦି ପାଠକ ନିକଟରେ ଉପସ୍ଥାପନ କରଯାଏ, ପାଠକ ପଢିବ ।

● ଆପଣ ଲେଖୁଥିବା ସମୟରେ ପୃଥିବୀରେ ଘଟୁଥିବା ଘଟଣାସବୁ ଉପନ୍ୟାସରେ କିମ୍ବା ଗଳ୍ପରେ ଅନୁପ୍ରବେଶ କରେ କି ?

● କରେ, କରେ ନାହିଁ । ଜିପ୍ ଗାଡ଼ି ଆଣି ତୁମକୁ ବସେଇ ଦିଆଗଲ । ତୁମେ ଜିପ୍‌କୁ ସ୍ୱୀକାର କଲ ଓ ବସିଗଲ । ବସିଗଲ ପରେ ଗ୍ରଳକ ତମର ଆୟତ୍ତରେ ନାହିଁ, ସିଏ ତାର ନେଇ ଯାଉଛି । ଇଚ୍ଛ୍ୟସ୍ଥିର ହୋଇ ଯାଇଛି, ତୁମେ ଯାଉଛ । ବାଟରେ ପଟୁଆର ଦେଖୁଛ, ଫୁଲ ଦେଖୁଛ, ଝଡ ଦେଖୁଛ । ଏସବୁ ତୁମକୁ ପ୍ରଭବିତ କରୁଛି, କିନ୍ତୁ ଜିପ୍ ଗାଡ଼ି ତୁମକୁ ଯେଉଁଠିକି ନେବାକଥା, ନେଉଛି । ଅତଏବ, ଯାହା ଦ୍ୱାର ତୁମେ ସମ୍ପୂର୍ଣ୍ଣ ଆଛନ୍ନ ହୋଇ ରହିଛ, ତା ଉପରେ ନିର୍ଭର କରୁଛି ଲେଖା । ମତେ ସନାତନ ଦାସ ଯେଉଁ ସମୟରେ ଆଛନ୍ନ କରି ରଖିଲେ, ସେ ସମୟରେ ପ୍ରତିଦିନ ଯେତେ ଯାହା ଘଟିଛି, ସେ

ବିଷୟରେ ମୁଁ ସଚେତନ ନୁହେଁ ନୁହଁ, କିନ୍ତୁ ତାଙ୍କ ଦ୍ୱାର ମୁଁ ସମ୍ପୂର୍ଣ୍ଣ ଆଚ୍ଛନ୍ନ ହୋଇଥିବା ହେତୁ ଯେଉଁ ଅପୂର୍ବ ଶୈଳୀ, ପୁଣି ତାର ଉପଯୋଗୀ ଭଷାର ଅଦ୍ଭୁତ ସମନ୍ୱୟ ଓଲିଆ ଉପନ୍ୟାସରେ ସେହିଁ କେବଳ କରିପାରିଛନ୍ତି ।

● ଗୋପୀନାଥ ମହାନ୍ତି ଓ ଆପଣଙ୍କ ଉପନ୍ୟାସ ଭିତରେ ଗୋଟିଏ ଅପୂର୍ବ ସାମ-ଞ୍ଜସ୍ୟ ରହିଛି, ଚିତ୍ରଧର୍ମୀତା । ସେ ଗୋଟିଏ ଚିତ୍ରକଳ୍ପ ଦେଲବେଳେ ବିସ୍ତୃତ ବର୍ଣ୍ଣନା କରନ୍ତି । ଆପଣ କିନ୍ତୁ କମ୍ ଶବ୍ଦ ମଧ୍ୟରେ ତାହା କରନ୍ତି ।

● ଏଇଟା ହୋଇପାରେ, ଗୋପୀନାଥ ମହାନ୍ତି ପେଣ୍ଟର ନୁହନ୍ତି ।

● ଆଉ ଶାନ୍ତନୁ କୁମାର ଆଚାର୍ଯ୍ୟ, ସୁରେନ୍ଦ୍ର ମହାନ୍ତି ?

● ଶାନ୍ତନୁ ବାବୁଙ୍କ ମୌଳିକତା ଓ ପ୍ରତିଭା ବିଷୟରେ ଦ୍ୱିମତ ନାହିଁ । କିନ୍ତୁ ମତେ ଲଗୁଛି ତାଙ୍କ ପ୍ରତିଭା ଯେପରି ସରି ସରି ଆସିଲାଣି । ଓଡ଼ିଆ ସାହିତ୍ୟକୁ ତାଙ୍କର ସ୍ୱତନ୍ତ୍ର ଅବଦାନ ରହିଛି । ଅସ୍ୱାଭାବିକତା ଓ ଆକସ୍ମିକତାରୁ ସେ ଶକ୍ତି ଆହରଣ କରନ୍ତି । ଏପରି କଥା କହିବେ ଯେଉଁଥିରେ ପାଠକ ଚମକି ଯିବ । ଆଉ ସୁରେନ୍ଦ୍ର ମହାନ୍ତି ? ସୁରେନ୍ଦ୍ର ମହାନ୍ତିଙ୍କ ଲେଖାଗୁଡ଼ିକ ବେଶ୍ ବୁଦ୍ଧିଦୀପ୍ତ । ସୁରେନ୍ଦ୍ର ମହାନ୍ତିଙ୍କ ଜୀବନରେ ବହୁପ୍ରକାର ଅନୁଭବ ଆସି ପହଞ୍ଚିଛି । ଖୁବ୍ ଅନୁଭବୀ ବ୍ୟକ୍ତି । ତତ୍‌ସତ୍ତ୍ୱେ ମୋତେ ବେଳେ ବେଳେ ଲଗେ ହୁଏତ ତାଙ୍କଠି ଜୀବନର ଗୋଟିଏ ଅଂଶ ଅଧୁରା ରହି ଯାଇଛି । 'ନୀଳଶୈଳ', 'ନୀଳାଦ୍ରି-ବିଜୟ' ପଢ଼ିଲାପରେ ମଧ୍ୟ ଲଗେ ଯେ କାହାଣୀ କହିବାପରି ସେ କହୁଛନ୍ତି, ତତ୍ ସଂକ୍ରାନ୍ତୀୟ ଆବେଗ ତାଙ୍କଠି ସଞ୍ଚାର ହେଉନାହିଁ । ଯେତେବେଳେ କୌଣସି ଓଡ଼ିଆ ଜଗନ୍ନାଥଙ୍କୁ କେନ୍ଦ୍ରକରି କିଛି କହେ, ସେଇଟା ଏହିପରି କେବଳ ଉପର ଠାଉରିଆ ଜିହ୍ୱାରୁ ଆସିଲପରି ହୁଏ ନାହିଁ । ତେବେ ବି ଉପନ୍ୟାସର କିଛି କ୍ଷତି ହୁଏନାହିଁ ।

● ଆପଣଙ୍କ ଆଉ କେଉଁ ପ୍ରିୟ ଉପନ୍ୟାସ, ପ୍ରିୟ ଔପନ୍ୟାସିକ ?

● କାହିଁକି ଏସବୁ ପଚାରୁଛ ? ଭଲ ଲାଗିବା କଥା ପଢ଼ିଲେ ମୋତେ କେତେ ଗୁଡ଼ିଏ କଥା ସ୍ୱୀକାର କରିବାକୁ ହେବ, ଯେଉଁଟା ମୁଁ ଚାହୁଁନି । କାରଣ ଓଡ଼ିଆ

ସାହିତ୍ୟ ବାହାରକୁହିଁ ଯିବାକୁ ହେବ । ମୁଁ ଭାବେ ଭାରତୀୟ ସାହିତ୍ୟରେ ଶରତ-ଚନ୍ଦ୍ରଙ୍କ ତୁଳନା ନାହିଁ । ଯଦି ଓଡ଼ିଆ ସାହିତ୍ୟରେ କେହି ତାଙ୍କର ପାଖାପାଖି ଯାଆନ୍ତି, ସେ କେବଳ ଫକୀର ମୋହନ । ଫକୀର ମୋହନଙ୍କ ଉପନ୍ୟାସରେ ଏତେ ସତ୍ୟ ନିଷ୍ଠତା ଥିଲା, ପୁଣି ଏତେ ବସ୍ତୁ ନିଷ୍ଠତା ଥିଲା, ସେ ଆଧୁନିକ ଉପନ୍ୟାସଠୁଁ ମଧ୍ୟ ବେଶୀ ଆଧୁନିକ । ଭାଷାରେ କଣ ଯାଦୁଥିଲା କେଜାଣି ? ସବୁ ଐଶ୍ୱର୍ଯ୍ୟ ନେଇ ଓଡ଼ିଆଭାଷା ଆତ୍ମପ୍ରକାଶ କରିଛି ସେଇଠି । ସେ ଗୁଡାକର ପ୍ରଭାବ ପଡ଼ିଛି, ପଡ଼ିନାହିଁ ।

● ସମକାଳୀନ ଯନ୍ତ୍ରଣା ଜର୍ଜରିତ ଜୀବନ ଆପଣଙ୍କୁ ସାହିତ୍ୟ ସର୍ଜନା ପାଇଁ କିପରି ପ୍ରେରଣିତ କରେ ?

● ତୁମେ ନିଆରେ ଆଙ୍ଗୁଠି ପୋଡ଼ି ଦେଲେ ତାହା ଯନ୍ତ୍ରଣା । ଏକଦା ଯନ୍ତ୍ରଣା ମୋର ହୋଇଥିଲା, ଯନ୍ତ୍ରଣାଠାରୁ ଦୂରରେ ରହି ତୁମେ ଯଦି ଭାବି, ଅନୁଭବ କରିବ, ଏଇଟା ହେଲା ବେଦନା । ଖୁବ୍ ଯନ୍ତ୍ରଣାରୁ ସାହିତ୍ୟ ସୃଷ୍ଟି ହୁଏ ନାହିଁ । ବେଦନା ବୋଧରୁ ସାହିତ୍ୟର ସୃଷ୍ଟି । ତେବେ ଏହି ଦୂରତାକୁ ତୁମେ ଯଦି ସ୍ୱୀକାର ନ କରିବ, ତାହେଲେ ସାହିତ୍ୟ ସର୍ଜନା କରିବ ନାହିଁ । ତୁମେ ଯନ୍ତ୍ରଣା ଭିତରେ ଯଦି ଝାସ ଦେବାକୁ ଚାହୁଁଛ, ସେଟା ତୁମ ଜୀବନର ଦୃଷ୍ଟିଭଙ୍ଗୀ । ଯଦି ଦୂରତାକୁ ସ୍ୱୀକାର କରିବ, ବେଦନା ଆସିପାରେ, ବେଦନାରୁ ସାହିତ୍ୟ ସୃଷ୍ଟି ହୋଇପାରେ ।

□

## ସାହିତ୍ୟ ମତେ ଯନ୍ତ୍ରଣାରୁ ମୁକ୍ତି ଦେଲା

□

ଓଡ଼ିଆ ଉପନ୍ୟାସ ଜଗତରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଏକ ବିସ୍ମୟ । କାହାଣୀର ବୈଚିତ୍ର୍ୟ ପୁଣି କଥନର ଅଦ୍ୱିତୀୟତା ତାଙ୍କୁ ଆଣି ଦେଇଛି ଉଭୟ, ପାଠକୀୟ ଶ୍ରଦ୍ଧା ଓ ସାରସ୍ୱତ ସିଦ୍ଧି । ସେଦିନ ସନ୍ଧ୍ୟାରେ ତାଙ୍କୁ ଅପେକ୍ଷା କଲାବେଳେ ଆମେ ଏ କଥାହିଁ ଭାବୁଥାଉଁ । ବିଳମ୍ବିତ ସନ୍ଧ୍ୟାରୁ ଗଭୀର ରାତ୍ରୀ ପର୍ଯ୍ୟନ୍ତ ଏକ ସୁଦୀର୍ଘ କଥାବାର୍ତ୍ତାରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଉଦ୍‌ଘାଟନ କରନ୍ତି ଏହାର ଅନିବାର୍ଯ୍ୟ ରହସ୍ୟ, ଏଥିରେ ଥିବା ଅଦ୍ଭୁତ ଐକ୍ୟତାନ ।

□

- ମନେହୁଏ 'ନରକିନ୍ନର' ରୁ 'ଶକୁନ୍ତଳା' ପର୍ଯ୍ୟନ୍ତ ଗୋଟିଏ କାହାଣୀର ଭିନ୍ନ ଭିନ୍ନ ପରିତଳ ଆପଣ ପ୍ରଦର୍ଶନ କରୁଛନ୍ତି, ଅଥଚ ଗୋଟିଏ କାହାଣୀରହିଁ ଅନୁ-ବୃତ୍ତି କରୁଛନ୍ତି । ସବୁ ଭିତରେ ଗୋଟିଏ ଐକ୍ୟତାନ ରହିଛି ।

- **Style** ଯଦି ଗୋଟିଏ ପ୍ରକାର ହୁଏ, ତେବେ ବାହ୍ୟତଃ ମନେ ହେବ ଲେଖକ ଗୋଟିଏ କଥା କହୁଛି । କିନ୍ତୁ ଯେଉଁମାନେ **Critic** ସେମାନେ କହୁ-ଛନ୍ତି ଗୋଟାଏ **Author** ଏତେ **variety** ର ଭାଷା ଓ **theme** ଓ **Character** କିପରି କରିପାରୁଛି । ଆପଣ ଯେଉଁ ଐକ୍ୟତାନ ବୋଲି କହୁଛନ୍ତି ତାର କାରଣ ହେଉଛି ଏ ସମସ୍ତ ଭିତରେ ପ୍ରକୃତିର ଗୋଟିଏ ମାର୍ମିକ ଐକ୍ୟ ରହିଛି । ସେହି ମାର୍ମିକ ଐକ୍ୟଟା ହେଉଛି— ମଣିଷର ଗଭୀର ମନସ୍ତତ୍ତ୍ୱ ଭିତରୁ ସମଗ୍ର ବିଶ୍ୱକୁ ଆଚ୍ଛାଦନ କଲାଭଳି ଗୋଟିଏ ଭାବ, ଯାହା ଭିତରେ ସାମ୍ୟ ଭାବ ପାଇଁ ଗୋଟିଏ ବ୍ୟାକୁଳ ପ୍ରଚେଷ୍ଟା ରହିଛି । ଏହାକୁ ଆପଣ ଐକ୍ୟତାନ ବୋଲି କହୁଛନ୍ତି । ଧରନ୍ତୁ 'ନରକିନ୍ନର'ରେ ସେ କହୁଛି,

"ମୁଁ ଜର୍ଜ ନୁହେଁ, ମୁଁ ମଣିଷ" । ଏଇ ସୂତ୍ରରେ ମୁଁ ସମସ୍ତଙ୍କ ସହିତ ସମାନ ଅଥଚ ମୁଁ ଏଇ ତଥାକଥିତ ସାମ୍ୟବାଦକୁ ସ୍ୱୀକାର କରେଁ ନାହିଁ । 'ଶତାବ୍ଦୀର ନଚିକେତା'ରେ ନଟବର ଓ ବିଭୂପ୍ରସାଦ ଦୁଇଟି ଭିନ୍ନ ଚରିତ୍ର ଅଥଚ ଏକ ହେବାକୁ, ଚାହୁଁଛନ୍ତି ହୋଇପାରି ନାହାନ୍ତି । 'ଶକୁନ୍ତଳା'ରେ ସାମାଜିକ ଭାବରେ ଏଇ ଦୁଇଟି ଉପନ୍ୟାସରେ କିଛି କିଛି Subjective ଆତ୍ମୀୟ ଅନୁଭୂତି ରହୁଛି । ଶକୁନ୍ତଳା‌ଟା ପୁରାପୁରି ସାମାଜିକ । କିନ୍ତୁ Search ଟା ସମାନ । ଶକୁନ୍ତଳା-ରେ ଯେ ଅନୁସନ୍ଧିତ୍ସୁ ପାଠକ ଏଇ ଐକ୍ୟତାନକୁ ପାଇବ । ପାଇବ ମାନେ, ଏଇଟା emphasis କରୁଛି ଲେଖକର ଗୋଟିଏ ନିଜସ୍ୱ thesis ଅଛି । ସେ thesis ଟାକୁ ସେ ପରୀକ୍ଷା କରୁଛି, thesis ଟାକୁ ସେ ସଂପୂର୍ଣ୍ଣ କରି-ବାକୁ ଚାହେଁ । କିନ୍ତୁ 'ନରକିନ୍ନର'ର ଆକାର ପ୍ରକାରଠୁ ଆରମ୍ଭ କରି ତାର tone, medium କଦାପି ଶକୁନ୍ତଳା ସହିତ ସମାନ ନୁହେଁ । 'ନରକିନ୍ନର'-ରେ ଜର୍ଜ ଯେପରି ତାର ଆତ୍ମ ପରିଚୟ ଖୋଜୁଛି । କିନ୍ତୁ ପରିତଳ ଭିନ୍ନ । ରେଁକୋ ଖୋଜୁଛି ମୁଁ ଭିନ୍ନ ମଣିଷ ନୁହେଁ ମୁଁ ସମାଜ ସହିତ ସଂଲଗ୍ନ ମଣିଷ । ଜର୍ଜ ଖୋଜୁଛି ମୁଁ କିଏ, ଏଇ ତଥା କଥିତ ବିଶ୍ୱ ସହିତ ମୋର କି ସଂପର୍କ ରହିଛି ? ମୁଁ କେଉଁଠୁ ଓ କାହିଁକି ଆସିଛି ? ପ୍ରତ୍ୟେକ ମଣିଷର ଏହା ଏକ ତାତ୍ତ୍ୱିକ ପ୍ରଶ୍ନ । Particularly ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ଏହି ବ୍ୟାକୁଳତା ଆହୁରି ବଢିଯାଇଛି । ତେଣୁ ଏଇଟା 'ନରକିନ୍ନର'ର ସମୟକୁ ଦେଖିଲେ ପ୍ରାଚୀନ, ଅଥଚ New search for Man. ଦ୍ୱିତୀୟ ବିଶ୍ୱ ଯୁଦ୍ଧପରେ Nationalism ର Concept ବଢିଛି । ଏହା ଭିତରେ ଯେଉଁ ମହାମାନବୀୟ ଭାବ ରହିଛି, ତାହା କୌଣସିମତେ ଆମେ ସମାଧାନ କରି ପାରିନୁ ଏଣୁ Unity in diversity ରହିଛି ଏହି ହେଉଛି ମଣିଷ । ପ୍ରତ୍ୟେକ ଲେଖକର ଏହା ହେଉଛି କର୍ତ୍ତବ୍ୟ Diversity ତ ଦେଖାଇବ ନିଶ୍ଚୟ, କିନ୍ତୁ ତା ଭିତରେ Unity ର ସୂତ୍ର ବି ଦେଖାଇବ ।

● ପ୍ରତ୍ୟେକ ଲେଖକର କହିବାର ଅଧିକାର ହେଉଛି , ଚରିତ୍ର ହେଉଛି ମୁଁ । ଆପଣ କହିଛନ୍ତି ଜର୍ଜ ହେଉଛି ମୁଁ । ତେବେ କେବେ ଓ କେମିତି ଏଇ ଜର୍ଜୀୟ ଅନୁଭୂତି ସହିତ ଆପଣ ସଂପର୍କିତ ?

● ଯେତେବେଳେ ମୁଁ Autobiography ଲେଖିବି, ସେତେବେଳେ କଥାଟା ସ୍ପଷ୍ଟ ହେବ । ଯେତେବେଳେ ଜଣେ Autobiography ଲେଖେ, ସେତେବେଳେ ସେ ନିଜକୁ ସମ୍ପୂର୍ଣ୍ଣ ଉଲଗ୍ନ କରିଦେବାପାଇଁ ପ୍ରସ୍ତୁତ ନଥିଲେ ଲେଖିବନି । ମୁଁ ଯେଉଁ କହିଛି George is my child hood ଏଥିରୁ ମୁଁ କିଛି ଆପଣଙ୍କୁ କହିପାରେଁ । ମୋର ନଅ ବର୍ଷ ବେଳେ ମାଆ ମରିଗଲେ । ଏଇଟା ମୋତେ ବଡ Shock ଭଳି ଆସିଲା । କିନ୍ତୁ ସେ ବିଷୟରେ ମୁଁ ସଚେତନ ନ ଥିଲି । ଯେଉଁଟା ମୁଁ ଏବେ Conscious ହେଉଛି ମାତୃବିଚ୍ଛେଦଟା କଣ ? Incidentally କଣ ହେଲା ଆମ ଘରେ ମୋତେ ଯା ଦାୟିତ୍ୱରେ ରଖାଗଲା, ଗୋଟିଏ ପ୍ରୌଢା ସ୍ତ୍ରୀଲୋକ, ସେ ଗୋଟିଏ ଗୃହିଣୀ । ପରେ ସେ ଘରର ମୁରବୀ ଭଳିଆ ହୋଇଗଲା । କିନ୍ତୁ ତାକୁ ଘରର ମୁରବୀ ଭାବିବା ମୋ ପକ୍ଷରେ ସମ୍ଭବ ନଥିଲା । ଅଥଚ ଲୋକେ ତାକୁ ଗ୍ରହଣ କରିଯାଇଥିଲେ । ଏଇ ଯେଉଁ conflict ଆସିଲା, ଗୋଟିଏ ବ୍ୟକ୍ତିର conflict ପରେ ଗୋଟିଏ social conflict ହୋଇଗଲା । ଆପଣ ଭାବନ୍ତୁ ଗୋଟିଏ ବ୍ରାହ୍ମଣ ପରିବାରରେ ଗୋଟିଏ ଚଷାଘରର ସ୍ତ୍ରୀଲୋକ ଯଦି ପ୍ରାଧାନ୍ୟ ବିସ୍ତାର କରିବାକୁ ଚେଷ୍ଟାକରେ ସେଠି social conflict ଆସିବ । ପୁଣି ଯେତେବେଳେ ଛୋଟ ଛୁଆଟି ଭାବିବ ଯେ "My mother's place is taken by another women of low caste", child social background ରୁ ଆସିଛି, ତା 'ମନରେ ଗୋଟିଏ ବେଖାପ ସୃଷ୍ଟିହେବ । ସେ ବୟସରେ ସେ Rationalise କରି ପାରିବ ନାହିଁ । ଆଜି ମୁଁ Rationalise କରି ପାରୁଛି । ତେଣୁ ସେ ଯେଉଁ Psyshological distress feel କରୁଥିଲା, ତାକୁ Accept କରଯାଇପାରେ କି ନାଁ ? ମୁଁ ମୋର ମାଁ ବୋଲି ସମ୍ବୋଧନ କରିବି ଗୋଟିଏ ସ୍ତ୍ରୀଲୋକକୁ ଯିଏ ମୋର ମାଁ ନୁହେଁ । କିନ୍ତୁ ଯୁଗ ଚାହୁଥିଲା ତାହାହିଁ ହେବା ଉଚିତ । ଆଜି ଏ ଯୁଗର ଯଦି ଶିଶୁ କୌଣସି ସ୍ତ୍ରୀକୁ ମାଁ ବୋଲି ସମ୍ବୋଧନ କରିପାରିଲା, ମୁଁ କହିବି ଯୁଗ ଧନ୍ୟ ହେଲା । ଏହି Cultural Integration ସେତେବେଳେ ନଥିଲା । ତେଣୁ ଜର୍ଜର conflict ଆରମ୍ଭ ହୋଇଛି Identifi-

cation ରୁ । ଏଥିରେ Sex ରହୁଛି, Identification problem ରହୁଛି, Socio-economic problem ରହୁଛି, ଯାହାର ପରିଣତି ହେଲା ମୁଁ ଗୋଟିଏ ସମୟରେ ପାଗଳ ହୋଇ ଯାଇଥିଲି । ସେ ପାଗଳାମି ଗୋଟାଏ spiritual direction ନେବାକୁ ଗ୍ରହୁଁଥିଲା । 'ଦକ୍ଷିଣାବର୍ତ୍ତ' ସଂପର୍କରେ ବହୁ ସାକ୍ଷାତକାରରେ ମୁଁ ଏକଥା କହିଛି । କିନ୍ତୁ ମୋର psychological distressରୁ ମୁକ୍ତ ହେବାକୁ 'ନରକିନ୍ନର' ମୋତେ ସାହାଯ୍ୟ କରିଛି । ସେଇଟା ଏକ ସତ୍ୟଧର୍ମୀ ଉପନ୍ୟାସ । Autobiographical ବି କୁହାଯିବ । କିନ୍ତୁ ଉପନ୍ୟାସରେ ସମୟ, ସ୍ଥାନ, ପାତ୍ରର ସତ୍ୟାସତ୍ୟ ରକ୍ଷା କରାଯାଇ ନାହିଁ । ଭାବଧାରାର କେବଳ ସତ୍ୟାସତ୍ୟ ରକ୍ଷିତ ହୋଇଛି । ଉପନ୍ୟାସରେ ସ୍ୱପ୍ନର ପରିତୃପ୍ତି ପାଇଁ ସୁବିଧା ହୁଏ, ନିଜକୁ ପରୀକ୍ଷା କରିବା ପାଇଁ ଉପନ୍ୟାସ ସାହାଯ୍ୟ କରେ, 'ନରକିନ୍ନର'ରେ ଏହାହିଁ ଘଟିଛି । କିନ୍ତୁ 'ନରକିନ୍ନର'ର ଚରିତ୍ର ଜର୍ଜ ଯେତିକି ଭାବରେ ମୋର ଭାବସତ୍ତା, ସେ ତାର ସେତିକି ନିଜସ୍ୱ । ଜର୍ଜ ଏକ ଚରିତ୍ର, ସେ ମୁଁ ନୁହେଁ । କିନ୍ତୁ ଶାନ୍ତନୁ କୁମାର ଆଚାର୍ଯ୍ୟର psychology ର ଗୋଟିଏ ଅଂଶକୁ ନେଇ ସେ ଜନ୍ମ ହୋଇଛି, ଗୋଟିଏ ପରିଣତି ପାଇଛି । ଯେଉଁ ପରିଣତିର ନାଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ବା ସ୍ୱାଧୀନତା ପରବର୍ତ୍ତୀ ପରିଣତି । ଯେତେବେଳେ ମଣିଷ ତାର ନିଜସ୍ୱ ପରିଚୟ ଖୋଜି ବୁଲୁଛି, ଗୋଟିଏ ମାନସିକ ସମାଧାନ ଖୋଜୁଛି, ସେତେବେଳେ 'ନରକିନ୍ନର' ର ସୃଷ୍ଟି । ସୌଭାଗ୍ୟ ବା ଦୁର୍ଭାଗ୍ୟ ବଶତଃ ଜଣେ ସତେଇଶ ଅଠେଇଶ ବର୍ଷର ଯୁବକ ତାକୁ Appreciate କରିଥିଲା; କାରଣ ସେ ନିଜେ ଭୁକ୍ତଭୋଗୀ ଥିଲା । ଏଣୁ ଅନୁଭୂତିର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏହା ଏକ ଆତ୍ମ ଚରିତମୂଳକ ଉପନ୍ୟାସ ।

- ଆମେ ଅନ୍ୟ ଏକ ସମୟ, ଅନ୍ୟ ଏକ ଭାରତବର୍ଷରେ ଏପରି ଏକ ପିଲାକୁ ଭେଟୁ, ଯେ ମାତୃହୀନ, ଗୃହିଣୀ ଦ୍ୱାରା ପରିଚାଳିତ, ତାର ବାପା ଜଣେ ସ୍ୱାଧୀନତା ସଂଗ୍ରାମୀ । ଅବଶ୍ୟ ବିଭୁପ୍ରସାଦ ବି ଏଇ ଶ୍ରେଣୀୟ—

- ଅନ୍ୟ ଏକ ଭାରତ ବର୍ଷରେ ଯେଉଁ ପିଲାକୁ ଦେଖୁଛନ୍ତି ତାହା ହେଉଛି ଜର୍ଜର

ସାମାଜିକ ପରିଚୟ । ଜର୍ଜ ଯଦି କହୁଥାନ୍ତା ମୁଁ ଭରତ ବର୍ଷରେ ଜନ୍ମ ହୋଇଛି, ମୁଁ କଟକର ସହରତଳି ଅଞ୍ଚଳରେ ଜନ୍ମ ହୋଇଛି, ତାହାହେଲେ ଯେତିକି Realistic ହୁଅନ୍ତା, ଅନ୍ୟ ଏକ ଭରତ ବର୍ଷରେ ସେତିକି Realistic କରଯାଇଛି ।

● ସେଥିପାଇଁ ମୁଁ କହୁଥିଲି ଆପଣଙ୍କ ଉପନ୍ୟାସଗୁଡ଼ିକ ପରସ୍ପର ପରିପୂରକ ।

● ନା, ସବୁଗୁଡ଼ିକ ନୁହେଁ । 'ଶକୁନ୍ତଳା' ଏ ଦୃଷ୍ଟିରୁ ପୂର ଭିନ୍ନ । ତେବେ ଏ ସମାନ ଚରିତ୍ରଗୁଡ଼ିକ ବି ଗୁଣ ଓ କର୍ମରେ ଭିନ୍ନ ଭିନ୍ନ । ତେବେ ସେହି ମଗ୍ନତା ଭିତରୁ ଯଦି ଜଣେ psychoanalyst ବାହାର କରିବ, ତା ହେଲେ ଜର୍ଜ ଓ ବିଭୂପ୍ରସାଦ ଉଭୟଙ୍କ ମଧ୍ୟରେ ସଂପର୍କ establish କରି-ଦେଇ ପାରିବ ।

● 'ବାପା' ଚରିତ୍ର ଗୁଡ଼ିକ ଆପଣ କେଉଠୁ ପାଇଲେ ? ଏଇଟା ଆପଣଙ୍କ ମନ ଭିତରେ ଥିବା 'ବାପା' prototype ର ରୂପକି ?

● ହଁ, ସେ ମୋ ନିଜ ବାପା । ଅନ୍ୟ ଏକ ଭରତ ବର୍ଷର ସେହି ପିଲାଟିର ଓ ବିଭୁ ପ୍ରସାଦର ବାପା, ସେ ମୋ ନିଜ ବାପା । ମୋତେ ସେ ତିଆରି କରି-ଛନ୍ତି, ମୋତେ ସେ ପ୍ରେରଣା ଦେଇଛନ୍ତି ।

● ଆଉ ଏକ ଶ୍ରେଣୀର ଚରିତ୍ର ଯେଉଁମାନେ ନା ଲେନିନ କହି ପାରୁଛନ୍ତି, ନା ମହାତ୍ମା ଗାନ୍ଧୀ କହି ପାରୁଛନ୍ତି । ଲେହ-ଲେହ ଓ ମହ-ମହ ହିଁ କରୁଛନ୍ତି ।

● ଏଇଟା ହେଉଛନ୍ତି ଆମର ସର୍ବସାଧାରଣ । ବର୍ତ୍ତମାନ ଯେଉଁମାନେ ଗାନ୍ଧୀଙ୍କୁ Worship କରନ୍ତି, ଗାନ୍ଧୀ କଣ ଜାଣନ୍ତି ନାହିଁ । ଶୁଣିକି କିଛି କିଛି ସମ୍ମାନ ଦିଅନ୍ତି । ସେ ଯେଉଁ ମଲିଆ ଚମାର ଗାନ୍ଧୀଙ୍କ ଚଉଦ ପୁରୁଷକୁ ଗାଳି କରିଥିଲା ବୋଲି ଜିଭ କାଟିଦେଲା, ସେମିତି ଲୋକମାନେ ।

● ଆପଣ ଅଶାନ୍ୱିତ ତ ? ପରବର୍ତ୍ତୀ କାଳରେ ଗାନ୍ଧୀବାଦ ବା ଅନ୍ୟକିଛି Positive ମୂଲ୍ୟବୋଧ ଫେରି ଆସିବ ?

● Positive thinking ହେଉଛି ମୋର ଗୋଟିଏ Solid foundation ଏଇ Positive thinking ଯୋଗୁଁ ମୁଁ ସାହିତ୍ୟ କ୍ଷେତ୍ରକୁ ଆସିଲି । ଅନ୍ୟ ଭବରେ ମୁଁ ବଞ୍ଚି ପାରିଥାନ୍ତି । ମୁଁ Industry ରେ ଚାକିରୀ କରୁଥିଲି, ବହୁତ ବେଶୀ ଦରମା ପାଉଥିଲି । ଅତି ସାଧାରଣ ସ୍ତରରୁ ଜଣେ-ଲୋକ ଅସାଧାରଣ ହୋଇପାରିବ, ମୁଁ ଏଥିପାଇଁ ଆଶାବାଦୀ । ମୋର ସମସ୍ତ ଚରିତ୍ର ଜଗତର କୌଣସି ଜାଗରେ ମୁଁ Passimism ଦେଖାଇ ନାହିଁ, Short Story ରେ ମଧ୍ୟ । ମୋତେ ଲଗେ ବ୍ୟର୍ଥତା ହେଉଛି Suicide । ଗୋଟିଏ ସମୟରେ ମୋର ଜୀବନ ଉପରେ ବି କୌଣସି ମମତା ନ ଥିଲା । ମୁଁ ଭବୁଥିଲି Suicide ଶ୍ରେୟ । ତେବେ ବି ମୁଁ Suicide ଟାକୁ ନିଜେ ଘୃଣାକରେ ।

● ଆପଣଙ୍କ ଉପନ୍ୟାସରେ ନାରୀ ଚରିତ୍ର ସମ୍ପର୍କରେ କିଛି କହିବେ ?

● ଚରିତ୍ରଟା ଯେତେ ପ୍ରତିନିଧି ମୂଳକ ହେବ, ସେଇଟା ସେତେ ବାସ୍ତବ ହେବ । ଚରିତ୍ର ଯଦି ଗୋଟିଏ ନିର୍ଦ୍ଦିଷ୍ଟ ନାମବାଚକ ହେଲା ବା ନିର୍ଦ୍ଦିଷ୍ଟ ଶାରୀରିକ ବର୍ଣ୍ଣନାବାଚକ ହେଲା, ସେ ଚରିତ୍ରଟା ସୀମିତ ହୁଏ । ଗୋଦରୀ ବୁଢୀର ଗୋଟିଏ ନାଁ ଥାଇପାରେ, ଏକଥା ପାଠକ ମନକୁ ଛୁଇଁଛି କି ନାହିଁ, ମୁଁ ଜାଣେ ନାହିଁ, କିନ୍ତୁ ମୁଁ ଯେତେବେଳେ ଏହା ଲେଖୁଥିଲି ତାର ନାଁ ଜାଣି ଶୁଣି ଆବିଷ୍କାର କରିବାକୁ ଇଚ୍ଛା କରିନାହିଁ, କାରଣ ସେ Represent କରୁଛି ଆମ ସମୟର ଗୋଟିଏ ନାରୀ ଜାତିକୁ । ଯେଉଁ ନାରୀଜାତି ମାତୃ ସ୍ଥାନୀୟା କିନ୍ତୁ ସମସ୍ତଙ୍କର ଭୋଗ୍ୟା ବୋଲି ସମସ୍ତଙ୍କର ଧାରଣା । ଭୋଗ୍ୟା ବୋଲି ସମସ୍ତେ ଦାବୀ ବି କରନ୍ତି । ଜର୍ଜ ମଧ୍ୟ ଦାବୀ କଲା ବୋଲି ଶେଷରେ ମାତୃଭବ ଫେରି ପାଇଲା । ସେମିତି ବୀର ସାମଲ ଯାହାକୁ ବୁଢୀ ପାଳି ପୋଷି ମଣିଷ କଲା, ସେ ବି ତାର ଅଧିକାର ସାବ୍ୟସ୍ତ କଲା । ଆମ ସମାଜ ନାରୀକୁ ତାର ନାରୀତ୍ୱର ପ୍ରାପ୍ୟ ଦେବାକୁ ନାରାଜ । ଆମେ କେବଳ ନାରୀକୁ ତାର ଯୌନ-ପ୍ରାପ୍ୟ ଦେବାକୁ ଚାହୁଁଛୁ । ତାର ଜାୟା ବା ଦେବୀତ୍ୱକୁ ସ୍ୱୀକାର କରୁନୁ । ଏ ଯେଉଁ crude ସମାଜର ପ୍ରତିନିଧିତ୍ୱ କରୁଛି ଗୋଟିଏ ବୁଢୀ (ଯୋହାକୁ

ଆମେ ଅଳ୍ପ ବୟସରେ ବି ବୁଢୀ କହୁଁ ତାକୁ ଗୋଦରୀ କରିଦେଲେ ଆହୁରି ପ୍ରତିନିଧି ମୂଳକ ହୋଇଗଲା) ଯେ ଆମକୁ ଆମର ସମସ୍ତ ସ୍ନେହ ଦେଉଛି ଅଥଚ ଆମେ ତାକୁ ମାଆର ସମ୍ମାନ ଦେବାକୁ ପ୍ରସ୍ତୁତ ନୋହୁଁ । ତାକୁ ଭଂଜ-ନାୟିକା କରାଯାଇ ପାରିଥାନ୍ତା, ଅଥଚ ଗୋଦରୀ କରାଯାଇଛି । ଭଂଜ-ନାୟିକା ହୋଇଥିଲେ ଚରିତ୍ରଟି ନଷ୍ଟ ହୋଇ ଯାଇଥାନ୍ତା, ଗୋଟିଏ Individual ହୋଇ ଯାଇଥାନ୍ତା । ଅବଶ୍ୟ ଏଇଟା Sub conscious ରୁ ଆସିଛି । ଏହାର ଆହୁରି ଏକ ଅର୍ଥ ରହିଛି । ସେ ଯେଉଁ ଚାଷୁଣୀଟି, ସେ ବି ଏଭଳି ଏକ ସ୍ତ୍ରୀଲୋକ, ସୁନ୍ଦରୀ ନୁହେଁ, ଖୁବ୍ ଦୃଢ଼ । ମହିଆ ହାଡୀର ସ୍ତ୍ରୀ ମଧ୍ୟ ସେହି ଶ୍ରେଣୀର । ଅଥଚ ଏହା ଏକ Individual, ସାର୍ବଜନୀନ ନୁହେଁ । ତା ପାଖରେ ନେତୃତ୍ୱ ଦେବାର କ୍ଷମତା ଅଛି, ସେ ଭଂଗି ଦେଇପାରେ, ଗତି ଦେଇପାରେ । ମୁଁ ଯେତେବେଳେ ଚରିତ୍ର select କରେଁ ତାକୁ ପ୍ରତିନିଧି-ମୂଳକ କରିବାକୁ ଚେଷ୍ଟା କରେଁ । ପ୍ରାୟତଃ ସେ ଗୋଟିଏ ଅବହେଳିତ ସ୍ତ୍ରୀ-ଲୋକ, କଦାକାର ହୋଇପାରେ, ତାର ବାହ୍ୟରୂପ ଆକର୍ଷଣୀୟ ହୋଇ ନ ପାରେ, ଏଇ ହେଉଛି ବୈଶିଷ୍ଟ୍ୟ । ବାହ୍ୟରୂପ ଆକର୍ଷଣୀୟ ହେଲେ ଯୌନ ସମ୍ପର୍କ ସ୍ଥାପନ ପାଇଁ ପ୍ରବୃତ୍ତି ରହିବ । କେତେକ କହନ୍ତି 'ନରକିନ୍ନର' ଉପ-ନ୍ୟାସରେ ଫ୍ରଏଡୀୟ ପ୍ରଭାବ ରହିଛ । ଯଦି ତାହା ଥାଆନ୍ତା, ତେବେ ସୁନ୍ଦରୀ ନାୟିକା କରାଯାଇଥାନ୍ତା ।

● ମୋର ନିଜମତ ହେଲା ଆପଣଙ୍କ ଉପନ୍ୟାସରେ ମାତୃତ୍ୱ ପାଇଁ ବିକଳମନା ଏକ ନାରୀ ଆପଣଙ୍କ ଅଧିକାଂଶ ନାରୀ ଚରିତ୍ରର prototype.

● ହଁ, ମାତୃତ୍ୱ ଓ ତାର ସ୍ୱୀକୃତି ପାଇଁ । ସମାଜରେ ତାର ପ୍ରତିପତ୍ତି ବିସ୍ତାରପାଇଁ କୌଣସି ସୁଯୋଗ ଆମେ ନାରୀକୁ ଦେଇ ନାହୁଁ । ଏମିତିକି ସାହିତ୍ୟରେ ବି ଚରିତ୍ର କରିନୁଁ । ଏକଥା ଆମେ ଘରେ ସ୍ୱୀକାର କରୁଛୁଁ ଅଥଚ ସମାଜରେ ସ୍ୱୀକାର କରୁନୁ । ଠିକ୍ ସେମିତି ଧୋବଣୀ ବୁଢୀର କଥା । ଗୋଟିଏ ନାରୀ, ତା ଭିତରେ କି ସୁନ୍ଦର କରୁଣ ନାରୀର ପ୍ରତିମୂର୍ତ୍ତି ରହିଛି । ଏକଥା ମୁଁ ଯଦି

Consciously କରିଛି ବୋଲି କୁହାଯିବା, ମୁଁ ଅସ୍ୱୀକାର କରିବି । Unconsciously ଆସିଛି ବୋଧହୁଏ । ଏହା ପଛରେ ବୋଧହୁଏ ରହିଛି ମୋତେ ପାଳନ କରିଥିବା ଆମଘରର ସେହି ସ୍ତ୍ରୀଲୋକଟି ।

● ଆପଣଙ୍କର ଆଉ କେଉଁ ଚରିତ୍ର ବିଷୟରେ କହିବାର ଅଛିକି ?

● 'ଶକୁନ୍ତଳା'ର ସେଇ ନାରୀ ଚରିତ୍ର, ଅପ୍‌ସରୀ ? ଶକୁନ୍ତଳା, ସେ ତ କଦାକାର ନୁହେଁ, ନିମ୍ନ ବର୍ଗୀୟ ନୁହେଁ, ସେ ତାହେଲେ କିଏ ? ସେ ଗୋଟିଏ ପ୍ରତୀକ– ଭାରତୀୟତା, Indianness । ଉପନ୍ୟାସର ଗୋଟିଏ ଜାଗାରେ ସେ ପ୍ରତୀକର ବ୍ୟାଖ୍ୟା କରାଯାଇଛି । ଭାରତୀୟ କହିଲେ କଣ ବୁଝୁ ଆମେ ? ଏଥିପାଇଁ ମହାଗ୍ରନ୍ଥ ପଢିବା ଦରକାର ନାହିଁ । ଦୁଇ ଚାରିଟା ନାଁ କହିଲେ ହିଁ ବୁଝାପଡେ । ଦ୍ରୌପଦୀ କହିଲେ, ସୀତା କହିଲେ, ଦମୟନ୍ତୀ କହିଲେ ହିଁ ବୁଝାଗଲା । ଶକୁନ୍ତଳାକୁ ସେହି ଅର୍ଥରେ, ତାର sublimity କୁ ଗ୍ରହଣ କରିଛି । ଭାରତୀୟ– ନାରୀ, ଭାରତ her-self । ଏହାହିଁ ଶକୁନ୍ତଳାର ଅର୍ଥ । 'ଶକୁନ୍ତଳା' ଉପନ୍ୟାସରେ ଶକୁନ୍ତଳା ଭାବର ପ୍ରାଧାନ୍ୟ ଅଛି । ତାର ବୈଚିତ୍ର୍ୟ ହେଉଛି 'Society as a whole' । ସମସ୍ତ ଉପନ୍ୟାସରେ ଯେତେ ଗୁଡ଼ିଏ ଚରିତ୍ର ଅଛନ୍ତି, ସେମାନେ collectively ଉପନ୍ୟାସଟିକୁ ତିଆରି କରୁଛନ୍ତି । ସେମାନେ ଯେମିତି ଗୋଟିଏ ବ୍ୟକ୍ତିର ବିଭିନ୍ନ ମୁଖ । କଣ୍ଠଆ, ତାର ଯେଉଁ ଚତୁଃସୀମା ଦିଆହୋଇଛି, ସେଇ ପର୍ବତମାଳା, ସେଇ ନଦୀ, ଜଣାଯାଏ ତାହାହିଁ ଭାରତ । ପ୍ରଥମ ଭାଗରେ ସେ ସ୍ଥାନର ଅଧିବାସୀ କିଏ ତାର ଐତିହ୍ୟ କଣ, ଏହାର ବ୍ୟାଖ୍ୟା କରାହୋଇଛି । ଦ୍ୱିତୀୟଭାଗରେ ଯେଉଁମାନେ ପରିବର୍ତ୍ତନ କରିବାକୁ ଆସିଲେ, ଆମେ ଯଦି ସେମାନଙ୍କୁ ନକ୍ସଲ୍ କହିବା, କଣ ଥେସିସ୍ ନେଇ ସେମାନେ ଆସିଛନ୍ତି, କୁହାଯାଇଛି, ତୃତୀୟ ଭାଗରେ ସେମାନେ ଯେଉଁ ପରୀକ୍ଷା କଲେ ସେଟା ଭାରତରେ ସଫଳ ହେଲା କି ? କାହିଁକି ହେଲା ନାହିଁ ? ଭାରତରେ ମାର୍କସିଜମ୍ ସଫଳ ହେବ ନାହିଁ ? ସଫଳ ହେବ, କାରଣ ପାଞ୍ଚହଜାର ବର୍ଷତଳୁ ସେହି ସମାନ

ଦର୍ଶନ ଉପରେ ଏ ସମାଜଟି ପ୍ରତିଷ୍ଠିତ, ଯାହାର ମୂଳମନ୍ତ୍ର ହେଉଛି "ଈଶାବାସ୍ୟମିଦଂ ସର୍ବଂ ଯତ୍ କିଞ୍ଚିତ୍ ଜଗତ୍ୟାଂଜଗତ୍, ତେନ ତ୍ୟକ୍ତେନ ଭୁଞ୍ଜିଥା ମା ଗୃଧ କସ୍ୟଚିତ୍ ଧନଂ" । ଏ ସମାଜରେ ଯଦି କୁହାଯିବ ମାର୍କସିଜମ୍‌ର ଅର୍ଥ ହେଉଛି ହିଂସା, ତାଙ୍କ ପାଖରେ ଏହା ନୂଆଁ ପ୍ରବୃତ୍ତି । ଭାରତରେ ଯଦି ମାର୍କସିଜମ୍ ତିଷ୍ଠିବ ତେବେ ତାହା ନୂଆଁ ଭାବରେ । 'ଶକୁନ୍ତଳା' ଗୋଟିଏ 'Socio-political' ଉପନ୍ୟାସ । ସେଠାରେ ସାଧାରଣ ଜନତାର ଦ୍ରଷ୍ଟାପଣିଆ ରହିଛି । ବିପ୍ଳବଟା ଯେତିକି ହିଂସାତ୍ମକ ହେବ ଆମର ଦ୍ରଷ୍ଟା ପଣିଆଁ ସେତିକି ବଢ଼ିବ, ଯେତିକି ସାମାଜିକ ହେବ ସେତିକି ସଫଳ ହେବ ।

● ଗୋଟିଏ ଉପନ୍ୟାସରେ ଆପଣ ପ୍ରତୀକାତ୍ମକ ଭାବରେ କହିଛନ୍ତି ଯେ "ମୂଷାମାନେ ଅମାରଟି ଲୁଟି ନେଲେ" । ସାଧାରଣ ଜନତାଙ୍କୁହିଁ ଏଠାରେ ମୂଷା କୁହାଯାଇଛି । ଏହି କ୍ଷେତ୍ରରେ ଘଟିଥିବା ବିପ୍ଳବକୁ ଆମେ ହିଂସାତ୍ମକ କହିବା ନାହିଁ ?

● ବିପ୍ଳବରେ ହିଂସାର ସ୍ଥାନ ଅଛି । ତେଣୁ ତ ଗାନ୍ଧୀ କହୁଥିଲେ ତମେ ସେ ପନ୍ଥା ଗ୍ରହଣ କରିବ ଯଦି କର, କିନ୍ତୁ ମୁଁ କହୁଥିବା ପନ୍ଥାରେ ଗଲେ that will be more Indian.

● ଉପନ୍ୟାସରେ ଘଟଣାକୁ ପ୍ରତୀକ ମାଧ୍ୟମରେ କହିବା ସମ୍ପର୍କରେ ଆପଣଙ୍କ ମତାମତ କଣ ?

● ତାହା ଔପନ୍ୟାସିକର ନିଜସ୍ୱ ସ୍ରଷ୍ଟାପଣିଆଁ ଉପରେ ନିର୍ଭର କରେ । ତାକୁ କିଏ ଶିଖାଏ ନାହିଁ ସେ କିପରି ଭାବରେ କଥା କହିବ, ଅନ୍ୟଲୋକ ବୁଝିବେ । ସେ ଜାଣିପାରେ କେଉଁ ଭାବରେ କହିଲେ ଅନ୍ୟଲୋକ ସହଜରେ, ସଂକ୍ଷେପରେ ବୁଝିପାରିବେ । ଏଇ ସଂକ୍ଷିପ୍ତିକରଣ ପାଇଁ ପ୍ରତୀକର ବ୍ୟବହାର ଆବଶ୍ୟକ ଥାଏ ଉପନ୍ୟାସରେ, କବିତାରେ, ଗଳ୍ପରେ ।

● ଘଟଣା ବର୍ଣ୍ଣନାବେଳେ ଆପଣ ବେଳେ ବେଳେ ଅବାସ୍ତବ ଅତିରଂଜନକୁ ମାଧ୍ୟମ ରୂପେ ଗ୍ରହଣ କରନ୍ତି, ବେଳେ ବେଳେ ସ୍ୱପ୍ନକୁ, ବେଳେ ବେଳେ

fantasyକୁ ଭବ ପ୍ରସାରଣର ମାଧ୍ୟମ କରନ୍ତି । ଏ ସପକ୍ଷରେ ଆପଣଙ୍କ ଯୁକ୍ତି କଣ ?

● ଭବ ସମ୍ପ୍ରସାରଣକୁ ସହଜସାଧ୍ୟ କରିବାପାଇଁ । ମଣିଷର ସ୍ୱପ୍ନ କଣ ବାସ୍ତବତାଠାରୁ ଭିନ୍ନ ? ସ୍ୱପ୍ନମାଧ୍ୟମରେ ଜଣେ ଯଦି ତାର ଲକ୍ଷ୍ୟ ପୂରଣ କରିପାରେ ତେବେ ଏହା ଭଲ ନା ଖରାପ ? ମାର୍କେ୍ୱଜ୍ ତାଙ୍କ ଉପନ୍ୟାସ ମାନଙ୍କରେ ଏସବୁର ବ୍ୟବହାର କରି ସଫଳତା ପାଇଛନ୍ତି । Artର ଗୋଟିଏ balance point ଅଛି । ସେହି balance point ଟା ଆଣିବାପାଇଁ ସେ ଏପରି କରିଛନ୍ତି, କାରଣ fantasy ଅନେକ ସମୟରେ ଅନେକ କଥା ଏପରି ତୀବ୍ର ଗତିରେ Communicate କରେ, ବାସ୍ତବବାଦୀ ସାହିତ୍ୟ ତାହା ପାରେ ନାହିଁ । 'ନର କିନ୍ନର'କୁ fantasy ଆଉ Dream ଜରିଆ-ରେ କହିବାକୁ ଚେଷ୍ଟା କରିଛି । ବର୍ତ୍ତମାନ ସମୟରେ Art ର କାନ୍‌ଭସ ଯେମିତି ବଦଳି ଯାଇଛି, ନୂଆଁ ନୂଆଁ ଆର୍ଙ୍ଗିକ ମଧ୍ୟ ଦେଖାଦେଇଛି । ଗୋଟିଏ Impressionistic ପେଣ୍ଟିଂ ଏବଂ Realistic ପେଣ୍ଟିଂ ଭିତରେ ଯେଉଁ ପାର୍ଥକ୍ୟ ତାହାହିଁ Art ର ଆଖି ଖୋଲି ଦେଇଛି ।

● ଆପଣଙ୍କ ବ୍ୟକ୍ତିଗତ ଭଷା, ପାତ୍ର ପାତ୍ରୀଙ୍କ ଭଷା ଛାଡନ୍ତୁ, ଖୁବ୍ ସରଳ ଓଡ଼ିଆ । ଏମିତି ଏକ ଭଷା କାହିଁକି ବାଛି ନେଲେ ?

● ମୁଁ ଯେଉଁ ଗୃଷୁଣୀ ସମ୍ପର୍କରେ କହୁଥିଲି ସେହିଁ ମତେ ଏଇ ଭଷାଟି ଦେଲା । ନତୁବା ବ୍ରାହ୍ମଣ ପରିବାରର ଭଷାକୁ ମୁଁ ଆଦରି ନେଇଥାନ୍ତି । ସେ ମୋତେ ଯେଉଁ ଭଷାଟି ଦେଲା ତାହା ଏତେ powerful communicative, effective ଯେ ସେଟା ସହଜରେ ମୋ ପାଖକୁ ଆସୁଛି । ଏଥିରେ ଯେକୌଣସି ବଡ କଥାକୁ ଅତି ସହଜରେ କହିଦେବି । ଯେକୌଣସି com-plex idea ମତେ ଦିଅନ୍ତୁ, ମୁଁ ତାକୁ ଗ୍ରାମୀଣ ଭଷାରେ ପ୍ରକାଶ କରି-ଦେବି । ଏଇଟା ଅବଶ୍ୟ ଦୁର୍ଭାଗ୍ୟକୁ ଆସିଲା— ମାଁ ନ ମରେ କି ଏ ଭଷା ନ ଆସେ ।

● ଫକୀରମୋହନଙ୍କ ପରେ ତଥାକଥିତ ଆବେଗପ୍ରବଣ ଉପନ୍ୟାସ ଶୈଳୀ ବିରୁଦ୍ଧରେ ଆପଣଙ୍କର ଉପନ୍ୟାସ ସବୁ ଏକ ସଚେତନ ପ୍ରୟାସ କି ?

● ଭାଷା ଦୃଷ୍ଟିରୁ କୌଣସି conscious ପ୍ରଚେଷ୍ଟା ନାହିଁ । ସାରଳା ଦାସ ଦାଣ୍ଡି ବୃତ୍ତରେ ଓଡ଼ିଆ ଭାଷାର ଯେଉଁ ଶକ୍ତି ପରୀକ୍ଷା କରିଥିଲେ ସ୍ଵତଃ ଚଷାମାନଙ୍କଠୁଁ ମୁଁ ସେଇ ଭାଷା ଶିଖିଥିଲି । ଗୋପୀନାଥ ମହାନ୍ତି ଅବଶ୍ୟ ଭାଷାରେ ବହୁତ experiment କରିଛନ୍ତି, ତାଙ୍କର ଭାଷା ଉପରେ Command ଅଛି । କିନ୍ତୁ ଆପଣ ଯେଉଁ କହୁଛନ୍ତି ତାରଲ୍ୟ ବା ଆବେଗ ପ୍ରବଣତା, ସଚେତନ ଭାବରେ ମୁଁ ତାହାଠାରୁ ଦୂରେଇ ଯାଇନି, ସ୍ଵତଃ ମୋର ଭାଷା ସେମିତି ହୋଇଛି ।

● ସାଂସାରିକ ଜୀବନର କେଉଁ ଅନୁଭୂତି, ସମସ୍ୟା ବା ଦୃଶ୍ୟ ଆପଣଙ୍କୁ ଉପନ୍ୟାସଟିଏ ଲେଖିବା ପାଇଁ ପ୍ରେରଣା ଦିଏ ଓ କେମିତି ଆପଣ ଏ ଜଗତରୁ ଉପନ୍ୟାସର ଜଗତକୁ ଯାଆନ୍ତି ?

● ମୁଁ ପ୍ରଥମେ ଗଳ୍ପ ହିଁ ଲେଖୁଥିଲି । ହଠାତ୍ ମୋତେ ଲାଗିଲା ଯଦି ଉପନ୍ୟାସ ନଲେଖେ, ମୋର ଅନୁଭୂତିର ସବୁକଥା କହିପାରୁନି । ମୋତେ ଲାଗୁଥାଏ କିଛି ଗୋଟାଏ ଅନୁଭବ ରହିଛି ଯାହା ନକହିଲା ପର୍ଯ୍ୟନ୍ତ ଏମିତି ଶ୍ୱାସରୁଦ୍ଧ ଲାଗୁଥିବ ।

● ନା, ଆପଣ କେମିତି ଲେଖନ୍ତି ? ଲେଖିବା ପାଇଁ ପ୍ରେରଣା କୋଉଠୁ ପାଆନ୍ତି ?

● It is the pain, It is the distressful pain that presses you. After you write, you feel relaxed. ଔପନ୍ୟାସିକ ପାଇଁ ଏହା ଏକ burden ପରି ଆସେ । ଉପନ୍ୟାସ ଲେଖାର ପୃଷ୍ଠ ଦେଶରେ ମନସ୍ତାତ୍ତ୍ୱିକ କାରଣ ଅନେକ ଅଛି । ଯୋଉଟା ନ ଥିଲେ ଜଣେ ଉପନ୍ୟାସ ଲେଖିବ ନାହିଁ । ସେହି ମନସ୍ତାତ୍ତ୍ୱିକ କାରଣ ପଛ ଆଡ଼େ ଗୋଟାଏ ରହସ୍ୟ ରହିଛି । ସେ ରହସ୍ୟଟାକୁ ମୁଁ explain କରିପାରୁନି, ଅନୁଭବ କରି ପାରୁଛି । ଗୋଟିଏ ସମୟ ଥିଲା, ମୁଁ ଯଦି ସାହିତ୍ୟରେ ହାତ ଦେଇ ନଥାନ୍ତି ମୁଁ ନଷ୍ଟ ହୋଇ ଯାଇଥାନ୍ତି । ସାହିତ୍ୟ ମୋତେ ସେଥିରୁ ରକ୍ଷା କଲା ।

Sub-consciousରୁ ଗୋଟିଏ pain ଆସିବ ଏବଂ ସେହି painରୁ ପରେ ଉପନ୍ୟାସ formationର ପ୍ରେରଣା ଆସିବ । First Line ଆସିବାପାଇଁ ଅନେକ ଦିନ ଲାଗିଯାଇ ପାରେ । ଅନେକ କାଗଜ Waste କଲାପରେ ଗୋଟାଏ ଚମତ୍କାର Line ଆସିଯାଇପାରେ । ମୁଁ ଭାବେ ସେହି Line ଟା basic । ସେ ବଢିବାକୁ ଲାଗେ । ଖିଅ ପରେ ଖିଅ ବଢେ ।

- ସେଇ ପ୍ରଥମ ବାକ୍ୟଟିର theme କଣ ହୁଏ, ଚରିତ୍ର ନା କାହାଣୀ, କାହାକୁ ଆଶ୍ରାକରି ବାକ୍ୟଟି ଆରମ୍ଭ ହୁଏ ?

- ସମ୍ପୂର୍ଣ୍ଣ vague ବି ହୋଇପାରେ । ଅଥଚ ତାହା ବଢିଗଲେ, ଅର୍ଥପୂର୍ଣ୍ଣ ହୁଏ । 'ନରକିନ୍ନର' ମୁଁ ଯେତେବେଳେ ଲେଖିଲି, ମୁଁ କିଛି ଭାବିକରି ଲେଖି ନଥିଲି । Planned ଉପନ୍ୟାସର ଯୁଗ ଗଲାଣି । ଗୋଟିଏ ପ୍ରକାଶପ୍ରବଣତାହିଁ ଉପନ୍ୟାସ କିମ୍ବା ଗଳ୍ପ ଲେଖେଇ ନିଏ ।

- ଉପନ୍ୟାସଟି ଲେଖି ସାରିଲାପରେ ଆପଣ ଯେତେବେଳେ ପଢନ୍ତି ଜଣେ ପାଠକ ଭାବରେ, ଆପଣଙ୍କୁ ତାହା କେମିତି ଲାଗେ ?

- 'ନର କିନ୍ନର' ମୁଁ ଯେତେଥର ପଢିଛି ଦୁଃଖକର ମନେ ହୋଇଛି । 'ଶତାବ୍ଦୀର ନଚିକେତା' ପୁନରାବୃତ୍ତି କଲାବେଳେ Pleasurable ଲାଗେ । ସେମିତି 'ଶକୁନ୍ତଳା'ର କେତେକ ଅଂଶ । ମୋ ଜୀବନର ଘଟଣା ସହ ଯେଉଁ ଗୁଡ଼ିକ ସମ୍ପକିତ, ଯେଉଁ ଚରିତ୍ରମାନଙ୍କୁ ମୋର ସ୍ୱପ୍ନ ଜଗତରେ ମୁଁ ଭେଟିଛି, ପରବର୍ତ୍ତୀ ସମୟରେ ସେମାନଙ୍କ ସହିତ ଦେଖାହେଲେ ମୋତେ ଆନନ୍ଦ ହିଁ ଲାଗେ ।

- ଆପଣଙ୍କ ପ୍ରିୟ ଔପନ୍ୟାସିକ ଓ ଉପନ୍ୟାସ କେଉଁମାନେ ଓ କେଉଁ ଗୁଡ଼ିକ ?

- ଓଡ଼ିଶାରେ ମୋର ପ୍ରିୟ ଔପନ୍ୟାସିକ ପାଇବା ଆଗରୁ ଗୋଟିଏ ଆନ୍ତର୍ଜାତିକ ଚିତ୍ର ମୁଁ ପାଇଥିଲି । ତାହା ଦେଇଥିଲେ ମୋର ଜଣେ ଅଜା, ଯିଏକି ମେସୋପଟାମିଆରେ ପ୍ରଥମ ବିଶ୍ୱଯୁଦ୍ଧ ଲଢିଥିଲେ । ମୁଁ ଯେତେବେଳେ ମାଇନରରୁ ମେଟ୍ରିକ ପଢୁଥିଲି କାହ୍ନୁ ମହାନ୍ତିଙ୍କ ଅଦେଖା ହାତ, ଗୋପୀ ମହାନ୍ତିଙ୍କ

ନୂଆଁ ନୂଆଁ ବାହାରିଥିବା ପରଜା ପଢିଥିଲି । ଆମ ସମୟରେ ଫକୀର ମୋହନଙ୍କ ସଂପର୍କରେ ଯେଉଁ ଜନମତ ଥିଲା ତାହା ଆଜିର ଆଧୁନିକ ମତଠୁଁ ଭିନ୍ନ । ସେତେବେଳେ ଫକୀର ମୋହନ କେବଳ ଜଣେ ବ୍ୟଙ୍ଗ ଲେଖକ ଥିଲେ; ପୁଣି ଜମିଦାରମାନଙ୍କ ପ୍ରଭବ ହେତୁ ସମାଜ ସଂସ୍କାରକ ଭବରେ ତାଙ୍କୁ ଚିନ୍ତା କରଯାଉ ନ ଥିଲା । ତେବେ ଫକୀର ମୋହନଙ୍କ ବାସ୍ତବ ରୂପ ଆସିଲା ଯେତେବେଳେ ସମାଜ ସଂସ୍କାର ହେଲା, ଭରତ ସ୍ୱାଧୀନ ହେଲା । ୧୯୫୧ ରେ ଆକସ୍ମିକ ଭବରେ 'Of Human Bondage', 'Mobydick' 'Growth of the Soil' ବହି ତିନୋଟି ହାତରେ ପଡ଼ିଲା, ଓଡ଼ିଆ ଉପନ୍ୟାସ ସହ ତୁଳନା କରି ଓଡ଼ିଆ ଉପନ୍ୟାସ କେତେ ଅଗଭୀର, ବୁଝି ପାରିଲି । ପରେ ଇଂରେଜୀ ମାଧ୍ୟମରେ ଅନ୍ୟ ବିଦେଶୀୟ ସାହିତ୍ୟ ସବୁ ପଢି ଜାଣିଲି ଭଷାଟା ହେଉଛି ଗୋଟିଏ Matter of choice. ସାହିତ୍ୟର ମୂଳକଥା ସବୁ ସମୟରେ ସବୁ ସ୍ଥାନରେ ରହିଛି । ଓଡ଼ିଆ ପଢି ଜାଣିଲି ଗୋପୀ ମହାନ୍ତି ହେଉଛନ୍ତି ଜଣେ brilliant ସ୍ରଷ୍ଟା, ଆଧୁନିକ ସାହିତ୍ୟର ତାଙ୍କୁ pioneer ବୋଲି କୁହାଯିବ, next to ଫକୀର ମୋହନ । ଗୋପୀ ମହାନ୍ତିଙ୍କ accute social consciousness ଥିଲା । ଅବଶ୍ୟ ତାଙ୍କୁ ସେ particular କରିଦେଲେ ଆଦିବାସୀଙ୍କ ଉପରେ ।

● ପରେ 'ଦାନାପାଣି', 'ଇୟ ବିଇୟ' କିମ୍ବା 'ମାଟି ମଟାଳ' ?

● ହଁ, ପରେ ସେ ଗୁଡାକ ବି କଲେ । କିନ୍ତୁ ତାଙ୍କର actual field ହେଉଛି ଆଦିବାସୀ । ସାଧାରଣ ମଣିଷକୁ ନେଇ ସେମିତି ସ୍ୱପ୍ନ ସେ ଦେଖୁନାହାନ୍ତି ।

● ସୁରେନ୍ଦ୍ର ମହାନ୍ତି ?

● ସୁରେନ୍ଦ୍ର ମହାନ୍ତିଙ୍କ ସଂପର୍କରେ ମୋ ମତାମତ ଦେବା ଭଲ ହେବନି । ସେ ଗୋଟିଏ ଭଲ ଉପନ୍ୟାସ ଲେଖିଛନ୍ତି 'ନୀଳଶୈଳ' । ସେ ସଂପର୍କରେ ତ ସମାଲୋଚନା, ଆଲୋଚନା ହୋଇଛି । କଳା– ଦୃଷ୍ଟିରୁ ଗୋପୀନାଥ ମହାନ୍ତିଙ୍କ ପାଖାପାଖି ସେ ହେବେ ନି ।

● ଆମେ ନିର୍ଦ୍ଦିଷ୍ଟଭାବେ ଜାଣିବାକୁ ଚାହୁଁ ସୁରେନ୍ଦ୍ର ମହାନ୍ତିଙ୍କ କେଉଁ ଅଂଶଟା ଆପଣଙ୍କୁ ଭଲ ଲାଗେ ?

● ତାଙ୍କ style artificial, ତାଙ୍କ attitude shrewd ଏ ଦିଟାଯାକ major defects. କେବଳ ଉପନ୍ୟାସ ନୁହେଁ ସୃଜନଶୀଳ literatureର ବଡ କଥା ହେଉଛି ଗୋଟିଏ Indian love, ଅତି କ୍ଷୁଦ୍ରାଦପି କ୍ଷୁଦ୍ର ପ୍ରତି ବୈଷ୍ଣବୀୟ ପ୍ରେମ ରହିବା ଉଚିତ । satire କରିଥାରେ ଆପଣ ଉଚ୍ଚାଙ୍ଗ ସାହିତ୍ୟ କରିପାରିବେ ନାହିଁ ।

● 'ଶତାବ୍ଦୀର ସୂର୍ଯ୍ୟ' ?

● ହଁ, because Madhusudan Das is there. ସୁରେନ୍ଦ୍ର ମହାନ୍ତିଙ୍କୁ ଯଦି କୁହାଯିବ ଗୋଟିଏ positive character ସୃଷ୍ଟି କରନ୍ତୁ, ସେ ପାରିବେ ନି । ଯେପରି ନିଧିଦାସ । ନିଧିଦାସକୁ କଣ କଲେ ? ନିଜେ ମାରି ଦେଲେ ନା ! ତାଙ୍କ attitude ହିଁ ସେଇଯା ।

● ଜଣେ ଲେଖକ ଯଦି ତାର ସମଗ୍ର ଜୀବନକାଳ ଭିତରେ ଗୋଟିଏ ଉପନ୍ୟାସହିଁ ଲେଖୁଛି ବୋଲି କୁହାଯିବ, ଆପଣଙ୍କ କ୍ଷେତ୍ରରେ ତାହା କଣ ?

● ମଣିଷ ନିଜେ ହିଁ ନିଜର ଉପନ୍ୟାସ । ମୋ ଜୀବନରେ ଭିନ୍ନ ଭିନ୍ନ Identityକୁ ମୁଁ ଉପନ୍ୟାସ ମାଧ୍ୟମରେ clarify କରିବାକୁ ଚାହେଁ । □

## ପାଠକ କଣ ଚାହେଁ ?

'ମନ୍ତ୍ରୀଙ୍କ ସେୟାର' ଉପନ୍ୟାସଟି ଓଡିଶାର ଉପନ୍ୟାସ ଶତବାର୍ଷିକୀ ଉପଲକ୍ଷ୍ୟେ ଲେଖା ହୋଇ ନାହିଁ । ତେବେ, ଏ ଗୋଟିଏ ଚ୍ୟାଲେଞ୍ଜର ଜନ୍ମ............ ସାଧାରଣ ପାଠକ ତେବେ କଅଣ ଚାହେଁ ? ଗଳ୍ପଟିଏ ? ଥ୍ରିଲ୍ ଟିକିଏ ? ରୋମାଂଚ ପୁଞ୍ଜିଏ ? ନାଃ । ସେ ଚାହେଁ ଜୀବନ୍ତ ଚରିତ୍ର ନା ଆଉ କିଛି ? ଏକ ମିଥ୍ ? ଗଭୀର ମିଥ୍ ? ଯେମିତି ଶ୍ରୀକୃଷ୍ଣ ? ଯାତ୍ରା କୃଷ୍ଣ ? ମିଥ୍ କ'ଣ କମି ବୌଦ୍ଧିକ ? କମି ଆବ୍‌ଷ୍ଟ୍ରାକ୍ଟ୍ ? କମି ଦର୍ଶନଥାଏ ସେଥିରେ ? କରଯାଉ ଏକ ପରୀକ୍ଷା—ଅନ୍ୟ ପରୀକ୍ଷା— ଭିନ୍ନେ ପ୍ରକାରେ ।

□ ଶାନ୍ତନୁ କୁମାର ଆଚାର୍ଯ୍ୟ, –'ମନ୍ତ୍ରୀଙ୍କ ସେୟାର' :—

" ଚିରନ୍ତନ ମାନବିକ ଗୁଣକୁ ଇତିହାସର ଭିନ୍ନ ଭିନ୍ନ
ସ୍ତରରେ ଦେଖାଇଛି । "

☐ ଶହୀଦ ନଗରର କଂକ୍ରିଟ୍ ଅରଣ୍ୟ ଭିତରେ କେଉଁଠି ଲୁଚିଥାଏ କୁମାର ପୂର୍ଣ୍ଣିମାର ଜହ୍ନ । ଆମେ ଅଗସ୍ତ୍ୟ ଭବନ ନିକଟରେ ପହଂଚିଲୁ । ଅଗଣାରେ ମୁରୁଜ ଦିଆ ସରିଥାଏ । ଆମ ସମସ୍ତଙ୍କପାଇଁ ସେ ଥାଆନ୍ତି ସମ୍ପୂର୍ଣ୍ଣ ନୂଆ ଓ ଅପରିଚିତ । ଇତିହାସର କଂକାଳକୁ ମନୋରମ ମାଟିର ପୁଟ ଦେଇ ସେ ଯେଉଁ ସବୁ କାଳର ପୁତ୍ତଳିକା ତିଆରି କରିଥିଲେ : 'ସପ୍ତସିନ୍ଧୁ', 'ଚଣ୍ଡାଶୋକ', 'ଧର୍ମାଶୋକ' ସେସବୁ ଅବଶ୍ୟ ଆମେ ପଢ଼ିଥିଲୁ । ସତ୍ୟ ଅନ୍ୱେଷଣ ପାଇଁ ଯେଉଁ ପ୍ରଜ୍ଞା ଓ କଳ୍ପନାର ମଧୁର ସମାହାର ତାଙ୍କଠି ପାଇଲୁ ଆମକୁ ତାହା ଅଭିଭୂତ କଲା । ଔପନ୍ୟାସିକ ନୃସିଂହ ଚରଣ ପଣ୍ଡାଙ୍କ ସହ ସେଇ ମନୋଜ୍ଞ ସନ୍ଧ୍ୟାର କେତୋଟି କଥାବାର୍ତ୍ତା ।

● କଥା ପ୍ରସଂଗରେ ଆପଣ କହୁଥିଲେ 'ସପ୍ତସିନ୍ଧୁ' ଓ ଅଶୋକ ସମ୍ପର୍କୀୟ 'ଚଣ୍ଡାଶୋକ' ଓ 'ଧର୍ମାଶୋକ' ଲେଖିବାପାଇଁ ଆପଣଙ୍କୁ ବିଧିବଦ୍ଧ ଭାବରେ ଗବେଷଣା କରିବାକୁ ପଡ଼ିଛି । ଆପଣ କାହିଁକି ଏପରି କଷ୍ଟକର ଉପନ୍ୟାସ ଗୁଡ଼ିକ ଲେଖିବାପାଇଁ ଯନ୍ତଶୀଳ ହେଲେ ? ଆପଣ ନିଜ ଅନୁଭୂତିରୁ ଲେଖି ପାରିଥାନ୍ତେ ?

● Artistକୁ ସମାଜ ସହଜରେ ଗୋଟିଏ ଛାଞ୍ଚରେ ପକାଇ ଦିଏ, ଯେମିତି ଆପଣ କହୁଛନ୍ତି ଆପଣ କାହିଁକି ଐତିହାସିକ ଉପନ୍ୟାସ ଲେଖିଲେ ? କେବଳ ଐତିହାସିକ ଉପନ୍ୟାସ ମୁଁ ଲେଖିନି । ମୋର ପ୍ରଥମ ଉପନ୍ୟାସ ହେଉଛି 'ମେଷ ପାଳକ' । ମେଷ ପାଳକ ଉପନ୍ୟାସ ଯେଉଁ ଛପା

ହୋଇଛି ତାହା ସମଗ୍ର ଉପନ୍ୟାସର ଶତକଡା ଗ୍ରଚିଶ । ଅନ୍ୟ ସମସ୍ତ ଏବେ ବି ମୋ ଘରେ ରହିଛି ।

● କେମିତି ?

● ଏହା ମୁଁ କରିନି । ମଝିରୁ କିଛି କିଛି ଅଂଶ ବାଛିଦେଇ ମୁଁ 'ମାନସ'ରେ ଦେଉଥିଲି । ତାହା ପବ୍ଲିଶରଙ୍କୁ ଜଣା ପଡୁନଥିଲା । ପରେ ମତେ ନପଗ୍ଭରି ସେ ବହି କରିଦେଲେ । ଏବେ ବି ପୂରା ବହିଟା ଛାପିବା ପାଇଁ କେହି ସାହସ କରୁନାହାନ୍ତି । ପ୍ରଥମତଃ ଆକୃତି ପାଇଁ, ଦ୍ୱିତୀୟ କଥା ହେଲା ଏଥିରେ ଥିବା ଏମାର୍ଜେନ୍‌ସି ସମ୍ପର୍କୀୟ କାହାଣୀ । ଆହୁରି ଗୋଟିଏ କଥା, କେତେକ ଭାବନ୍ତି ମୁଁ ଭେଟେରେନାରୀ କଲେଜର ଡିନ୍, ଏଣୁ 'ମେଷ ପାଳକ' ମୋର ଗୋଟିଏ ପଶୁପାଳନ ସମ୍ପର୍କୀୟ ବହି । (କିଛି ସମୟ ନିରବ) ଏଥିରେ ଏମାରଜେନ୍‌ସିର କଥା ଅଛି । ମୁଁ ତାକୁ ଲୁଚେଇ ଛପେଇ କୌଣସି Symbol ଦେଇ ଲେଖି ନାହିଁ । ଜଣେ Dictator ସମସ୍ତଙ୍କୁ କିପରି ମେଣ୍ଢା କରିଦେବାକୁ ଗ୍ରହୁଁଛି । ସେ ଯାହା ଗ୍ରହୁଁଛି, ସମସ୍ତେ ସେଇଆ ଭାବନ୍ତୁ, ସେ ଯାହା ଗ୍ରହୁଁଛି ସମସ୍ତେ ତାହା କରନ୍ତୁ, ସେହି ପ୍ରକ୍ରିୟାଟାକୁ ମୁଁ ମେଷୀ କରଣ କହିଛି । ମେଷ ପାଳକ ମାନେ ଜଣେ ଶାସକ ଚେଷ୍ଟା କରୁଛି ମେଣ୍ଢା ହୁଅନ୍ତୁ । ମୁଁ ତାକୁ ଅଡ଼େଇ ନେବି ।

● ଅଶୋକ ସମ୍ପର୍କରେ ଉପନ୍ୟାସ ଲେଖାଯାଉ, ଆପଣ କାହିଁକି ଗ୍ରହିଁଲେ ?

● ମୁଁ ତ ଆଶ୍ଚର୍ଯ୍ୟ ହେଉଛି ଏ ସମ୍ପର୍କରେ ଲେଖାଯାଇ ନଥିଲା କେମିତି ? ଅଶୋକ କଳିଂଗ ବିଜୟ କରି ନଥିଲେ । ଏକ ପ୍ରକାର ହୀନ ଚକ୍ରାନ୍ତରେ ତାଙ୍କ ସେନାପତି ରାଧାଗୁପ୍ତ କଳିଂଗ ରାଜାଙ୍କୁ ନିହତ କଲେ । ଓଡ଼ିଶା ମଗଧଦ୍ୱାରା ପରାଜିତ ହୋଇ ନାହିଁ । ଓଡ଼ିଶାର ଯେଉଁ ବିଷୟରେ ଗର୍ବ କରିବାର ଅଛି, ତା' ନହୋଇ ଅନ୍ୟ ଭ୍ରାନ୍ତ ବିଷୟରେ ଐତିହାସିକମାନେ ଗର୍ବ କରିଥାନ୍ତି ।

● ଐତିହାସିକ ଉପନ୍ୟାସ ରଚନାର ସବୁଠୁ ବଡ ପ୍ରତିବନ୍ଧକ ହେଉଛି ତଥା-କଥିତ ଇତିହାସ । ଇତିହାସର କଂକାଳକୁ ଅକ୍ଷୁର୍ଣ୍ଣ ରଖି ଆପଣଙ୍କୁ କଳ୍ପନା କରିବା ଅସୁବିଧା ହୁଏନି ?

● ଉପନ୍ୟାସରେ ଯଦି କଳ୍ପନା ନଥିବ, ତାହା ସାହିତ୍ୟ ପଦବାଚ୍ୟ ହେବ ନାହିଁ । ଯେଉଁ କଂକାଳକୁ ମୁଁ ଆଣେ, that is facts । ସେଇଟା ଇତିହାସ । ଇତିହାସର କେବଳ ଘଟଣାମାନଙ୍କୁ ଯଦି ଲେଖି ଦିଆଯାଏ, ସେଇଟା କାହିଁକି ସାହିତ୍ୟ ହେବ ? କିନ୍ତୁ ଐତିହାସିକ ଉପନ୍ୟାସରେ ମୁଁ ଇତିହାସର ମୂଳ ଜିନିଷଟାକୁ ବିକୃତ କରିବାକୁ ଚାହେଁ ନାହିଁ । ମୋ କଳ୍ପନା ଯେମିତି ଇତିହାସକୁ ବିକୃତ ନକରୁ ତାହାହିଁ ମୁଁ କଳ୍ପନା କରେ ।

● ଆପଣ୍ ଐତିହାସିକ ଉପନ୍ୟାସ 'ସପ୍ତସିନ୍ଧୁ' କ୍ଷେତ୍ରରେ ତାହା କେମିତି କଲେ ?

● 'ସପ୍ତସିନ୍ଧୁ' ଲେଖିଲାବେଳେ ମୁଁ ବହୁତ ଚିନ୍ତାକଲି କାହାକୁ ନାୟକ କରିବି ଓ କାହାକୁ ନାୟିକ କରିବି ? 'ସପ୍ତସିନ୍ଧୁ' ର ନାୟକ ହେଉଛନ୍ତି ଅଗସ୍ତ୍ୟ ଋଷି ଓ ନାୟିକା ତାଙ୍କ ସ୍ତ୍ରୀ ଲୋପାମୁଦ୍ରା । ପୁରାଣକାରମାନେ ଅଗସ୍ତ୍ୟ ଋଷିଙ୍କୁ କୌଣସି ସ୍ଥାନ ଦେଇ ନାହାନ୍ତି । ତାଙ୍କର ଖୁବ୍ ଗୌଣସ୍ଥାନ ପୁରାଣରେ ଅଛି । ସେ ସମୟରେ ଅଗସ୍ତ୍ୟ ବିଦ୍ରୋହ କରିଥିଲେ । ଅଗସ୍ତ୍ୟ ଲେଉଛନ୍ତି ପ୍ରଥମ ଆର୍ଯ୍ୟ ଯିଏକି ବିନ୍ଧ୍ୟରୁ ଦକ୍ଷିଣକୁ ଆସିଲେ, ଯେ କି ଜାତିପ୍ରଥା ଦୂର କଲେ, ବର୍ଣ୍ଣ ବୈଷମ୍ୟ ଦୂରକଲେ, ଏମିତି ଅନେକ ।

● ସୁରେନ୍ଦ୍ର ମହାନ୍ତି ଐତିହାସିକ ଉପନ୍ୟାସ ଲେଖିଛନ୍ତି । ଆପଣ ବି ଐତିହାସିକ ଉପନ୍ୟାସ ଲେଖିଛନ୍ତି । ତାଙ୍କ ଐତିହାସିକ ଉପନ୍ୟାସ ଗୁଡ଼ିକ ସଂପର୍କରେ ଆପଣଙ୍କ ମତାମତ କଣ ?

● ଜଗନ୍ନାଥଙ୍କ ଉପରେ ଓ ମଧୁସୂଦନ ଉପରେ ସେ ଐତିହାସିକ ଉପନ୍ୟାସ ଲେଖିଛନ୍ତି । (କିଛି ସମୟ ନିରବ)

● ଆଉ ଗୋପୀନାଥ ମହାନ୍ତି ?

● ଗୋପୀନାଥ ମହାନ୍ତି ଆଦିବାସୀ ବିଷୟବସ୍ତୁକୁ ନେଇ ବେଶ୍ ସଫଳ । ସେ ଯେଉଁ ଜ୍ଞାନପୀଠ ପୁରସ୍କାର ପାଇଛନ୍ତି, ଯଦି 'ପରଜା' ଓ 'ଅମୃତର ସନ୍ତାନ' ତାର ପୃଷ୍ଠଭୂମିରେ ନଥାନ୍ତା; କେବଳ 'ମାଟିମଟାଳ' ପାଇଁ ଜ୍ଞାନପୀଠ ପୁରସ୍କାର ପାଇବା କଷ୍ଟକର ହୋଇ ପଡନ୍ତା । ତେବେ ଗୋଟିଏ କଥା, ଏଇ ଯେଉଁ ଆପଣ ଔପନ୍ୟାସିକମାନଂକ ସମ୍ପର୍କରେ ମୋତେ ପଚାରୁଛନ୍ତି, ଏ ସମ୍ପର୍କରେ ମୋର ଗୋଟିଏ କଥା କହିବାର ଅଛି । ଉପନ୍ୟାସରେ ଔପନ୍ୟାସିକ ଘଟଣା ବର୍ଣ୍ଣନା କରିଗଲେ, ଚରିତ୍ର ବର୍ଣ୍ଣନା କରିଗଲେ, କିଭଳି ବର୍ଣ୍ଣନା କରିଗଲେ– ଏଥିରେ ଯଦି ଆଉ କିଛି ଅଧିକ ନାହିଁ, ଆପଣ ତାକୁ ବାସ୍ତବବାଦୀ ସାହିତ୍ୟ କହି ପାରନ୍ତି, ମୁଁ କିନ୍ତୁ ସେମିତି ଉପନ୍ୟାସ ଭଲପାଏ ନାହିଁ ।

● ତେବେ ଚିରନ୍ତନ ସାହିତ୍ୟ ଆମେ କାହାକୁ କହିବା ?

● ଏମାରଜେନ୍‌ସି କାହାଣୀକୁ ନେଇ ମୁଁ 'ମେଷପାଳକ' ଲେଖିଥିଲି । ଯଦି କିଏ କହେ ଯେ ଇନ୍ଦିରା ଗାନ୍ଧୀ ମୋର ସେହି ଚରିତ୍ର, ମୁଁ କହିବି– ନାହିଁ । ସେ ଚରିତ୍ର ଇରାନରେ ବାହାରିବ, ଋଷିଆରେ ବାହାରିବ, ଆମେରିକାରେ ବାହାରିବ, ଆଜି ବାହାରିଛି, କାଲି ଥିଲା । ସେ ଏକ ଚିରନ୍ତନ ଚରିତ୍ର । 'ମେଷପାଳକ' କୌଣସି ଚରିତ୍ରକୁ ନେଇ ଲେଖା ହୋଇନାହିଁ । ମଣିଷ ଭିତରେ ଥିବା ଏକ ଚିରନ୍ତନ ସତ୍ୟକୁ ନେଇ ଲେଖା ହୋଇନାହିଁ । ସେଭଳି ଚରିତ୍ର ଥିବା ସାହିତ୍ୟକୁ ଆମେ ଚିରନ୍ତନ ସାହିତ୍ୟ କହି ପାରିବା ।

ଆପଣ ଯେଉଁ ଐତିହାସିକ ଉପନ୍ୟାସ କଥା କହିଲେ, ମୁଁ କୌଣସି ଅଞ୍ଚଳକୁ ନେଇ ଲେଖି ନାହିଁ, କିମ୍ବା କୌଣସି ସ୍ଥାନର ଇତିହାସକୁ ନେଇ ଲେଖି ନାହିଁ । ସବୁବେଳେ ମୁଁ ମଣିଷର ଚିରନ୍ତନ ମାନବିକ ଗୁଣକୁ ଇତିହାସର ଭିନ୍ନ ଭିନ୍ନ ସ୍ତରରେ ଦେଖାଇଛି । ମୋର ସମସ୍ତ ଐତିହାସକ ଉପନ୍ୟାସ ମହାଭାରତୀୟ ପୃଷ୍ଠଭୂମିରେ ରଚିତ । ଏଠାରେ ଓଡ଼ିଶା, ବିହାର, ପରି ଭାଷାକେନ୍ଦ୍ରିକ ଜାତିବିଭାଗ ନାହିଁ କିମ୍ବା ତଜ୍ଜନିତ ସ୍ୱାଭିମାନ ନାହିଁ ।

☐ ଡଃ ନୃସିଂହ ଚରଣ ପଣ୍ଡା, ଶହୀଦ ନଗର, ଭୁବନେଶ୍ୱର

## ମୋର ଲେଖା ଆରମ୍ଭ ହଏ କୌଣସି ଏକ ବିଶିଷ୍ଟ ଅନୁଭୂତିକୁ ନେଇ

□

ଔପନ୍ୟାସିକ କୃଷ୍ଣ ପ୍ରସାଦ ମିଶ୍ର ଏକାଧାରରେ ଦାର୍ଶନିକ, ଗାଳ୍ପିକ, ଔପନ୍ୟାସିକ ଓ ପ୍ରକାଶକ । ବହୁ ଦିନ ତଳେ ତିନୋଟି ମାତ୍ର ଉପନ୍ୟାସ ଲେଖି ସେ ନୀରବ । ଏ ଅବସରରେ ତାଙ୍କୁ ଅଭିଯୁକ୍ତ କରିବା ଓ ନୂଆ ସମ୍ଭାବନାଯୁକ୍ତ ଉପନ୍ୟାସଟିଏ ଆଶା କରି ଆମେ ବାଣୀବିହାର ପହଞ୍ଚିଲୁ । ସେ ଦିନ ବର୍ଷା ମାତିଥାଏ, ଆର୍ଦ୍ର ନର । ହସମୁଖର ଓ ପରିଚୟପ୍ରତିମ କଣ୍ଠରେ ସେ ପ୍ରତିଶ୍ରୁତି ଦେଲେ– ଏ ଅବସରରେ ନିଶ୍ଚୟ ସେ ଉପନ୍ୟାସଟିଏ ଲେଖିବେ । ସମୟ ଏହି ପ୍ରତିଶ୍ରୁତିର ସତ୍ୟତା ପରୀକ୍ଷା କରିବ ।

ପ୍ର. ପାଠକମାନଙ୍କ ତରଫରୁ ଆପଣଙ୍କପ୍ରତି ସବୁଠୁ ବଡ ଅଭିଯୋଗ : ତିନୋଟି ବର୍ଷରେ ତିନୋଟି ଉପନ୍ୟାସ ଲେଖି ଆପଣ ନୀରବ କାହିଁକି ରହିଗଲେ ?

ଉ. ମୋର ଧାରଣା, ଉପନ୍ୟାସରେ ଯାହା ମୁଁ ନୂଆ ଜିନିଷ ଦେବାକୁ ଚାହୁଁଥିଲି ତିନୋଟି ଉପନ୍ୟାସରେ ତାହା ଦେଇଦେବାପରେ ଯେବେ ଆଉ କିଛି ଖୁବ୍ ନୂଆ ଜିନିଷ ଦେଇ ନ ପାରିବି, ତା'ହେଲେ ଉପନ୍ୟାସ କାହିଁକି ଲେଖିବି ? ଉପନ୍ୟାସମାନେ ନୂତନତା–ନୂଆ । ତେଣୁ ନୂଆ ଥିମ୍, ନୂଆ ଶୈଳୀ କିଛି ନଦେଇ ପୁଣି ତାକୁ ଆଉଥରେ ପୁନରାବୃତ୍ତି କରିବି, ତାହା ଠିକ୍ ହେବ ନାହିଁ । ଯା'ଭବି ମୁଁ ଉପନ୍ୟାସ ବନ୍ଦ କରିଦେଇଛି । ଗପ ଆଡକୁ ଢଳିଛି । ଗପରେ ସଫଳତା ପାଇବାପରେ ଆଉ ଉପନ୍ୟାସ ଆଡକୁ ଯିବା ପାଇଁ ସମୟ ପାଇନି । ତାହା ପାଇଁ ଅବଶ୍ୟ ମୁଁ ଯେଉଁ ଜୀବିକା ନେଇଛି ସେ ବି ଦାୟୀ । ଗୁଡ଼ାଏ ଜାଗା ବୁଲିବା, ନୂଆ ଚରିତ୍ରଙ୍କୁ ଭେଟିବା, ସେମାନଙ୍କ ସହିତ ନିଭୃତରେ ଆଳାପ କରିବା, ଏ ପ୍ରକାର ସୁବିଧା ଓ ସୁଯୋଗ ଏ ଜୀବିକାରେ ପାଉଛି ନାହିଁ ।

ପ୍ର. ଆପଣ 'ନେପଥ୍ୟେ'ର ମୁଖବନ୍ଧରେ କହିଥିଲେ ଏଇ ତିନୋଟି ଉପନ୍ୟାସରେ ଗୋଟିଏ ବୃତ୍ତ ସରିଯାଇଛି, ଏ ବୃତ୍ତଟି କଣ ?

ଉ. ତିନୋଟିଯାକ ଉପନ୍ୟାସରେ ଜଣେ ଯଦି ଖୁବ୍ ଯତ୍ନ ସହକାରେ ଅନୁଶୀଳନ କରିବ ଗୋଟାଏ ଚରିତ୍ରର ଯେପରି ବିକାଶ ସେ ଦେଖୁଛି । ଗୋଟିଏ ଚରିତ୍ର ଭିନ୍ନ ଭିନ୍ନ ପରିବେଶର କିପରି ସମ୍ମୁଖୀନ ହେଉଛି । 'ନେପଥ୍ୟେ'ରେ ଦେଖିଲି ସେ ଚରିତ୍ର ଯେଉଁ ପରିବେଶର ସମ୍ମୁଖୀନ ହେଉଛି ନୂତନ ଭାବରେ ପୁଣି ତାକୁ କିମ୍ବା ଅନ୍ୟ ପରିବେଶକୁ ସମ୍ମୁଖୀନ ହେବା ପାଇଁ ସୁଯୋଗ ସେପରି ନାହିଁ । ତେଣୁ ଭାବିଲି ବୃତ୍ତ ସମ୍ପୂର୍ଣ୍ଣ ।

ପ୍ର. ଆପଣ ସେ ଚରିତ୍ରର 'Proto Type' ନିଜ ଅନୁଭବରୁ ତିଆରି କରିଛନ୍ତି କି ସମାଜର ଆଉ କାହାକୁ ଚରିତ୍ର ଭାବରେ ନେଇଛନ୍ତି ।

ଉ. ମୋ ଅନୁଭବରୁ ତ ନିଶ୍ଚୟ । ତେବେ, ଚରିତ୍ର ତ ଠିକ୍ ମୁଁ ନୁହେଁ । ବହୁ ଜିନିଷ ମିଶିକି ସେ ଗଢି ଉଠିଛି । କିନ୍ତୁ କିଛିଟା ମୁଁ ନିଶ୍ଚୟ ଅଛି । ମୁଁ ବନାରସରେ ପଢୁଥିଲି, ମୁଁ ଦିଲ୍ଲୀ ଯାଇଥିଲି, ମୁଁ ପିଲାଦିନ ବାଣପୁରରେ କଟେଇ ଥିଲି । ତେବେ ତାହା ତ ମୋର ଆତ୍ମଜୀବନୀ ନୁହେଁ । ମୋଠୁଁ ବାହାରିଲେବି ସେମାନଙ୍କର ଯଥେଷ୍ଟ ବିକାଶ ହୋଇଯାଇଛି ତିନୋଟି ଉପନ୍ୟାସରେ । ଆଉ ନୂଆଁ ବିକାଶ ହେବାର ସମ୍ଭାବନା ଦେଖିଲି ନାହିଁ । କିନ୍ତୁ ଗପକୁ ଯେତେବେଳେ ଆସି ଅନ୍ଧପରି ଯେଉଁ ବିକାଶ ଖୋଜୁଥିଲି, ଅନେକ ଗୁଡ଼ିଏ ସମ୍ଭାବନା ମୁଁ ଦେଖିବାକୁ ପାଇଲି । ଗୋଟିଏ ନୂଆଁ ଦିଗନ୍ତ ଖୋଲିଗଲା । ସାହିତ୍ୟରେ ମୁଁ ଗୋଟିଏ ନୂଆଁ ମିଡ଼ିୟମ ପାଇଲି । ଯେଉଁ ମିଡ଼ିୟମ ଦେଇକି ମୋ ମନର ନୂତନ ମେସେଜ୍‌ଟା ମୁଁ ସହଜରେ ଦେଇ ପାରୁଛି । ଗପକୁ ଆସିବାପରେ ମୁଁ ବହୁ ଚରିତ୍ର ପାଇଲି । ମୁଁ ଭାବୁଛି ଗପକୁ ଆସିବା ମୋର ଭଲ ହେଲା । ପ୍ରାୟ ଦୁଇଶହ ଖଣ୍ଡିଏ ଗପ ଲେଖିବା ପରେ ଏକ ନୂଆଁ ପ୍ରକାର ସନ୍ତୋଷ ପାଉଛି । ଯଦି ପୁଣି ଉପନ୍ୟାସ

ଲେଖେଁ ଏଇ ଗପ ଲେଖିବାପରେ ପାଇଥିବା ଅନୁଭୂତି, ଅଭିଜ୍ଞତା ଓ ଶିଳ୍ପ–ଦୃଷ୍ଟି ଦେଇ ଯେଉଁ ନୂଆଁ ଚରିତ୍ରମାନଙ୍କୁ ପାଇବି ସେମାନେ ହୁଏତ ପରିବେଶକୁ ନୂଆଁ ଭବରେ ସମ୍ମୁଖୀନ ହେବେ । ଏଇ କେତେ ଦିନପରେ ମୁଁ ଏଇ ଯେଉଁ ଆମେରିକା ଯାଉଛି, ଉପନ୍ୟାସ ଲେଖିବାପାଇଁ ଇଯା ଏକ ସମୟ ଓ ସୁଯୋଗ ବୋଧହୁଏ ପାଇବି । ଯେଉଁଠି ବସି ମୋର ଚରିତ୍ରମାନଙ୍କ ସହ କଥୋପକଥନ କରିପାରିବି, ନିଭୃତରେ ତାଙ୍କ ସହ ବିଳାସ କରିବି, ତାହା ମୋତେ ନୂଆଁ ଉପନ୍ୟାସ ଲେଖିବା ପାଇଁ ସାହାଯ୍ୟ କରିବ । ଏ ତିନିମାସ ଭିତରେ ଗୋଟିଏ ଉପନ୍ୟାସ ଲେଖିବି ଭବୁଛି ।

ପ୍ର. ଆପଣ କାନାଡ଼ା ବିଷୟରେ ଗପ ଲେଖିଛନ୍ତି, ଉପନ୍ୟାସ ଲେଖି ନାହାନ୍ତି । ଏଇ ଅନୁଭୂତିକୁ ଆପଣ ନିଶ୍ଚୟ ଏଥର ଉପନ୍ୟାସରେ ବ୍ୟବହାର କରିବେ ? ଆମେ ଆଶା କରୁଛୁ, ଓଡ଼ିଆ ଉପନ୍ୟାସର ଏକ ନୂଆଁ ଦଗନ୍ତ ଉନ୍ମୋଚିତ ହେବ ।

ଉ. ଭବୁଛି ଲେଖିବି । ୧୯୬୩ ମସିହାରୁ ୧୯୬୮ ମସିହା ପର୍ଯ୍ୟନ୍ତ ମୁଁ ଅନ୍ୟ କାମରେ ବ୍ୟସ୍ତଥିଲି । ତତ୍ ସଙ୍ଗେ ସଙ୍ଗେ ଗପ ପାଇଁ ଉପାଦାନ ଟିପି ରଖୁଥିଲି । ପରେ ତାକୁ ଗପ କଲି ।

ପ୍ର. ମୋର ତ ମନେ ହୁଏ 'ନେପଥ୍ୟେ' ପରେ ଆଉ ଉପନ୍ୟାସ ନ ଲେଖିବାର ଏହା ଏକ କାରଣ । ଗବେଷଣା ବେଳେ କୌଣସି ଏକ ଚରିତ୍ରକୁ ଗଭୀର ଭବରେ ଅନୁଧ୍ୟାନ କରିବା ସମ୍ଭବ ହେଇ ନାହିଁ । ସାମୟିକ ଭବରେ ଭିନ୍ନ ଭିନ୍ନ ଚରିତ୍ରଙ୍କ ସମ୍ପର୍କରେ ଗପର ଉପାଦାନ ଟିପିରଖିବା ଯେପରି ସହଜ ।

ଉ. ସେ ହୋଇପାରେ । ଚାରିବର୍ଷ ଗବେଷଣା ପାଇଁ ମୁଁ ବ୍ୟସ୍ତ ରହିଲି । ସେ ସମୟର ଅନୁଭୂତି ଓ ଭେଟିଥିବା ଚରିତ୍ରମାନଙ୍କୁ ନେଇ ଉପନ୍ୟାସ ଲେଖି ପାରିଥାନ୍ତି । ଅଥଚ ଗଳ୍ପ ହିଁ ଲେଖିଲି । ବିଦେଶ ଯାତ୍ରା କରିବା ପୂର୍ବରୁ ମୁଁ ଗଳ୍ପଲେଖା ଆରମ୍ଭ କରିଦେଇଥିଲି । ମୋର ସେହି କାବ୍ୟ ବହିଟାବି

ବାହାରି ଯାଇଥିଲି । ଏଣୁ ଗପ ପାଇଁ ମାନସିକ ପ୍ରସ୍ତୁତି ନେଇ ଯାଇଥିଲି । ଯାହା ଚିପିଲି, ମନରେ କଲି, ଗପ ଲେଖିଲି । ଆଉ ଏକ କାରଣ ହେଉଛି ଉପନ୍ୟାସରେ ଟପୋଗ୍ରାଫିର ଯେଉଁ ବିସ୍ତୃତ ପର୍ଯ୍ୟବେକ୍ଷଣ ଦରକାର, ଗପ ଲେଖିବି ଭାବି ମୁଁ କରି ନଥିଲି । ଏଥର ଯେହେତୁ ଉପନ୍ୟାସ ଲେଖିବି ଭାବି ଯାଉଛି, ସେ ହୋଇପାରିବ ।

ପ୍ର. ଜଣେ ସଚେତନପାଠକ ଆପଣଙ୍କ ଉପନ୍ୟାସ ପଢ଼ିଲା ବେଳେ ଦୁଇଟି କଥା ଅନୁଭବ କରେ ପ୍ରଥମଟି ଏକ ନିର୍ଦ୍ଦିଷ୍ଟ ଦର୍ଶନ 'ସିଂହକଟି'ରେ ଯାହାକୁ ଆପଣ କହିଛନ୍ତି ପୁଂଜିବାଦ ସହ ବାସ୍ତବତାର ସଂଘର୍ଷ । ତେବେ 'ନେପଥ୍ୟ'ରେ କଣ ?

ଉ. ଦର୍ଶନକୁ ଭାବିତ ମୁଁ କୌଣସି ଲେଖା ଲେଖିନାହିଁ । ମୋର ଲେଖା ଆରମ୍ଭ ହୁଏ କୌଣସି ଏକ ବିଶିଷ୍ଟ ଅନୁଭୂତିକୁ ନେଇ । ତାପରେ ଚରିତ୍ର ଆସିଛି, ତାପରେ Plot ଆସିଛି, ଗଳ୍ପ, ଉପନ୍ୟାସ ଲେଖାଯାଇଛି । ଲେଖିଥିବା ବେଳେ ଗୋଟିଏ ଆଶ୍ଚର୍ଯ୍ୟ କଥା, ଯେମିତି ପ୍ଲାଞ୍ଚେଟ୍ ଡାକିଲେ ସ୍ପିରିଟ୍ ଆସି ହାତରେ ଲେଖାନ୍ତି, କେତେଗୁଡ଼ାଏ ଚରିତ୍ର ନେଇଗଲା ପରେ ତାଙ୍କର ସେହିଁ ଟାଣି ନିଅନ୍ତି : ଏହି ପ୍ରକାର Conclusion ହେବ, ଏହି ପ୍ରକାର ହିଁ Development ହେବ, ଏଇଟା ପ୍ରକୃତରେ ଲେଖକ ଡିସାଇଡ୍ ନକରି ସେହି ସିଦ୍ଧାନ୍ତଟି ସେଇମାନେ ହିଁ କରନ୍ତି । କେମିତି ଚରିତ୍ରସବୁ ମିଶିଲେ ସମାପ୍ତି କେମିତି ହେବ ଲେଖକ ମୋଟେ ଜାଣିପାରେ ନାହିଁ । ଦର୍ଶନ ବିଷୟରେ ମୁଁ ମୋର ଭୂମିକାରେ କହିଥାଇପାରେଁ, ସେତେବେଳେ ପାଠକ ଭାବରେ ସେଇଟା ମୋର ମତ । କିନ୍ତୁ ଗପ ଭିତରେ ଚରିତ୍ରମାନେହିଁ କହନ୍ତି । 'ସିଂହକଟି'ରେ ଏକ କ୍ଷୟିଷ୍ଣୁ ଜମିଦାର ପରିବାରର ତିନିପ୍ରକାର ତିନୋଟି ଭାଇ ଚରିତ୍ର ନେଇଗଲା ପରେ କଣ, କ'ଣ ହୋଇପାରେ, ତାହା ମୁଁ କରିଛି, ତା ଭିତରେ ବାସ୍ତବତା ଅଛି ଆଦର୍ଶବାଦ ଅଛି, ଏନାର୍କି ବି ଅଛି । 'ନେପଥ୍ୟ'ରେ ଯେହି ପ୍ରକାର ଚରିତ୍ର ନାହାଁନ୍ତି । 'ନେପଥ୍ୟ' ରେ

ଯେଉଁ ଚରିତ୍ର ନିଆଯାଇଛି, ମଧୁସୂଦନ, ରେବା, ଶୀତିକଣ୍ଠ ଏମାନେ ଏକାଠି ହେଲପରେ ମୁଁ ଏକ ବ୍ୟକ୍ତିଗତ ମାନସିକ ସମସ୍ୟାକୁ ଉପସ୍ଥାପନା କରିଛି : ତାହା ହେଉଛି ଜଣେ ଲୋକ ଯେତେ ଭଲ ଜିନିଷ ପାଇଲେବି ନିଜର ମନ କଳୁଷିତ ହୋଇଥିବ ତେବେ ସେ ଭଲ ଜିନିଷକୁ ଭଲ ବୋଲି ଭାବି ନପାରେ । ରେବା ଚରିତ୍ରର କୌଣସି ଭୁଲ ନଥିଲେବି ମଧୁସୂଦନ ଚରିତ୍ରର ସନ୍ଦେହୀ ମନ ଯୋଗୁଁ ରେବାକୁ ପାଇଲା ନାହିଁ । ଏଇଟାକୁ 'ନେପଥ୍ୟେ'ର କୌଣସି ସାମାଜିକ ଦର୍ଶନ ବୋଲି କହିବି ନାହିଁ । ଯେଉଁ ଚରିତ୍ରମାନେ ଏକାଠି ହୋଇଛନ୍ତି, ତାଙ୍କର ମନସ୍ତାତ୍ତ୍ୱିକ ଭୂମିକାକୁ ନେଇ ଏହା ଘଟିଛି ।

ପ୍ର. ଆପଣ 'ନେପଥ୍ୟେ'ରେ କହିଛନ୍ତି 'ପଦ୍ମପୁରାଣ'ର ଏକ କାହାଣୀକୁ ଆଧାର ଭାବରେ ଏଠାରେ ନିଆଯାଇଛି । ସେ କାହାଣୀ ସମ୍ପର୍କରେ କିଛି କହିବେ କି ?

ଉ. ହଁ, ନିଆଯାଇଛି । ନାଁଟା ଏବେ ଠିକ ମନେପଡୁନି । ତେବେ ଜଣେ ଜମିଦାର ଗାଧୋଉଥିବା ସ୍ତ୍ରୀ ଲୋକଟିଏ ଦେଖି ତାକୁ ବିବାହ କରିବା ପାଇଁ ଇଚ୍ଛା କଲେ । ଅଥଚ ବିବାହ କରିପାରିଲେ ନାହିଁ । ଝିଅଟିର ବାପାମାଁ ଅରାଜି ହେଲେ । ରେବା ଚରିତ୍ରକୁ ତା ସହ ଯୋଡ଼ିଛି ।

ପ୍ର. ଆପଣଙ୍କ ଉପନ୍ୟାସ ସଂପର୍କରେ ଦ୍ୱିତୀୟ କଥାଟି ହେଲା : ତାହା ବେଳେ ବେଳେ ନାଟକୀୟ ମନେ ହୁଏ । ଯେମିତି ଶିବପାଦର ମୃତ୍ୟୁ ଏକ ପୂର୍ବ ନିର୍ଦ୍ଧାରିତ ନାଟକୀୟ ଘଟଣା । ଆପଣ ଏହାକୁ ଅବଶ୍ୟ ପ୍ରାରବ୍ଧ କହି ପାରନ୍ତି, କହିପାରନ୍ତି ତାର ପୂର୍ବଜନ୍ମର ପାପ ?

ଉ. ନାଟକୀୟତା ଜୀବନରେ ତ ଥାଏ । ନାଟକୀୟତା ନରହିଲେ ଜୀବନ ଖୁବ୍ ବେଶୀ enjoyable ହୁଏନି । ଶିବପାଦ ଯେଉଁ ପରିସ୍ଥିତିରେ ମଲା ଏହାକୁ ଅବଶ୍ୟ ନାଟକୀୟ କୁହାଯାଇପାରେ । କିନ୍ତୁ ସ୍ନେହକୁ ଦେବୀପାଦଠାରୁ ରକ୍ଷା କରିବା ତାର ଏକାନ୍ତ କର୍ତ୍ତବ୍ୟ ନ ଥିଲା କି ?

ପ୍ର. ଦେବୀପାଦର ବାପାଙ୍କ ଗୁରୁ ଦେବୀପାଦର ଜାତକ ଦେଖି କହିଥିଲେ ସେ ନରହନ୍ତା ହେବ । ଏହା ଶେଷରେ ଘଟିଛି । ଆପଣ ବ୍ୟକ୍ତିଗତ ଜୀବନରେ ଜ୍ୟୋତିଷଶାସ୍ତ୍ରକୁ ବିଶ୍ୱାସ କରନ୍ତି କି ?

ଉ. ଗୋଟିଏ ଉପନ୍ୟାସ ଲେଖିଲାବେଳେ ସମାଜକୁ ଅଧ୍ୟୟନ କରି ଲେଖିବାକୁ ହୁଏ । ଭାରତୀୟ ସମାଜର ଯେଉଁ Decadent ଜମିଦାର family କଥା ସେ ଉପନ୍ୟାସରେ ଲେଖାଯାଇଛି ଏହା ପ୍ରତ୍ୟେକଲୋକ ମାନିବେ ଯେ ସେ ସବୁ ପରିବାରରେ ଜ୍ୟୋତିଷ, ପାଞ୍ଜି, ଭବିଷ୍ୟତଗଣନା ଗୋଟିଏ ବଡ ଭୂମିକା ଗ୍ରହଣ କରୁଛି । ଗୋଟିଏ ଭାରତୀୟ ଜମିଦାର ପରିବାରର ଅଧ୍ୟୟନ କଲାବେଳେ ଏମିତି ଚରିତ୍ରମାନେ ଆସନ୍ତି, ଏମିତି ଗଣନା କରାଯାଏ । ଯଦି ସତରେ ହୋଇଗଲା ତାକୁ ଦୁଇଟି ମତ ଦିଆଯାଇପାରେ । Statistically ଜଣେ କହିପାରେ ହୋଇଥାନ୍ତା କିମ୍ବା ହୋଇନଥାନ୍ତା । ମନେ ଯଦି ବ୍ୟକ୍ତିଗତ ଭାବରେ ଆପଣ ପଚାରିବେ ଆପଣ ଜ୍ୟୋତିଷ ଶାସ୍ତ୍ରରେ ବିଶ୍ୱାସ କରନ୍ତିକି ? ମୁଁ କହିବି 'ହଁ' । କିନ୍ତୁ ଏହା ନୁହେଁ ଯେ ମୋର ଗଳ୍ପ ଉପନ୍ୟାସରେ ମୁଁ ଭାଗ୍ୟବାଦୀ ।

ପ୍ର. ଉପନ୍ୟାସ ଲେଖିବା ପୂର୍ବରୁ ଆପଣ ଏକ ନିର୍ଦ୍ଦିଷ୍ଟ ଲିଖିତ Plan ତିଆରି କରନ୍ତି କିମ୍ବା କାହାଣୀ ସମ୍ପର୍କରେ ଏକ କଳ୍ପନା କରନ୍ତି କିମ୍ବା ଅନ୍ୟ କିଛି ?

ଉ. ନା, ସେମିତି କିଛି କରେନି । ପ୍ରଥମରୁ ଗୁଡ଼ାଏ Interesting ଚରିତ୍ର ଓ ଅନୁଭୂତି ମନରେ ଏକାଠି ହେଲାପରେ ଆପେ ଆପେ ଏକ କାହାଣୀ ସୃଷ୍ଟି ହୁଏ । ସେ କାହାଣୀ ସମ୍ପର୍କରେ କିଛି ଭାବି ଦିଏଁ । ଯେମିତି 'ମୃଗତୃଷ୍ଣା'ର ସେଇ କ୍ଷୟିଷ୍ଣୁ ଜମିଦାର ପରିବାରର ଚରିତ୍ରସବୁ ଏକାଠି ହେଲା ପରେ କାହାଣୀର ଗତି ଆପେ ଆପେ ସେମାନେହିଁ ନିୟନ୍ତ୍ରଣ କଲେ । ତାଙ୍କର ଚାରିତ୍ରିକ ବିଶିଷ୍ଟତା ଅକ୍ଷୁର୍ଣ୍ଣ ରହିଲା । ପ୍ରଥମରୁ କାହାଣୀ ଠିକ୍ କରିଦେଲେ ସେମିତି ହେବ ନାହିଁ । ଆପଣ ଆଗରୁ କାହାଣୀ ଠିକ୍ କରିବେ Chapter by Caapter ତାହେଲେ ଉପନ୍ୟାସ ଭିନ୍ନ ହେବ । ମୋର

ବିଶ୍ୱାସ ଯଦି Intersting ଚରିତ୍ର ଓ ଅନୁଭୂତି ଥିବ ସେମାନେ ମିଶି ଗଲେ କାହାଣୀ ଆପେ ଆପେ ଗଢ଼ି ଗ୍ଳିବ ।

ପ୍ର. ଆପଣଙ୍କ ପରବର୍ତ୍ତୀ ଉପନ୍ୟାସ ବିଷୟରେ ଏମିତି କିଛି ଚରିତ୍ର ଓ ଅନୁଭୂତି ପାଇଛନ୍ତି କି ?

ଉ. ମୁଁ ଯେଉଁ ଲେଖିବି ବୋଲି ମୋ ଭିତରେ ଇଚ୍ଛା କରିଛି ଏମିତି ଏକ ଚରିତ୍ର ସଂପର୍କରେ ଯିଏ ଶରୀର ଚର୍ଚ୍ଚାରେ ନିପୁଣ ଏକ ବ୍ରାହ୍ମଣ ପରିବାରରୁ ଆସିଛି ଅଥଚ ସେ ବୁଦ୍ଧିଜୀବୀ ଭବରେ ଜୀବନଯାପନ କରୁଛି ସେ ଆମେରିକାରେ କଣ କଣ ଅସୁବିଧାର ସମ୍ମୁଖୀନ ହୋଇଛି, ତାର ପାରିବାରିକ ଜୀବନରେ କଣ ଘଟିଛି, ଏ ସଂପର୍କରେ ମୁଁ ଲେଖିବି ବୋଲି ଭବୁଛି । ମୂଳକଥା, ଏକ ଓଡ଼ିଆ ପରିବାରର ଚରିତ୍ରକୁ ଆମେରିକାର ପରିବେଶରେ ଲେଖିବି ସ୍ଥିର କରିଛି ।

ପ୍ର. ଏ ଚରିତ୍ରକୁ ଆପଣ ସମାଜରେ ଭେଟିଛନ୍ତି କି ଅନୁଭବ କରିଛନ୍ତି ?

ଉ. ସମାଜରୁ ଆଣିଛି, ଅନୁଭବ ବି କରିଛି ।

ପ୍ର. ନା, ଆପଣ ସେ ଚରିତ୍ରକି ?

ଉ. ନା, ନା, ମୁଁ ନିଜେ ନୁହେଁ, ଯଦିଓ ଚରିତ୍ରଟି ମୋର ପରିଚିତ ।

ପ୍ର. ଓଡ଼ିଆ ଔପନ୍ୟାସିକମାନଙ୍କ ମଧ୍ୟରୁ କେଉଁମାନଙ୍କୁ ଆପଣଙ୍କୁ ଭଲ ଲାଗେ ।

ଉ. ଯେଉଁମାନଙ୍କୁ ସାଧାରଣତଃ ଭଲ ବୋଲି ନିଆଯାଏ । Quality ଦୃଷ୍ଟିରୁ । ପାଠକ ଭଲ ପଢୁଛନ୍ତି ସେମିତି ନୁହେଁ । ମୋର ଯାହା ବର୍ତ୍ତମାନ ଅନୁଭୂତି ହେଉଛି ଶାନ୍ତନୁବାବୁଙ୍କ 'ଶକୁନ୍ତଳା' ଗୋଟିଏ Classic ଭବରେ ଯିବ । ନୃସିଂହ ପଣ୍ଡାଙ୍କ 'ଚଣ୍ଡାଶୋକ', 'ଧର୍ମାଶୋକ' ଗୋଟିଏ ଭଲ ଉପନ୍ୟାସ ଭବରେ ନେବି । ସୁରେନ୍ଦ୍ର ମହାନ୍ତିଙ୍କ ଉପନ୍ୟାସରେ କିଛିଟା ଅବକ୍ଷୟ ଦେଖୁଛି । ଯେଉଁ ଜୋର ଥିଲା 'ନୀଳଶୈଳ'ରେ ସେଇ ଶକ୍ତିଟା ଆଉ ରହୁନି । ସେମିତି ଦେଖିଲେ ଉପନ୍ୟାସ ଲେଖାହିଁ ଓଡ଼ିଶାରେ କମିଯାଇଛି । ଆଉ ଜଣେ ଔପନ୍ୟାସିକ ଦେଖାଯାଆନ୍ତି ତାଙ୍କରତ 'ନେତା'

ପରେ ଆଉ କୌଣସି ଉପନ୍ୟାସ ପ୍ରକାଶିତ ହୋଇନାହିଁ । 'ନେତା' ବ୍ ଖୁବ୍ ଭଲ ଲାଗିଥିଲା । Youngମାନଙ୍କ ମଧ୍ୟରେ କିଏ ଆଉ ଉପନ୍ୟାସ ଲେଖୁଛି ମୋର ଅନୁଭବ ଭିତରକୁ ଆସିନି ।

ପ୍ର. ହୃଷିକେଶ ପଣ୍ଡାଙ୍କ 'ଶୂନ ସହିତ ସାମୟିକ ସନ୍ଧି' କିମ୍ବା—

ଉ. ହଁ, ପଢ଼ିଛି । ତାକୁ ମୁଁ ଦୁଇଥର ପଢ଼ିଛି । ସେଇ ବହିଟିର ଲେଖାଟଙ୍କ ଖୁବ୍ ଭଲ । ମୋତେ ଭଲ ଲାଗିଲା । କିନ୍ତୁ ବହିରେ ଯେଉଁ ଆଭିମୁଖ୍ୟ ଓ ଦର୍ଶନ ବିଷୟରେ କୁହାଯାଇଛି, ତାହା ପାଠକମାନଙ୍କ ମନକୁ ଛୁଇଁବ ବୋଲି ମୋର ବିଶ୍ୱାସ ହେଉନି । କାରଣ ସେ ସେଥିରେ ନିଜେ ବିଶ୍ୱାସ କରନ୍ତି ନି କିମ୍ବା କୌଣସି ଭାରତୀୟ ବିଶ୍ୱାସ କରନ୍ତିନି । ବାହାରର ଗୋଟିଏ ଦର୍ଶନକୁ, ଗୋଟିଏ ଅନୁଭୂତିକୁ ପୋତି ଦିଆଯାଇଛି ପାଠକମାନଙ୍କ ମନରେ । ଯିଏକି କହୁଛି ସେଇ କଥାବାର୍ତ୍ତା, ଯାହାକି ଔପନ୍ୟାସିକ କହୁ ବୋଲି ଚାହାନ୍ତି । କୁହାଯାଇପାରେ ଉପନ୍ୟାସ ଲେଖିଲାବେଳେ ଔପନ୍ୟାସିକ ଯେଉଁ ଭାବରେ ଆଧୁନିକ ହେବାକୁ ଚାହୁଁଛନ୍ତି ତାର ଭିତ୍ତି ଆମ ଦେଶରେ ନାହିଁ । ଯେ କୌଣସି ଦେଶ ତାର ଗୋଟିଏ ବିଗତ ପରଂପରା ଅଛି, ସେ ପରଂପରାର ବିବର୍ତ୍ତନ ଅନୁସାରେ ଜାତୀୟ ଚରିତ୍ର କେଉଁ ସ୍ତରରେ ଅଛି ତାକୁ ଦେଖିକି ଜଣେ ଔପନ୍ୟାସିକ ଉପନ୍ୟାସର ସମାଜ ସୃଷ୍ଟି କରେ । ସମ୍ପୂର୍ଣ୍ଣ ଭିନ୍ନ ଏକ ଜଗତ ସମ୍ପର୍କରେ ପାଠକ ଆଗ୍ରହୀ ହେବନାହିଁ । ଏଠି ଆମ ପରିବେଶହିଁ ଅଲଗା—ସମସ୍ୟାହିଁ ଅଲଗା । ଆମ ପାଇଁ ଯେଉଁ ନିଃସଙ୍ଗତା କୁହାଯାଉଛି ତାହା କିଛି ନୁହେଁ । ବୁଢ଼ୀ ବିଧବାଟିଏ ନିଃସଙ୍ଗ ଜୀବନ ଯାପନକରେ, ପୁରୀର ହବିଷାନ୍ନରେ ମହା ଉଲ୍ଲାସରେ କାର୍ତ୍ତିକ ବିତାଉଥିବା ବିଧବା-ମାନଙ୍କୁ ଦେଖିଲେ ଏହା କିଏ କହିବ ? ବିଧବାଟିର ସ୍ୱାମୀ ନାହିଁ— ପ୍ରେମ ନାହିଁ— Sex ନାହିଁ ଏହା କିଏ କହିବ ? ପୁଣି ପାଶ୍ଚାତ୍ୟ ଚିନ୍ତାଧାରାରେ ସେମାନେ ସୁଖୀ ନୁହନ୍ତି କହିବା ଠିକ୍ ହେବକି ? ଆମେ Suffer କରୁଛୁ Over Crowdnessରେ । ଆମେ ନିଃସଙ୍ଗ ମୁହୂର୍ତ୍ତଟି ଖୋଜୁଛି କିନ୍ତୁ

ପଢିବା ପାଇଁ । ଏଠି ବୁଢ଼ାଟି ଉପରେ ପାଞ୍ଚଟି ଛୁଆ ନାଚିଯାଉଛନ୍ତି, ସେଠି Old age Homeରେ ଦଶଟି ଦୁଧବୋତଲ କୋଠରୀ ସାମ୍ନାରେ ଥୁଆହେଇ ପରେ ଜଣାପଡୁଛି ଦଶ ଦିନତଳେ ବୁଢାଟି ମରିଯାଇଛ । ଏଠି ଆମେ ବେଶୀ ଗହଳିରେ ଅଛୁଁ । ଆମର ନିଃସଙ୍ଗତା କାହିଁ ? ପାଶ୍ଚାତ୍ୟ ଉପନ୍ୟାସକୁ ପଢି ସେହି ଅନୁଭବକୁ ଏଠି ଥାପିଦେବା ଠିକ୍ ହେବନାହିଁ ।

ପ୍ର. ଆପଣଙ୍କୁ ପ୍ରକାଶକ ଭାବରେ ଗୋଟିଏ କଥା ପଚାରିବାର ଅଛି— ଓଡିଶାରେ ଉପନ୍ୟାସର ପ୍ରଚାର ଓ ପ୍ରସାର କିପରି ?

ଉ. ଉପନ୍ୟାସର ବିକ୍ରି ବର୍ତ୍ତମାନ ଖୁବ୍ ଭଲ । ତାପରେ ଗପ, ତାପରେ ନାଟକ, ସବାଶେଷରେ କବିତା । ଭଲ ଉପନ୍ୟାସ ଲେଖାହେଲେ ତାର ଖୁବ୍ ଭଲ ମାର୍କେଟ ଅଛି ବୋଲି ମୁଁ ବିଶ୍ୱାସ କରେଁ ।

ପ୍ର. ଆଉ କେଉଁ ବିଷୟରେ ଉପନ୍ୟାସ ଲେଖାଯାଇପାରେ ବୋଲି ଆପଣ ମନେ କରନ୍ତି ?

ଉ. ଫକୀରମୋହନ ସେନାପତି ଯେପରି କହିଛନ୍ତି— "ଗଳ୍ପମୟ ପୃଥିବୀ, ଗଳ୍ପ ଲେଖିବାର ଶକ୍ତିଥିଲେ ହେଲା ।" ଉପନ୍ୟାସ କେଉଁ ବିଷୟରେ ଲେଖାଯିବ ଏପରି ସ୍ଥିରୀକୃତ କିଛିନାହିଁ । ଯେକୌଣସି ବିଷୟରେ ଉପନ୍ୟାସ ଲେଖାଯାଇ ପାରିବ । ଏବେ ଭାରତରେ ଦେଖାଯାଉଛି ଭାରତର ପୁରାଣ ଇତିହାସକୁନେଇ ଉପନ୍ୟାସ ଲେଖିବାର ପ୍ରବୃତ୍ତି । ଇତିହାସକୁ ନୂଆ ଭାବରେ ଉପସ୍ଥାପନ କରିବାର ଏକ ଶୈଳୀ । ସବୁପ୍ରାନ୍ତୀୟ ଭାଷାପରି ଓଡ଼ିଆରେ ମଧ୍ୟ 'ସପ୍ତସିନ୍ଧୁ', 'ଚଣ୍ଡାଶୋକ', 'ଯାଜ୍ଞସେନୀ' ପରି ଉପନ୍ୟାସ ଲେଖା ଯାଉଛି ।

ପ୍ର. ବର୍ତ୍ତମାନ ପାଠକ ନିକଟରେ ବହୁ ବିଚିତ୍ର ଘଟଣା, ଚରିତ୍ର ବିଭିନ୍ନ ପ୍ରଚାର ମାଧ୍ୟମରେ ପହଞ୍ଚୁଛି । ଏମିତି ବି ଘଟୁଛି କିଛି ଘଟଣା କେତେକ ଚରିତ୍ର ପାଠକର ପ୍ରିୟ ପୁରୁଷ ରୂପେ ତାକୁ ଆକ୍ରାନ୍ତ କରୁଛନ୍ତି; ଏସମସ୍ତଙ୍କ ଭିଡ଼ରୁ ମୁକ୍ତିପାଇ ଉପନ୍ୟାସର କଳ୍ପିତ ଘଟଣା ଓ ଚରିତ୍ରର ଜଗତକୁ ଯିବାପାଇଁ ତାର ସମୟ କାହିଁ ? ଔପନ୍ୟାସିକ ଭାବରେ ଏଇ ସମସ୍ୟା ସଂପର୍କରେ ଆପଣ କିଛି କହିବେ କି ?

ଉ. ଏ ପ୍ରସଙ୍ଗରେ ମୁଁ ହୃଷିକେଶ ପଣ୍ଡାଙ୍କ ବହିଟିର କଥା କହୁଥିଲି । ବହିଟାକୁ ମୁଁ ସମାଲୋଚନାକଲି ଏଇ ଦୃଷ୍ଟିରୁ–ସନାତନ ଓଡ଼ିଆ ପିଲ; ବାଲେଶ୍ୱରରେ ତାର ଘର । ଯଦି ହୃଷିକେଶବାବୁ ତାର ନାମ ଦେଇଥାନ୍ତେ ଜନ୍ ଓ ପରିବେଶକୁ କରିଥାନ୍ତେ ପେରିସ୍ କି ନ୍ୟୁୟର୍କ ଓ ଲେଖୁଥାନ୍ତେ ଓଡ଼ିଆରେ ତାହାହେଲେ ଭଲ ହୋଇଥାନ୍ତା । ବଡ଼ ଜିନିଷ ହେଉଛି କଣ କେଉଁଠି ଫିଟ୍ କରୁଛି । ଓଡ଼ିଆ ଚରିତ୍ର ଆଫ୍ରିକା ଯାଇପାରିବ ନାହିଁ, ଏମିତି ନୁହେଁ । ଅନେକ ଯାଇଛନ୍ତି । ଯେଉଁ ଜିନିଷଗୁଡ଼ିକ ମୁଁ ମୋର ଗପରେ କରିଛି । ଭବିଷ୍ୟତରେ ତାହା ଉପନ୍ୟାସକୁ ଆସିବାପାଇଁ ବାଧ୍ୟ । ଓଡ଼ିଆ ଉପନ୍ୟାସରେ କଟକ, ପୁରୀ, ବାଲେଶ୍ୱର କୈନ୍ଦ୍ରିକ ଯେଉଁ କାହାଣୀ ଥିଲା ତାହା ଶେଷ ହେବାକୁ ବାଧ୍ୟ । ଖବର କାଗଜରେ ପୃଥିବୀର ବିରାଟ ପରିସର ବିଷୟରେ ଆମେ ପଢିଲାବେଳେ ଉପନ୍ୟାସରେ ସିଜୁଗଛ, ହଳଦୀଲଗା ବୋହୂ, ବୋଝବୋହି ରେଙ୍ଗୁନରୁ ଫେରୁଥିବା କ୍ଳାନ୍ତ ଶ୍ରମିକ, ଓଡ଼ିଆ ପୃଥିର ଏହି ସ୍ୱରୂପ ଆଉ ଭଲଲାଗିବ ନାହିଁ । Exposition of Facts ମାଧ୍ୟମରେ ସମଗ୍ର ପୃଥିବୀ ଗୋଟିଏ ଗାଁ ହୋଇଗଲାଣି । ଏହି ଗାଁରେ ଆଫ୍ରିକାର ନିଗ୍ରୋ, ଇଂଲଣ୍ଡର ଚରିତ୍ର, ଋଷିଆର ବିଦ୍ରୋହ, ଏ ସମସ୍ତ ଓଡଆ କାହାଣୀ ମଧ୍ୟକୁ ଆସିବାକୁ ବାଧ୍ୟ । ଭବିଷ୍ୟତ ପୀଢିରେ ଯେଉଁ ଓଡ଼ିଆ ଔପନ୍ୟାସିକ ଉପନ୍ୟାସ ଲେଖିବେ ତାଙ୍କୁ ପ୍ରତିଦ୍ୱନ୍ଦିତା କରିବାକୁ ପଡ଼ିବ ଯେକୌଣସି ଭାଷାର ଭଲ ଔପନ୍ୟାସିକ ସହିତ । ଓଡ଼ିଆ ପାଠକ ଯେତେବେଳେ ପଢୁଛି; ଉପନ୍ୟାସଟିଏ ତା'ପାଇଁ ସବୁ ଭାଷାର ଉପନ୍ୟାସ ପଢିବାପାଇଁ ସୁଯୋଗ ରହିଛି; ସେଇ ଭାଷାରେ ହେଉ ବା ଅନୁବାଦ ମାଧ୍ୟମରେ ହେଉ । ଏଣୁ ଓଡ଼ିଆରେ ଏକ ଉପନ୍ୟାସ ଲେଖିଲାବେଳେ Quality, Back-ground, Style ଏ ସମସ୍ତ Compete କରିବ ସେହି ଉପନ୍ୟାସ ସହିତ, ଓଡ଼ିଆ ଉପନ୍ୟାସ ସହିତ ନୁହେଁ । ହୃଷିକେଶବାବୁଙ୍କ ଉପନ୍ୟାସ ଏଥିପାଇଁ ସମାଲୋଚ୍ୟ ହେଲା । ଏହା ଓଡ଼ିଶାର ପରିବେଶର ଅନୁକୂଳ ହେଲା ନାହିଁ । ବାହାରେ ଥିବା ଓଡ଼ିଆଙ୍କୁ ନେଇବି ଏମିତି ଲେଖି ପାରିଥିନ୍ତେ ।

☐ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରଫେସର, ଦର୍ଶନ ବିଭାଗ, ବାଣୀବିହାର

## ମୋର ପ୍ରତିଟି ଉପନ୍ୟାସ ସମସ୍ୟା ମୂଳକ

□

ପାଠକ ଜଗତରେ ବିଭୂତି ପଟ୍ଟନାୟକ ଏକ ପରିଚିତ ନାମ । ତରୁଣ ଦିନର ପ୍ରିୟ ଲେଖକ । ବହୁ ପୂର୍ବରୁ ମନେ ହେଉଥିଲେ ଯେମିତି ସେ ଆମର ଚିର ପରିଚିତ । ଆମର ତ କଳ୍ପନା ଥିଲା ସେ ନିଶ୍ଚୟ ଜଣେ ସୌମ୍ୟ ଦର୍ଶନ ଯୁବକ । ପ୍ରୌଢ, ଗମ୍ଭୀର ଓ ସ୍ଥବିର ତାଙ୍କୁ ଦେଖି ସ୍ତବ୍ଧ ଲଗିଲା । 3H ଲୁଇସ୍‌ରୋଡର ଏଇ ସକାଳ ଏକ ମୋହଭଂଗର ସକାଳ । ସେ ଦିନର କେତୋଟି କଥାବାର୍ତ୍ତା :

● ଓଡ଼ିଆ ପାଠକ ମହଲରେ ଆପଣ ଜଣେ ବହୁ ପଠିତ ଓ ଆଦୃତି ପ୍ରାପ୍ତ ଔପନ୍ୟାସିକ । ଓଡିଆ ଉପନ୍ୟାସକୁ ଆପଣ ଏକ ଭିନ୍ନ ମୋଡ ଦେଇଛନ୍ତି, ଉପନ୍ୟାସକୁ ପାଠକର ବେଶୀ ନିକଟବର୍ତ୍ତୀ କରାଇଛନ୍ତି । ଆପଣଙ୍କ ଉପନ୍ୟାସ– ଲେଖନ କଳା ସମ୍ପର୍କରେ ଜାଣିବା ପାଇଁ ଆମ ମନରେ ଏକ ସ୍ୱାଭାବିକ ଇଚ୍ଛା ବହୁ ଦିନରୁ ରହିଛି । ଯେମିତି ଧାରାବାହିକ ଭାବରେ ପତ୍ର ପତ୍ରିକାରେ ଲେଖୁଥିବା ଉପନ୍ୟାସର କଥାବସ୍ତୁ ଆପଣ କେମିତି ସ୍ଥିର କରନ୍ତି ?

● ଗୋଟିଏ କଥା ହେଲା କେଉଁ ବିଷୟରେ ମୁଁ ଲେଖିବି ତାହାର ଭାବଗତ ବିଷୟ କେଉଁଠୁ ଆରମ୍ଭ କରିବି ଏବଂ କେଉଁଠି ଶେଷ କରିବି ଚିନ୍ତା କରେଁ । ତାର ଭାବଗତ ବିଷୟ ସ୍ଥିରକରି ନେଲାପରେ ଉପନ୍ୟାସର ଫ୍ରେମ୍ ମୁଁ ସ୍ଥିର କରେଁ । ପତ୍ରିକାର ପ୍ରତ୍ୟେକ ସଂଖ୍ୟା ପାଇଁ ତା'ର ଶେଷ ମୁହୂର୍ତ୍ତରେ ମୋତେ ଲେଖିବାକୁ ହୁଏ । ତାର ଚରିତ୍ର ଓ ଘଟଣା ସ୍ଥିରକରେଁ କିନ୍ତୁ ଅନେକ ସମୟରେ ଘଟଣା ପ୍ରବାହ ବଦଳିଯାଏ । ଏପରିକି ଅନେକ

ସମୟରେ ଏମିତି ହୁଏ, ଯେପରି ଉପନ୍ୟାସର ପରିସମାପ୍ତି ପାଇଁ ମୁଁ ଚିନ୍ତା କରିଥାଏଁ ତାହା ବଦଳି ଯାଏ । କାରଣ ଉପନ୍ୟାସର ଯେଉଁ ଚରିତ୍ର, ସେମାନେ ସ୍ୱତଃ ନିଜ ଗୁଣରେ ବଦଳି ଯାଆନ୍ତି । ସାହିତ୍ୟିକ ଆଭିମୁଖ୍ୟ ମଧ୍ୟ ବଦଳିଯାଏ । ଉପନ୍ୟାସର ଆରମ୍ଭ କରିବାଟା ମୋର ଦାୟିତ୍ୱ, କିନ୍ତୁ କିପରି ସେମାନେ ଶେଷ ପର୍ଯ୍ୟାୟରେ ପହଞ୍ଚିବେ ତାହା ଘଟଣା ପ୍ରବାହ ଉପରେ ନିର୍ଭର କରେ ।

☐ ଆପଣଙ୍କ ଚରିତ୍ର କେମିତି ଆପଣଙ୍କ ପ୍ରାଥମିକ ଇଚ୍ଛାକୁ ପରିବର୍ତ୍ତିତ କରିଥାନ୍ତି, ଗୋଟିଏ ଉଦାହରଣ ଦେବେ କି ?

☐ ଯେମିତି 'ବନ୍ଦୀ ଯାଯାବର'ର ଭୁବନେଶ୍ୱରୀ । ଉପନ୍ୟାସରେ ତାର ଚରିତ୍ରର Prototype ମୋ ମନ ଭିତରେ ଯେଉଁ ଅବସ୍ଥାରେ ଥିଲା, ସେ କିନ୍ତୁ ଯେଉଁ ଅବସ୍ଥାରେ ପଡ଼ିଲା ଏବଂ ଘଟଣା ଏମିତି ଘଟିବାକୁ ଆରମ୍ଭ କଲା, ଫଳରେ ତାକୁ ମୁକୁଳେଇବା ପାଇଁ ସତ୍ୟନାରାୟଣ ତାର Hero ମଝିରେ Side character heroine ହୋଇ ପଡ଼ିଲା ।

☐ ଆପଣ ଉପନ୍ୟାସ ଲେଖିବାର ପ୍ରେରଣା କେମିତି ପାଆନ୍ତି ? ମନେ କରନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ଉପନ୍ୟାସର କାହାଣୀ ବା ଚରିତ୍ରକୁ କେମିତି develop କରନ୍ତି ?

☐ ଧରନ୍ତୁ ଯେମିତି "ବନ୍ଦୀ ଯାଯାବର" । ତାହା ହେଉଛି ଭୁବନେଶ୍ୱରର ବସ୍ତି ଅଞ୍ଚଳର ଏକ କାହାଣୀ । କଟକର ବସ୍ତି ଅଞ୍ଚଳକୁ ନେଇ ମୁଁ ଲେଖିଥିଲି "ନାୟିକାର ନାମ ଶ୍ରାବଣୀ" । ଭୁବନେଶ୍ୱରରେ ମୁଁ ରହିବା ପରେ ଏଠାରେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ଯେଉଁମାନଙ୍କର ଘରନାହିଁ ସେମାନେ ଲକ୍ଷ୍ୟହୀନ ଭାବରେ ଆସିଛନ୍ତି କିନ୍ତୁ କ୍ରମଶଃ ସେମାନେ ସ୍ଥାୟୀ ହୋଇଯାଉଛନ୍ତି; ଭୋଟର୍ ଲିଷ୍ଟରେ ନାଁ ଉଠାଉଛନ୍ତି, ଏମାନେ ରାଜଧାନୀର ଗୋଟିଏ ଗୋଟିଏ ଅଙ୍ଗ ହେଉଛନ୍ତି– ତାକୁହିଁ ଉପଜୀବ୍ୟ ଭାବରେ ଗ୍ରହଣ କରିଛି ।

ଏଠାରେ ରାଜନୈତିକ ଦଳର ଇଚ୍ଛା ଅନିଚ୍ଛାରେ ଏମାନଙ୍କର ସ୍ଥାୟିତ୍ୱ ନିର୍ଭର କରୁଛି; ଏମାନଙ୍କ ଜୀବନକୁ ନେଇ ମୁଁ କାହାଣୀଟି ଲେଖିଛି । ଯଦିଓ ସେମାନେ କେହି political ନୁହଁନ୍ତି, ଏଇ ରିକ୍ସାବାଲା ହେଉ, ଏଇ ପାନ ଦୋକାନୀ ହେଉ..........

● ଯଦିଓ ଏଇଟା ଗୋଟିଏ idea– କିନ୍ତୁ କାହାଣୀଟି ଆପଣ କେମିତି ପାଇଲେ ?

ଯେଉଁମାନଙ୍କୁ ମୁଁ ଷ୍ଟେସନରେ ଯୋତା ପାଲିସ୍ କରୁଥିବା ଦେଖିଛି, ଯେଉଁମାନେ ରିକ୍ସା ଟାଣୁଥିଲେ, ସେମାନେ ଭୋଟ କ୍ୟୁରେ ଛିଡ଼ା ହୋଇଛନ୍ତି, ଏ ସହରର ରାଜନୈତିକ ଅଧିକାର ପାଇଛନ୍ତି । ଦୁଇଟି କଥା ମୋତେ ପ୍ରେରଣା ଦେଇଥିଲା, ଯେତେବେଳେ ମୁଁ ସେମାନଙ୍କୁ ପୁଲିଂ ବୁଥ୍‌ରେ ଦେଖିଲି ଓ ଗୋଟିଏ ବସ୍ତି ଉଠଗଲା ପରେ ଗୋଟିଏ ମନ୍ଦିରକୁ ଦେଖିଲି ସେମାନେ ଧର୍ମକୁ ଆଶ୍ରାକରି ରାଜନୈତିକ ଅଧିକାର ପାଉଛନ୍ତି ।

● ଆପଣ କହିବାକୁ ଚାହାନ୍ତି ଆପଣଙ୍କ ପ୍ରତ୍ୟେକ ଉପନ୍ୟାସର ଚରିତ୍ର ପରିଚିତ ଦିଗ୍‌ବଳୟର ଚରିତ୍ର ?

● ଚରିତ୍ର ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ନ ହୋଇ ମୁଁ କୌଣସି ଚରିତ୍ର ତିଆରି କରେ ନାହିଁ ।

● ଆପଣଙ୍କ ସବୁ ଉପନ୍ୟାସ ପାଇଁ ଏମିତି ଏକ ସମସ୍ୟାହିଁ ପ୍ରେରଣା ଦେଇ ଥିବ ଏମିତି ନୁହେଁ, କିଛି ଦୃଶ୍ୟ, କିଛି ଘଟଣା ମଧ୍ୟ ଆପଣଙ୍କୁ ଉପନ୍ୟାସ ଲେଖିବା ପାଇଁ ପ୍ରେରଣା ଦେଇଥିବ ?

● ନା, ମୋର ପ୍ରତିଟି ଉପନ୍ୟାସ ସମସ୍ୟାମୂଳକ । ମୁଁ ଗୋଟିଏ ସମସ୍ୟା ନପାଇଲେ ଉପନ୍ୟାସ ଲେଖେଁ ନାହିଁ । ଥରେ ଜଣେ ଭଦ୍ରମହିଳା ମୋତେ ଆସି କହିଲେ "ତାଙ୍କ ସହିତ ମୋର ମନ ମିଳୁନି ।" ଅଥଚ ବାଧ୍ୟହୋଇ ତାଙ୍କ ସହିତ ରହିବାକୁ ପଡୁଛି । ମୋର ବଞ୍ଚିବାକୁ ଅନ୍ୟ ଉପାୟ ନାହିଁ । ଏଇ ଘଟଣାକୁ ନେଇ ମୋର "ପାପ ପୁଣ୍ୟ" ଓ "ଛାୟା ଚନ୍ଦ୍ରିକା" ।

ଏହି ଦୁଇଟି ଉପନ୍ୟାସର **Character** ଅଲଗା, ପରିବେଶ ଅଲଗା, କିନ୍ତୁ **theme** ଗୋଟିଏ । ଗୋଟିକରେ ମୁଁ ଦେଖାଇଛି **compromise** ("ଛାୟା ଚନ୍ଦ୍ରିକା"), ଅନ୍ୟଟିରେ ପ୍ରତିକୂଳ ପରିସ୍ଥିତିରେ ଛିଡା ହୋଇ ଚରିତ୍ର ବଞ୍ଚିଛି । ("ପାପ ପୁଣ୍ୟ") ।

● ସେମିତି **compromise** କଥା ଆମେ "ବଧୂ ନିରୁପମା" ରେ ଦେଖୁ ।

● "ବଧୂ ନିରୁପମା" ସେମିତି ନୁହେଁ । ସେ ଉପନ୍ୟାସ ମୁଁ ପରିକଳ୍ପନା କରିବା ଆଗରୁ ଗୋଟିଏ **Film unit** ସହିତ କଥାବାର୍ତ୍ତା କରିଥିଲି । ସେମାନେ ଗୋଟିଏ ପାରିବାରିକ କାହାଣୀ ଗ୍ରହୁଁଥିଲେ । ସେମାନଙ୍କର କୌଣସି ନିର୍ଦ୍ଦେଶ ନଥିଲା । ଓଡ଼ିଆ ଚଳଚିତ୍ରର ଅଧିକାଂଶ ଦର୍ଶକ ନାରୀ । ତେଣୁ ନାରୀର ମନସ୍ତତ୍ତ୍ୱକୁ ନେଇ ମୁଁ କାହାଣୀର ପରିକଳ୍ପନା କଲି । "ବଧୂ ନିରୁପମା"ରେ compromise କରିଛି, ବାହ୍ୟତଃ ଏମିତି ମନେ ହୋଇପାରେ, କିନ୍ତୁ ପାରିବାରିକ ସମ୍ବେଦନଶୀଳତା ସେଠି ଦେଖାଇଛି । ଯେ ଆଜି ଶାଶୁ, ସେ ମା'ବି ହୋଇପାରେ । ଏ ପରିବର୍ତ୍ତନର ଚିତ୍ରହିଁ ମୁଁ ପ୍ରଦର୍ଶନ କରିଛି ।

● ଆପଣଙ୍କର କେତୋଟି ଉପନ୍ୟାସ ଚଳଚିତ୍ରରେ ରୂପାୟିତ ହୋଇଛି ? ସମସ୍ତ ଚଳଚିତ୍ର ଦେଖିଲେ ଆପଣଙ୍କୁ କେମିତି ଲଗେ ?

● "ମାୟା ମିରିଗ"କୁ ଛାଡ଼ିଦେଲେ ମୋର ଅନ୍ୟ ଉପନ୍ୟାସ ଗୁଡ଼ିକ ଫିଲ୍ମ ହେଲାପରେ ମୋର ମନ ଅନୁରୂପ ହୋଇନାହିଁ । ଅବଶ୍ୟ "ଶୀତରାତି" ପ୍ରେକ୍ଷାଳୟକୁ ଆସିନାହିଁ କିମ୍ବା ମୁଁବି ଦେଖିନାହିଁ । ମାତ୍ର 'ବଧୂ ନିରୁପମା'କୁ ସେମାନେ ମନମୁତାବକ ବଦଳାଇଛନ୍ତି । ଏହା ମୋର ସମ୍ପୂର୍ଣ୍ଣ ଇଚ୍ଛା ବିରୁଦ୍ଧ ଥିଲା । ଅବଶ୍ୟ ଏହା ସତ ଯେ, କୌଣସି ଉପନ୍ୟାସକୁ ଫିଲ୍ମ କଲାବେଳେ ପରିବର୍ତ୍ତନ ଆବଶ୍ୟକ । କିନ୍ତୁ ଚରିତ୍ରକୁ ଇଚ୍ଛା ମୁତାବକ ବଦଳାଇବାର ସେମାନଙ୍କର ଅଧିକାର ନାହିଁ ।

□ ନିର୍ଦ୍ଦେଶକମାନେ କହିବେ ଦର୍ଶକଙ୍କ ରୁଚି ଦୃଷ୍ଟିରୁ ଏମିତି ପରିବର୍ତ୍ତନ ଆବଶ୍ୟକ । ସେ ଯାହାହେଉ ଏବେ ସିନେମାର ପ୍ରାଚୁର୍ଯ୍ୟ ଓଡ଼ିଆ ଉପନ୍ୟାସ ସାହିତ୍ୟକୁ କ୍ଷତିଗ୍ରସ୍ତ କରିବ କି ?

□ ମୋର ମତ ବହି ବିକ୍ରି ହେବାର ଦୁଇଟି ଉପାୟ– ପ୍ରଥମତଃ ପାଠ୍ୟପୁସ୍ତକ ହେବ, ନୋହିଲେ ତାକୁ ସ୍ତ୍ରୀଲୋକମାନେ ପଢ଼ିବାକୁ ଆଗ୍ରହ ପ୍ରକାଶ କରିବେ । ତେଣୁ ଜଣେ କିଏ କହିଛନ୍ତି– Novel ହେଉଛି for the women, by the women and of the women. By the women କହୁଛି ଏଥିପାଇଁ ଯେ ସେମାନେ ନ ଲେଖିଲେ ବି ତାଙ୍କ ଜୀବନ କାହାଣୀ ଅନ୍ୟମାନଙ୍କୁ ଲେଖିବାକୁ ପ୍ରେରଣା ଦିଏ ।

ଓଡ଼ିଆ ଉପନ୍ୟାସରେ ଯଉଁ Crisis, ଆମ ଲେଖକମାନେ Craft ଆଉ Art କୁ Combine କରି ଜାଣନ୍ତି ନାହିଁ ।

□ ଶ୍ରୀ ବିଭୂତି ପଟ୍ଟନାୟକ
3-H କ୍ଵାର୍ଟର୍ସ୍ ରୋଡ, ଭୁବନେଶ୍ୱର

## ଔପନ୍ୟାସିକର ଆଭିମୁଖ୍ୟ

ପ୍ରଖ୍ୟାପନ/ପ୍ରଦର୍ଶନ ଶୈଳୀରେ ଫୁଟିଉଠେ ଘଟଣା ପ୍ରତି ଔପନ୍ୟାସିକର ଆଭିମୁଖ୍ୟ । ଘଟଣା ପ୍ରତି ଆସକ୍ତି ଓ ନିରାସକ୍ତି ତାଙ୍କ ଉପସ୍ଥାପନା କଳାରୁ ସ୍ପଷ୍ଟ ହୁଏ । ଯେଉଁ ଘଟଣା ପ୍ରତି ଔପନ୍ୟାସିକ ସ୍ୱୀକୃତି ନାହିଁ, କଥାୟନ ପରିସର ମଧ୍ୟରୁ ତାକୁ ଦୂରେଇ ରଖିବା ସ୍ୱାଭାବିକ । ତାର ବିପରୀତରେ ଯେଉଁ ଘଟଣା ଔପନ୍ୟାସିକଙ୍କ ମନୋମତ ତାକୁ ଭବବିସ୍ତାରରେ ଉପସ୍ଥାପନ କରିବା ପରିଲକ୍ଷିତ ।

## ଉପନ୍ୟାସ ରଚନାରେ ଆଂଚଳିକ ବୋଲି କିଛି ନାହିଁ



ବାଣୀ ବିହାର ସକାଳ । ଗଣେଶ୍ୱର ମିଶ୍ରଙ୍କୁ ଭେଟିବା ଆଗରୁ ଆମ ଭିତରେ ଅସୀମ ସତର୍କତା : ସେ ପ୍ରଥମେ ସମାଲୋଚକ ନା ପ୍ରଥମେ ଔପନ୍ୟାସିକ । ଭୟ ବି, ସମାଲୋଚକୀୟ ଭଙ୍ଗୀରେ ସେ ଆମକୁ ଠକି ଦେବେ ନାହିଁ ତ ? ଅଥଚ ଏ ସବୁ କେତେ ଭ୍ରାନ୍ତଥିଲା ଆମର ସନ୍ଦେହ, ନିଟୋଳ ଓଡ଼ିଆ ଓ ଆନ୍ତରିକ କଥନରେ ସେ ଆମକୁ ଆଶ୍ଚର୍ଯ୍ୟ କରିଦେଲେ ।

● ଓଡ଼ିଆ ଉପନ୍ୟାସ ସାହିତ୍ୟରେ 'ଚିତ୍ରଗ୍ରୀବ' ପରେ 'ଆଗେହୀ' ଅନ୍ୟ ଏକ ଉପନ୍ୟାସ ଯେଉଁଠି କଥା ପରିସରକୁ ନାରୀ ଚରିତ୍ର ଆସି ନାହିଁ । ଏଇଟା କଣ ଆପଣଙ୍କ ସଚେତନ ପ୍ରୟାସ ?

● ନା, ଜଣେ ଯେତେବେଳେ ଲେଖୁଛି, ଲେଖକ ଭାବରେ ସେ ଅନ୍ୟ କିଛି ଚିନ୍ତା କରେନି । କେଉଁ ଉପନ୍ୟାସ ସହିତ ତା ଲେଖା ଉପନ୍ୟାସର ସାମଞ୍ଜସ୍ୟ ଅଛି କି ନାହିଁ । ଜଣେ ବ୍ୟକ୍ତି ଭିତରେ ଲେଖକ ଅଛି, ସମାଲୋଚକ ବି ଅଛି । ତେଣୁ ସେ ଭାବରେ ଦେଖିଲେ କଥାଟା ଅନ୍ୟ ପ୍ରକାର ହେବ । ଆଗରୁ ମୋ ମନରେ ମଧ୍ୟ ଏକଥା ଆସି ନଥିଲା । ଜଣେ ଯଦି ଲେଖୁଛି ସେ ତା ନିଜ କଥାହିଁ ଲେଖୁଛି । ତେଣୁ ସଚେତନରେ ନୁହେଁ । ସେ ଯେଉଁ ଅବିନାଶ ଆଗେହୀ ଉପନ୍ୟାସର, ସେ ଅନେକାଂଶରେ ମୋ ନିଜ ଚରିତ୍ର । ମୋ ନିଜ ଜୀବନରେ ସେମିତି ହୁଏତ ହୋଇଥିବ । କାରଣ ମୋ ବୋଉ ମରି ଯାଇଥିଲା ପିଲା ଦିନରୁ । ନାରୀ ସଙ୍ଗର ମାଧ୍ୟମ ବୋଉ କିମ୍ବା ଭଉଣୀ । ମୋର ଗୋଟିଏ ଭଉଣୀ ଅଲଗା ରହୁଥିଲା । ବୋଧହୁଏ ଏଇଟା କାରଣ । କିନ୍ତୁ ସଚେତନ ପ୍ରୟାସ ନୁହେଁ ।

● ନାରୀ ଚରିତ୍ର ନଥିବା ଉପନ୍ୟାସରେ କେତୋଟି ଅସୁବିଧା ଅଛି ଯେମିତି ପାଠକ ସମାଜରେ ଆଦୃତ ହେବ କି ନାହିଁ । ଆଗେହୀ ସମ୍ପର୍କରେ ଆପଣଙ୍କର ଏମିତି କିଛି ସନ୍ଦେହ ଥିଲା କି ?

● ନା, ସେ ବିଷୟରେ ଏବେ ସଚେତନ ଭାବରେ ଉତ୍ତର ଦେବାକୁ ପଡୁଛି । କିନ୍ତୁ ବ୍ୟକ୍ତିଗତ ଭାବରେ ମୁଁ ଖୁବ୍ କମ୍ ବୟସରୁ ଲେଖୁଛି । ତେବେବି ପାଠକମାନଙ୍କର ଆଦର କଥା ଭାବି କେହି ଲେଖେ ନାହିଁ : ମୁଁ ମଧ୍ୟ ଲେଖୁନି । ଲେଖିବାର ଆବଶ୍ୟକତାରୁ ହିଁ ଲେଖୁଛି ।

● 'ଆଗେହୀ'ର ଘଟଣାକ୍ରମ ସେମିତି କିଛି ଶୃଙ୍ଖଳିତ ନୁହେଁ । କାହାଣୀର ସ୍ରୋତ ନାହିଁ । ତା ଆଗରୁ ଓଡ଼ିଆରେ ପ୍ରଚଳିତ ତଥା କଥିତ ଆବେଗପ୍ରବଣ ଉପନ୍ୟାସ ଶୈଳୀ ଭାଙ୍ଗି ଦେବାପାଇଁ ଏହା ଏକ ସଚେତନ ଚେଷ୍ଟା କି ?

● ସେଇଠି କିଛିଟା ସଚେତନତା ଥାଇପାରେ । କାହିଁକି ନା ଆମେ କହୁଛୁଁ କାହାଣୀୟ ଧାରା କଥା । ଗୋଟେ ଘଟଣା ଆଜି ଘଟିଲା, ଆଉ ଗୋଟିଏ କାଲି, ଆଉ ଗୋଟିଏ ପରଦିନ– ଏଇ ଟାଇମର ସିକ୍ୱେନ୍ସ ଆମ ମନ ଇମ୍ପୋଜ କରେ । ମନର ମଧ୍ୟ ତାର ନିଜର ଗୋଟିଏ Sequence ଅଛି । ସେ ତ କ୍ରମଗତିରେ ଯାଏନାହିଁ । ମୁଁ ସେ ବହି ଲେଖିଲାବେଳେ ଭାବିଥିଲି ଯେ ଗୋଟିଏ ଘଟଣା ସହ ଅନ୍ୟ ଘଟଣାର ସମ୍ପର୍କ ରହିଛି । ଗୋଟିଏ ଘଟଣା ସହ ଆଉ ଏକ ଘଟଣାର Association ଭାବି ମୁଁ ଲେଖିଥିଲି । ମୁଁ ଚେଷ୍ଟା କରିଥିଲି ନିଜପ୍ରତି ବିଶ୍ୱସ୍ତ ହେବା ପାଇଁ । ଏକଥା ପ୍ରମାଣପାଇଁ ସାହିତ୍ୟକ ଜାର୍ଗନ ବ୍ୟବହାର କରିବାକୁ ମୁଁ ଚାହୁଁ ନାହିଁ । ତେବେ ସବୁରି ମୂଳ କଥାଟି ନିଜ ପ୍ରତି ବିଶ୍ୱସ୍ତ ରହିବା । ଆପଣ ଯଦି ନିଜ ଅନୁଭୂତି ପ୍ରତି ବିଶ୍ୱସ୍ତ ରହିବେ ତେବେ ଲେଖାର ଭିନ୍ନ ଏକ ଆବେଦନ ରହିବ । ଯେଉଁ ଲେଖକ ଯେତେ ବେଶୀ Involve, ତା ଲେଖାର ଆଦର ସେତେବେଶୀ ; ଅନ୍ୟ କିଛି ବିଚାର କଥା ଛାଡ଼ି ଦିଅନ୍ତୁ, କାରଣ ମୋର ଧାରଣା ପାଠକମାନେ ଭଲ ଲେଖା ଚିହ୍ନିପାରନ୍ତି, ଯଦିଓ ଅନେକ

ସମୟରେ ସମାଲୋଚକ ଭଲ ଲେଖା ପାଠକକୁ ଚିହ୍ନେଇ ଦିଏ । ଓଡ଼ିଶାର ସମାଲୋଚକମାନେ ସେଟା କରିବାରେ ବ୍ୟର୍ଥ ହୋଇଛନ୍ତି । ତାର ଦିଟା କାରଣ, ସେମାନେ ଭଲଲେଖା ଚିହ୍ନିପାରନ୍ତି ନାହିଁ । ଦ୍ୱିତୀୟତଃ କେଉଁ ଲେଖାକୁ ସମାଲୋଚନା କଲେ କଣ ଲାଭ ହେବ, ସେମାନେ ବିଚାର କରନ୍ତି ।

● ସମୁଦ୍ର ବିଷୟରେ ଆଗରୁ କିଛି ଉପନ୍ୟାସ ଲେଖା ଯାଇନଥିଲା । ଯଦିଓ ଓଡିଶାର ବଡ ଗୋଟିଏ ଅଂଶ ସମୁଦ୍ର ସହ ସଂଶ୍ଲିଷ୍ଟ ଓଡ଼ିଆ ଉପନ୍ୟାସରେ ସମୁଦ୍ର ଏକ ଉପେକ୍ଷିତ ଦିଗ । ଆପଣଙ୍କ ଘର ପୁରୀ ସମୁଦ୍ର ପାଖରେ ଅନେକ ସମୟ ବିତିଥିବ ଓ ସେଠାରୁ 'ସାମୁଦ୍ରିକ' ଲେଖିବାର ପ୍ରେରଣା ପାଇଥିବେ । ତେବେ ନୋଳିଆମାନଙ୍କର ଜୀବନକୁ ନେଇ ଉପନ୍ୟାସ ଲେଖିବା କାହିଁକି ଠିକ୍ କଲେ ?

● ସେଇଟା ଆପଣ ଯାହା କହିଲେ ସେଇୟା । ମୋର ପିଲାଦିନ ସମୁଦ୍ରସାଙ୍ଗରେ ମିଶିକରି ରହିଯାଇଛି । ଆମଘର ପାଖରେ ସମୁଦ୍ର । ସକାଳେ ସନ୍ଧ୍ୟାରେ ସବୁ ସମୟରେ ଆମେ ସମୁଦ୍ରକୁ ଯାଉଁ । ମୋର ଅନ୍ୟାନ୍ୟ ଲେଖାରେ ମଧ୍ୟ ସମୁଦ୍ର ସମ୍ପର୍କରେ କିଛି କିଛି ରେଫରେନ୍ସ ଅଛି । ନୋଳିଆମାନଙ୍କ ସମ୍ପର୍କରେ ଅଣ୍ଡର ଗ୍ରାଜୁଏଟ ସମୟରେ କିଛି ଲେଖିଥିଲି । ପରେ ଆଉ ଟିକିଏ ପରିଶ୍ରମ କରି ଲେଖିଥିଲେ ହୋଇଥାନ୍ତା । ସେଇଟା ତ ହେଲା ନାହିଁ । ତେବେ ବହିଟା out of print । Revise କରିବି ବୋଲି ତାଙ୍କୁ ଛାପିବାପାଇଁ ମନା କରୁଛି । ସେ ସମୟର ନୋଳିଆମାନେ ଆଉ ସେମିତି ନାହାନ୍ତି । ପରିସ୍ଥିତି ବଦଳି ଯାଇଛି । ମୋର ଏବେ ପୂଜାବେଳେ ବାହାରିବାକୁ ଥିବା 'ସକାଳର ମୁହଁ' ମଧ୍ୟ ପୁରୀ ସମ୍ପର୍କରେ । ପୁରୀର ଗୋଟେ ପିଲା, ତାର ପିଲାଦିନ, ତାର ଚରିତ୍ର ସେଇଠି ଅଛି । ତାର ପ୍ରତ୍ୟେକ Cnapter ସ୍ୱୟଂସମ୍ପୂର୍ଣ୍ଣ । ପୁରୀରୁ ବାହାରକୁ ଚାଲି ଆସିଲାପରେ ମତେ ଲାଗୁଛି ପୁରୀର ସେଇ ଚରିତ୍ର-ସବୁ ବିନଷ୍ଟହୋଇଯିବ । ପୁରୀକୁ back drop କରି ଆଉ ଏକ ଉପନ୍ୟାସ

ଲେଖିଥିଲି "ସାମୁଦ୍ରିକ" ଲେଖିବା ପୂର୍ବରୁ– "ଅନ୍ଧାରର ମୁହଁ" ହେଲେ ଛପା ହୋଇଥିଲା ପରେ ।

☐ "ସାମୁଦ୍ରିକ"କୁ କିଛି ଲୋକ ଆଞ୍ଚଳିକ ଉପନ୍ୟାସ ଭାବରେ ବିଚାର କରନ୍ତି । ଆପଣ ଏକାଧାରରେ ଜଣେ ସମାଲୋଚକ ଓ ଔପନ୍ୟାସିକ ଏ ସମ୍ପର୍କରେ ଆପଣଙ୍କ ମତାମତ କଣ ?

☐ ଉପନ୍ୟାସ ରଚନାରେ ଆଞ୍ଚଳିକ ବୋଲି କିଛି ନାହିଁ । ଆମର ଏମିତି କେବଳ ଗୋଟିଏ ଧାରଣା ରହିଯାଇଛି । ଔପନ୍ୟାସିକ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ଆଖି ଆଗରେ ରଖି ଉପନ୍ୟାସ ରଚନା କରେ । ଏ ଦୃଷ୍ଟିରୁ ପ୍ରତ୍ୟେକ ଲେଖା ଆଞ୍ଚଳିକ । ସବୁ ସାହିତ୍ୟର ସମସ୍ତ ଚରିତ୍ର ଗୋଟିଏ ଗୋଟିଏ ଅଞ୍ଚଳର । ଏଣୁ ସାହିତ୍ୟ ସବୁବେଳେ ଆଞ୍ଚଳିକ । ତେବେ ଆଞ୍ଚଳିକତା ଭିତରେ ଯେଉଁ ସାର୍ବଜନୀନ ଭାବଧାରା ରହିଗଲା, ତାହା ସାହିତ୍ୟକୁ ସାର୍ବଜନୀନ କଲା । ଏଣୁ ଆଞ୍ଚଳିକ କହିବା ଅନେକ ସମୟରେ ଠିକ୍ ନୁହେଁ । ସାହିତ୍ୟରେ କିଛି ମାତ୍ରାରେ Local Colour ଥାଇ– ପାରେ କିନ୍ତୁ ତାହା ମଧ୍ୟ ମଣିଷର ଜୀବନ ଅନୁଭୂତି । ବଲାଙ୍ଗୀରର ଘଟଣାକୁ କିମ୍ବା ଚଳଣିକୁ ନେଇ ଲେଖିଲେ ଉପନ୍ୟାସ କାହିଁକି ଆଞ୍ଚଳିକ ନହେବ ?

☐ କିଛି ଲୋକ ବିଶେଷ ଏକ ଶ୍ରେଣୀର ଉପନ୍ୟାସକୁ ନୃତାତ୍ତ୍ୱିକ ଉପନ୍ୟାସ କହନ୍ତି । ଏପରି ଶ୍ରେଣୀ ବିଭାଜନ ସମ୍ପର୍କରେ ଆପଣଙ୍କ ମତ କଣ ?

☐ Novel ଟା ହେଉଛି ନୋଭେଲ । ଆଲୋଚନାର ସୁବିଧା ପାଇଁ ସମାଲୋଚକମାନେ ଏପରି ନାମକରଣ କରିଛନ୍ତି । ଆଦିବାସୀଙ୍କ ନାମରେ project ନେଉଛନ୍ତି । ତାଙ୍କୁ ଏକ ନୃତାତ୍ତ୍ୱିକଗୋଷ୍ଠୀ ଭାବରେ ଆଲୋଚନା କରୁଛନ୍ତି । ଏ ଲୋକଙ୍କୁ ସେ ଲୋକଙ୍କଠାରୁ ଭିନ୍ନ ଭାବରେ ଦେଖୁଛନ୍ତି । ତାଙ୍କର ଚଳଣି ଅଲଗା ଆମଠାରୁ । ଆମରବି ତାଙ୍କଠାରୁ ଅଲଗା । ଏ ପ୍ରକାର ଚିନ୍ତାଧାରା ନେଇ କେହି କେବେ ଲେଖେନି । ଲେଖକକୁ ଯେଉଁ ପ୍ରକାର Life fascinate କରେ ସେ ତା ବିଷୟରେ ଲେଖେ ।

● "ନେତା" ଉପନ୍ୟାସର ମୂଳପ୍ରେରଣା କଣ ?

● ତାହା ପୁରୀର ଗୋଟିଏ election ନେଇ ସତକଥା ଉପରେ ଲେଖା ଯାଇଛି । ଆପଣଙ୍କର ମନେଥିବ ସେଇଠି କୌଣସି Strong Story ନାହିଁ । ଛୋଟ ସହରର ରାଜନୀତି ଏଠାରେ ରହିଛି । ନିର୍ବାଚନ ପୂର୍ବରୁହିଁ ବହିଟା ସରିଯାଇଛି । ଗୋଟିଏ atmospheare ଦେବାପାଇଁ ସେଠାରେ ଚେଷ୍ଟାକରିଥିଲି । ଏଣୁ Story ଲାଇନଟା ବହୁତ thin. "ସାମୁଦ୍ରିକ"ରେ ବି ସେମିତି । ଏବେ ଯୋଉ ବହିଟା ବାହାରିବ ସେଥିରେ ବହୁତ ଚରିତ୍ର ଅଛି । ସବୁ ଘଟଣା ସତ । ଅଥଚ ସେମିତି କିଛି Story ନାହିଁ । ଘଟଣା ହେଉଛି ଯେ ଆଜିକାଲି ସାହିତ୍ୟ ନାଆଁରେ ଚମକଦେବା ଗୋଟିଏ ଷ୍ଟାଇଲ ହୋଇ ଯାଇଛି । ଏଇସବୁ ସୃଜନଶୀଳ ସାହିତ୍ୟପାଇଁ ଅନୁକୂଳ ନୁହେଁ । ଆପଣ କେମିତି ମଣିଷ, ଆପଣଙ୍କ ଅନୁଭୂତି ଅନ୍ୟମାନଙ୍କ ପାଇଁ କଣ, ତାଙ୍କ ପାଇଁ ସମବେଦନା, ତାଙ୍କ ସହ ବୁଝାମଣା;– ଏସବୁ ସାହିତ୍ୟରେ ବେଶୀ ଦରକାର । ବେଶୀ ଗୁଡ଼ାଏ ଆଦର୍ଶପ୍ରତି ସଚେତନ ହେବା, କୌଣସି ସାହିତ୍ୟିକ movementରେ ଯୋଗଦେବା, creative ଲେଖକପାଇଁ ଦରକାର ନାହିଁ । ବଡ଼ ବଡ଼ ସାହିତ୍ୟ ଯେଉଁମାନେ ସୃଷ୍ଟି କରିଛନ୍ତି, ସେମାନେ ବେଶୀକିଛି ପାଠ ପଢ଼ି ନାହାନ୍ତି, ବେଶୀ କିଛି ଅନୁଭବ କରିଛନ୍ତି ।

ଏ ଯେଉଁ ସାଧାରଣ କଥା ଅଛି, ସେ ସବୁ ଖୁବ୍ ଛୋଟ ମନେ ହୋଇପାରେ । ତାକୁ ଯେତେବେଳେ ଲେଖା ହେଉଛି ତା ଭିତରେ ଜୀବନର ନିଛକ ସତ୍ୟ ପ୍ରକାଶ ପାଉଛି । ଜଣେ ଲେଖକ ଲେଖିବା ଦରକାର ସେ ସବୁ ଘଟଣାକୁ ଯାହା ସେ ଅନୁଭବ କରୁଛି, ଯାହା ସେ ବଞ୍ଚୁଛି । ଆମେ ଅନେକ ସମୟରେ ତା ନକରି ଡ୍ରାମା ଖୋଜୁଛୁଁ । ଡ୍ରାମାଟା ଯେପରି ଲାଇଫଟା ସେମିତି ନୁହେଁ । ଆଉ ଭାବିକି Story ତିଆରି କରଯାଏନି । Story ଆମ ଚାରିପଟେ ଅଛି । ଯେମିତି ଚେକଭଙ୍କ କାହାଣୀ ସବୁ । ମୁଁ ଜୀବନର ବହୁ ଘଟଣାକୁ ଏମିତି ଗପ ଭାବରେ

ଲେଖୁଛି । ସେମିତି ମୋର ଗୋଟେ କାହାଣୀ "ଅନ୍ଧାର" । ଏବେ କିନ୍ତୁ ଆମ ସାହିତ୍ୟରେ ଆମେ ଗୋଟେ ଗପ creat କରିବାକୁ ଚେଷ୍ଟାକରୁଛୁଁ । ଜୀବନରେ created ଗପଠୁଁ ଆହୁରି powerful ଗପ ଅଛି ।

● ଆପଣ ଜୀବିକାରେ ଜଣେ ସମାଲୋଚକ ଓ ଜୀବନରେ ଜଣେ ଲେଖକ । ଟିକିଏ ଆଗରୁ କହୁଥିଲେ academic ଦୃଷ୍ଟିଭଙ୍ଗୀ ଲେଖକକୁ ଭୁଲ ବାଟରେ ନେଇଯାଏ । ଆପଣଙ୍କୁ ଥରେ ଥରେ ଅସୁବିଧା ଲାଗିନି ?

● ଅସୁବିଧା ଲାଗେ । କଥା ହେଉଛି ଯେତେବେଳେ ଆପଣ ଲେଖୁଛନ୍ତି, ସେତେବେଳେ ଯଦି ଆପଣ ସମାଲୋଚକ ହେବେ, ଆପଣ ଲେଖିପାରିବେ ନାହିଁ । ମୁଁ କେତେବେଳେ କହେଁ "good is better than best" ମୋ ଅନେକ ଅନୁଭବ, ଅନେକ କଥା କେତେବେଳେ ଇଂରେଜୀରେହିଁ ମନକୁ ଆସେ, ମୋର ଅଧିକାଂଶ ପଢାପଢି ଇଂରେଜୀରେ । ପାଞ୍ଚବର୍ଷ ଇଂଲଣ୍ଡରେ ରହିଛି । ସେଗୁଡାକୁ ଓଡ଼ିଆ କରିଦେଲେ ନୂଆଁ ଶୁଭିବ, ତେଣୁ ମୁଁ ଓଡ଼ିଆରେ ଲେଖୁଛି । ତା ନହେଲେ ଅନେକ ଘଟଣା ଅସୁବିଧା ହେଉଛି ।

● ଆପଣ ଲେଖିବା ଆଗରୁ ପ୍ରେରଣା ଗୋଟିଏ Ideaରୁ ପାଆନ୍ତି ନିଶ୍ଚୟ ?

● ସେମିତି ଧରାବନ୍ଧା କହିହେବନି । ଗୋଟେ ଜିନିଷ ବୋଧହୁଏ ମୋତେ fascinate କରୁଥାଇପାରେ । ସେଇଟା ହେଉଛି ଚରିତ୍ର । ଅନ୍ତତଃ "ସକାଳର ମୁହଁ" ବହି କ୍ଷେତ୍ରରେ ଏହା ସତ । ତେବେ କେଉଁଠି କେଉଁଠି idea ବି ଥାଇପାରେ ।

● ଆପଣଙ୍କ ଉପନ୍ୟାସର ସମାପ୍ତି କେତେବେଳେ କିମିତି ଅଦ୍ଭୁତ ଲାଗେ ଯେମିତି "ଆଗେହୀ" ରେ ପିଲଟିର ବାପା ମରିଯାଇଛି, ଏଇଠି କାହାଣୀ ସରି ଯାଇଛି । ଉପନ୍ୟାସର ନାଁ ଦେଇଛନ୍ତି "ଆଗେହୀ" । ଏସବୁ କିପରି ସମ୍ପର୍କିତ ?

● "ଆଗେହୀ"ରେ ବୋଧହୁଏ ନିଃସଙ୍ଗତାର କଥା ଅଧିକ କୁହାଯାଇଛି । ଚରିତ୍ରଟା ଗୋଟେ uncertainty ଭିତରେ ବଞ୍ଚୁଛି । ଅନେକ ସମୟରେ

କଣ ହୁଏ ନା ଆମ ସମସ୍ତଙ୍କର ନିଃସଙ୍ଗତା ଥାଏ, ଯାହାକୁ ପରେ ଆମେ ଭିନ୍ନ ଭାବରେ Societyକୁ Submit କରିଦେଉଁ ।

- ଅବିନାଶ ଯେଉଁ ବାହା ହେଉଛି ନିଃସଙ୍ଗତାରୁ ମୁକ୍ତି ପାଇଁ ନା ବାହା ହେବ ବୋଲି ?

- ମୋର ଯାହା ମନେହୁଏ, ଏଇଟା deleberately ଭାବି ନଥିଲି । ଲେଖକ ଯେ ଦେଖୁଛି ତାର କାମଟା କଣ ? ଗୋଟେ ଯାଗାରେ କିଛି ଆବର୍ଜ୍ଜନା ଜମା ହୋଇଛି, ଦୁଇ ପ୍ରକାର ଲେଖକ ତାକୁ ଦୁଇ ପ୍ରକାର setting କରିପାରନ୍ତି । ଗୋଟେ ହୋଇପାରେ ଜଣେ ଟର୍ଚ୍ଚ ପକେଇ ଦିଏ ଓ କହେ "ଆବର୍ଜ୍ଜନା ଉଠେଇ ଦିଅ ।" ଆଉ ଗୋଟେ ହୋଇପାରେ କିଛି ନକହି ଜଣେ ଟର୍ଚ୍ଚ ପକେଇ ଦିଏ ଓ ଲିଭେଇ ଦିଏ । ମୋର ମତରେ ଦ୍ୱିତୀୟ ଜଣକ ବେଶୀ ବ୍ୟଞ୍ଜନାତ୍ମକ । ସେଠି ପାଠକ ଯାହା ଅର୍ଥକରୁ ।

- ଓଡ଼ିଆ ଉପନ୍ୟାସ ସମ୍ପର୍କରେ ଆପଣଙ୍କ ମତାମତ କଣ ? ଏଇ ଶହେ ବର୍ଷର ସମୃଦ୍ଧି ବା ବିଫଳତା ଆପଣଙ୍କୁ କେମିତି ପ୍ରେରଣା ଦିଏ ?

- ଖୁବ୍ ବେଶୀ ଓଡ଼ିଆ ଉପନ୍ୟାସ ପଢ଼ିଛି ବୋଲି କହିପାରିବିନି । ତେବେ ମୁଁ "Voices against stone" ଲେଖୁଛି । ଆମ ଓଡ଼ିଆ ଉପନ୍ୟାସ ପ୍ରାୟ ୨୦୦୦ ପର୍ଯ୍ୟନ୍ତ ଲେଖାହୋଇଛି ତାର ଗୋଟେ bibliography ତିଆରି କରିଛି । ତେବେ ଓଡ଼ିଆରେ ବହୁତ କମ ଭଲ ଉପନ୍ୟାସ ଲେଖା ହୋଇଛି । ଆମର ଅଧିକାଂଶ ଉପନ୍ୟାସର canvas ଖୁବ୍ ସୀମିତ । ଓଡ଼ିଆ ଉପନ୍ୟାସରେ ଉପକୂଳବର୍ତ୍ତୀ ଅଞ୍ଚଳ that too ଏଠାକାର ସମାଜର ଗୋଟେ ନିର୍ଦ୍ଦିଷ୍ଟ Section, higher middle class ବା ଜାତି ଭାବରେ କୁହାଯାଇ ପାରିବ higher caste ତାଙ୍କରି ହିଁ ସାମାଜିକ ଜୀବନ ରହିଛି । ଧରନ୍ତୁ କାହ୍ନୁଚରଣ ମହାନ୍ତିଙ୍କ ଉପନ୍ୟାସରେ କଟକର ଗାଆଁର ଚିତ୍ର କିମ୍ବା ଗୋପୀନାଥ ମହାନ୍ତିଙ୍କ ଆଦିବାସୀମାନଙ୍କ ଜୀବନ ଚିତ୍ର । ଏଇଟା ଛାଡ଼ିଦେଲେ ଓଡ଼ିଶାର ଜୀବନରେ ଯେ ବହୁତ ବ୍ୟାପକତା ରହିଛି ତାହା ଉପନ୍ୟାସରେ ପ୍ରତିଫଳିତ ହୋଇ ନାହିଁ ।

● ଇଂରାଜୀ ଓ ଅନ୍ୟ ବିଦେଶୀ ଉପନ୍ୟାସ ସମ୍ପର୍କରେ ଆପଣଙ୍କ ମତାମତ କଣ ?

● ଇଂରାଜୀ ଉପନ୍ୟାସ ସମ୍ପର୍କରେ ମୋର ଅନୁଭୂତି ଟିକିଏ ଅଲଗା । କାରଣ ଏ ସମ୍ପର୍କରେ ପଢ଼ିବା, ପଢ଼ାଇବା ଓ ସମାଲୋଚନା କରିବା ମୋର ଜୀବିକା । ମୋର ଗବେଷଣାବେଳେ ହିନ୍ଦୀ, ବଙ୍ଗଳା, ଓଡ଼ିଆ ଓ ଭାରତୀୟ ଲେଖକଙ୍କ ଇଂରାଜୀ ଉପନ୍ୟାସ ସମ୍ପର୍କରେ ଆହୁରି ବେଶୀ ଜାଣିବାକୁ ପାଇଛି । କାରଣ ଏହାହିଁ ମୋର ବିଷୟ ଥିଲା । ପରେ ଯେତେବେଳେ ଆଉ ଗୋଟିଏ ବର୍ଷ ପାଇଁ ଫେଲୋସିପ୍ ପାଇକି ଆଫ୍ରିକାନ ଆଉ ୱେଷ୍ଟ୍ ଇଣ୍ଡିଆନ୍ ଉପନ୍ୟାସ ସମ୍ପର୍କରେ ପଢ଼ାପଢ଼ି କଲି ସେତେବେଳେ ଏସବୁ ମତେ ବେଶ ଭଲ ଲାଗିଲା ବିଶେଷ କରି ।

ଏ ନାଆଁ ଗୁଡ଼ିକ କାହିଁକି କହୁଛି ନା, ଅନ୍ୟ ନାଁ ସବୁ ସମସ୍ତେ ଜାଣିଛନ୍ତି । ସେମାନେ ସମସ୍ତେ ଭଲ ଲେଖକ । ଆମର ଗୋଟେ ଧାରଣା ହୋଇ ଯାଇଛି, ଇଂଲଣ୍ଡ ଓ ଆମେରିକାରେ ହିଁ ଭଲ ଲେଖକ ଅଛନ୍ତି । ଅଥଚ ଆଫ୍ରିକାନ କିମ୍ବା ୱେଷ୍ଟଇଣ୍ଡିଆନ୍ ସମସ୍ୟାସହ ଆମ ଜୀବନ ସମସ୍ୟାର ସାମଞ୍ଜସ୍ୟ ଏତେ ବେଶୀ ଯେ ଆମେ ସହଜରେ ନିଜକୁ ସେଇଠି Identify କରି ପାରିବା । ତାଙ୍କ ସଙ୍ଗେ ଆମର ସିଧ ସଳଖ ସମ୍ପର୍କ । ଏସବୁ ପଢ଼ିବାପରେ ମୁଁ ବହୁତ ଉପକୃତ ହୋଇଛି । ଯଦିଓ ପ୍ରଭାବଟା ଭିନ୍ନ କଥା, କିଏ କାହା ଦ୍ୱାରା ପ୍ରଭାବିତ ହୋଇଛି ସେ କଥା ଭିନ୍ନ । ମୁଁ ମନେକରେ ଜଣେ ଲେଖକ ଯାହା ଲେଖୁ ସେ ନିଜ କଥାହିଁ ଲେଖୁବ । କାରଣ ସେ ସଚ୍ଚା ଲେଖିବାର ଆବଶ୍ୟକତାରୁହିଁ ଲେଖୁଛି । ମୋ କ୍ଷେତ୍ରରେ ଏହାହିଁ ଘଟିଛି । ଚମକ୍ ଦେବା ବା ଲେଖା ମାଧ୍ୟମରେ ଅନ୍ୟକୁ ବୋକା ବନେଇବା, ଏ ଧରଣର ଲେଖାରେ ମୋର ଆଗ୍ରହ ନାହିଁ ।

● Russian ଔପନ୍ୟାସିକ, ତାଙ୍କ ବିଷୟରେ ତ କିଛି କହିଲେ ନାହିଁ ?

● Russian **novelist** କହିଲେ ମୋତେ ଚେକଭ୍‌ଙ୍କ ଲେଖା ବହୁତ ଭଲ ଲାଗେ । ମୋତେ ଲାଗେ ସେ ଖରା ଜୀବନପ୍ରତି ବିଶ୍ୱସ୍ତ । ବାସ୍ତବ ଜୀବନରେ ସେ ଡ୍ରାମା ଲକ୍ଷ୍ୟ କରିଛନ୍ତି ଅଥଚ ତାଙ୍କ ଲେଖାରେ ଡ୍ରାମା ନାହିଁ । ଖୁବ୍ ସାଧାରଣ ଘଟଣାକୁ ଚେକଭ୍ ଯେମିତି କହନ୍ତି ତାହା ଅସାଧାରଣ ହୋଇଯାଏ ।

□ ଡଃ ଗଣେଶ୍ୱର ମିଶ୍ର,
ପ୍ରଫେସର, ଇଂରଜୀ ବିଭାଗ,
ବାଣୀବିହାର, ଭୁବନେଶ୍ୱର

## ଉପନ୍ୟାସର ବସ୍ତୁନ

ଉପନ୍ୟାସ ଏକ ସ୍ୱତଃସ୍ଫୁର୍ତ୍ତ କଳା ନୁହେଁ, ଯେପରି କବିତା–ଯେପରି ଚିତ୍ର । ଉପନ୍ୟାସ ଘଟଣାର ବୟନ, ଘଟଣାର ସଚେତନ ବିନ୍ୟାସ । ଏ ଦୃଷ୍ଟିରୁ ଉପନ୍ୟାସ ସଂଗୀତ ସହ ତୁଳନୀୟ । କେଉଁଠି ଧ୍ୱନି ମାଧ୍ୟମରେ ବୃହତ୍ତର ଅନୁଭୂତିସହ ଶ୍ରୋତା ପରିଚିତ ହୁଏ ଗନ୍ତାଣ୍ଡର ବୟନ ଓ ବିନ୍ୟାସରେ ଉପନ୍ୟାସ ସେପରି ମହତ୍ତର ଅନୁଭୂତି ସହ ପରିଚିତ କରାଏ ।

□ **Thomas Mann**
"The making of magic mountain"

## ମୁଁ ଆବେଗପ୍ରବଣ ନହୋଇ କିଛି ଲେଖି ପାରେ ନାହିଁ

☐ "ଯାଜ୍ଞସେନୀ"ର ପ୍ରକାଶ ପରେ ପ୍ରତିଭା ରାୟ ମନେ ହେଉଥିଲେ ପ୍ରିୟ ଓ ପରିଚିତ । ଆମ ସମସ୍ତଙ୍କର ଅଭିଯୋଗ ଥାଏ ତାଙ୍କ ଉପନ୍ୟାସଗୁଡ଼ିକ ନାରୀ କେନ୍ଦ୍ରିକ । ପ୍ରତିଭା ରାୟ ନଟସରା ପରିଗ୍ରହଣରେ କାହିଁକି ବୀତସ୍ପୃହ ? ଏକଥା କେତେ ସହଜ ଯେ ପ୍ରତିଭା ରାୟ ମୂଳତଃ ଜଣେ ନାରୀ । ସେ ପ୍ରତିବାଦ କରିଛନ୍ତି, ସେ ପ୍ରଥମତଃ ଜଣେ ଔପନ୍ୟାସିକା ।

● ଉପନ୍ୟାସ ସମ୍ପର୍କରେ ଗୋଟିଏ କଥା ଶୁଣାଯାଏ, Novel ହେଉଛି for the women. by the women, of the women. ଓଡ଼ିଶାରେ ଉପନ୍ୟାସ ପାଠିକା ଥିଲେ । ନାରୀମାନଙ୍କୁ ନେଇ ଉପନ୍ୟାସ ଲେଖା ଯାଇଛି ଓ ଯାଉଛି । ତେବେ ନାରୀମାନେ ଉପନ୍ୟାସ ଲେଖୁଥିଲେ କ୍ୱଚିତ । ଆପଣ ଏ ଅପୂର୍ଣ୍ଣତାକୁ ପୂରଣ କରିଦେଲେ । ଉପନ୍ୟାସ ଲେଖିବାକୁ ଆପଣଙ୍କୁ କଣ, କିଏ ବା କେଉଁମାନେ ପ୍ରେରଣୀତ କଲେ ?

● ମୁଁ ଯେ କେବଳ ନାରୀମାନଙ୍କ କଥା କହିଛି ପୁରୁଷମାନଙ୍କ କଥା କହିନି ତାହା ନୁହେଁ । ଯଦି ଆପଣ କହୁଛନ୍ତି ନାରୀମାନଙ୍କ କଥା କହିବାରେ ମୁଁ ବେଶୀ ସଫଳ ହୋଇଛି ବେଶୀ କହିଛି, ସେ ପ୍ରେରଣା କେଉଁଠୁ ପାଇଛି–ତାହା ମୋତେ ସମାଜହିଁ ଦେଇଛି । ଆଧୁନିକ ସମାଜରେ ନାରୀ ଯେପରି ଭାବରେ ନିର୍ଯ୍ୟାତିତା ହେଉଛି ଏହି ସମସ୍ୟାହିଁ ମୋତେ ନାରୀ ସମ୍ପର୍କରେ ଲେଖିବା ପାଇଁ ପ୍ରେରଣା ଦେଉଛି । ଆଉ ଲେଖିବାପାଇଁ ଯେଉଁ ପ୍ରେରଣା କଥା କହିଲେ ଏଇଟା ମତେ ମୋର ବାପା ଦେଇଛନ୍ତି ।

● ଆପଣ ଯେଉଁ ସମାଜରୁ ପ୍ରେରଣା ପାଆନ୍ତି ତାହା ଏକ ସମସ୍ୟା ଭାବରେ ନା ଏକ ଚରିତ୍ର ଭାବରେ ଆପଣଙ୍କ ମନକୁ ଆସେ ?

● ଚରିତ୍ର ଭାବରେ ।

● ନିର୍ଦ୍ଦିଷ୍ଟ କରି ଗୋଟିଏ ଚରିତ୍ର କଥା କୁହନ୍ତୁ ଯାହାକୁ ଆପଣ ଉପନ୍ୟାସ ଚରିତ୍ର କଲାବେଳେ କିପରି ପରିବର୍ତ୍ତିତ ହେଲା ବା ଅପରିବର୍ତ୍ତିତ ରହିଲା ।

● କିଛି ବର୍ଷ ପୂର୍ବେ ଏକ ଘଟଣା ବହୁ ଆଲୋଚିତ ହୋଇଥିଲା । ଖବର କାଗଜମାନଙ୍କରେ- 'ସମାଜ'ରେ, 'Sunday'ରେ ବାହାରିଥିଲା । ଗୋଟିଏ ସାତ ଆଠ ବର୍ଷ ଝିଅର ପିଠିରେ ଜଣେ ପୋଲିସ ଅଫିସରଙ୍କ ସ୍ତ୍ରୀ ନିଆଁ ଲଗେଇ ଦେଲେ ଏବଂ ଜଣେ ଜଷ୍ଟିସ୍ ସେ ଝିଅକୁ ଆଶ୍ରୟ ଦେଇଥିଲେ, ତା ପାଇଁ ଲଢି ବି ଥିଲେ । ଗୋଟିଏ ଅସହାୟ ମଣିଷ ପ୍ରତି ଆଉ ଜଣେ ମଣିଷର ଅତ୍ୟାଚାର ମୋ ମନରେ ଭାରୀ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ତାକୁ ମୁଁ ମୋର "ସମୁଦ୍ରର ସ୍ୱର" ଉପନ୍ୟାସରେ ନାୟିକା କରିଛି । ମୁଁ ତା ସାଙ୍ଗରେ କଥାବାର୍ତ୍ତା କରିଛି, ଦେଖା କରିଛି । ସେ ଯେଉଁ ଅନାଥାଶ୍ରମରେ ଆଶ୍ରୟ ନେଇଥିଲା, ସେଠି ଭେଟିଛି । ଆପଣ ଆଶ୍ଚର୍ଯ୍ୟହେବେ ତାର ଯେଉଁ ପରିଣତି ମୁଁ କଳ୍ପନା କରିଥିଲି ଶେଷରେ ପ୍ରାୟ ତାହାହିଁ ଘଟିଲା । ମୁଁ ତାକୁ କଳ୍ପନାରେ ପଠାଇ ଦେଲି ଜଣେ ବୈଜ୍ଞାନିକଙ୍କ ପାଖକୁ । ବହୁବର୍ଷ ପରେ ସେ ଅନାଥାଶ୍ରମର ପରିଚାଳିକାଙ୍କୁ ଭେଟିଲି । ସେ ଯାହା କହିଲେ ଶୁଣି ଆଶ୍ଚର୍ଯ୍ୟ ହେଲି । ସେ ଝିଅ ଏବେ ଆମେରିକାରେ ।

● ସେଇଠି ଆପଣଙ୍କ ଅନ୍ତର୍ଦ୍ଦୃଷ୍ଟି ସତ ହୋଇଯାଇଛି । ତେବେ ମାଡାମ, ପ୍ରଥମେ ଆପଣ ଗୋଟିଏ ଘଟଣା ପାଇଲେ, ପରେ କିଛି ଦିନ ଆଇଡିଆ ଭାବରେ ଆପଣଙ୍କ ମନରେ ରହିଲା । ତାକୁ କେମିତି ଉପନ୍ୟାସାୟିତ କଲେ ?

● ଆପଣ ଯାହାକୁ କାହାଣୀ କହୁଛନ୍ତି, ମୁଁ ତାକୁ କହୁଛି ଗୋଟିଏ ଯନ୍ତ୍ରଣା ବା ସମସ୍ୟା ବା ଗୋଟିଏ ଆଇଡ଼ିଆ । ଏଇଠି ଗୋଟିଏ ଯନ୍ତ୍ରଣା ହୋଇ ସେ ଝିଅଟିର କଥା ମନରେ ରହିଗଲା । ସେ ଯନ୍ତ୍ରଣାଟି ମୋତେ ଉଖାରିଲା ଏବଂ ତାହାହିଁ ମୋତେ ପ୍ରେରଣା ଦେଲା ମୋ ଯନ୍ତ୍ରଣାର ଉପଶମ ପାଇଁ । ମୁଁ କେମିତି ଭାବରେ ସେ ଯନ୍ତ୍ରଣାର ଉପଶମ କରିବି ତାକୁ ପ୍ରକାଶ କରିବା

ପାଇଁ ମୋତେ ବେଶ୍ ସମୟ ଲାଗିଲା । ଯନ୍ତ୍ରଣାଠାରୁ ଯନ୍ତ୍ରଣା ପ୍ରକାଶର ସମୟ– ସେଇଟା ମୋର ପ୍ରୟାସର ସମୟ, ପ୍ରସ୍ତୁତିର ସମୟ ।

● ପ୍ରସ୍ତୁତି କଲାବେଳେ ଆପଣ ସେଚ୍ କରନ୍ତି ନା ଏମିତି ଲେଖନ୍ତି ?

● ମାନସିକ ସେଚ୍‌ଟିଏ ତ କରେଁ । ତା ଛଡା ମୁଁ ମଧ୍ୟ ନୋଟ କରେଁ– କେମିତି କଣ କରିବି । ଗୋଟିଏ କଙ୍କାଳ ତିଆରି କରେଁ ।

● ସେଇଟା ଶେଷ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହେକି ?

● ହଁ, ବହୁ କ୍ଷେତ୍ରରେ ପରିବର୍ତ୍ତିତ ହୋଇଯାଏ । ଆପଣ ଲେଖି ଲେଖି ଚାଲି– ଥିବେ ହଠାତ ନକ୍ସାଠାରୁ ଆପେ ଆପେ ହିଁ କାହାଣୀ ପରିବର୍ତ୍ତିତ ହୋଇଯିବ ।

● "ଶିଳାପଦ୍ମ"ର ଗ୍ଲର୍ଲସ୍ ଚରିତ୍ରକୁ ଆପଣ real life ରେ ଦେଖିଛନ୍ତି କି ?

● ହଁ । ଅନ୍ତରଙ୍ଗ ଭାବରେ ମୁଁ ତାକୁ ନିରୀକ୍ଷଣ କରିଛି । ଯଦିଓ ମୁଁ ତା ସହିତ ବ୍ୟକ୍ତିଗତ ଭାବରେ କଥାବାର୍ତ୍ତା କରିନି, ମୁଁ ତାର ଭାବଟାକୁ ଗଭୀର ଭାବରେ ଚିନ୍ତା କରିଛି । ମୁଁ ତାକୁ କୋଣାର୍କର ପୃଷ୍ଠଭୂମିରେ ହିଁ ଭେଟିଥିଲି । ତା'ର ଯେଉଁ girl friend ଚରିତ୍ର– ତାକୁ ମଧ୍ୟ ସେଠି ଭେଟିଥିଲି ଗୋଟିଏ ଯୌନମୂର୍ତ୍ତି ଆଗରେ ।

● ଗ୍ଲର୍ଲସଙ୍କୁ ଆପଣ ଖୁବ୍ ସହଜରେ ଓଡ଼ିଶା ସହ emotionally attach କରି ଦେଇଛନ୍ତି ।

● ଗ୍ଲର୍ଲସର ବାପା ଜଣେ ବାସ୍ତବ ଚରିତ୍ର । ସେ ଓଡ଼ିଶାର ବହୁ ଉନ୍ନତିମୂଳକ କାର୍ଯ୍ୟ କରିଚନ୍ତି । ଏଣୁ ଓଡ଼ିଶା ପ୍ରତି ଗ୍ଲର୍ଲସ୍‌ର emotionally attachment ର କାରଣ ହେଉଛି ଏହା ।

● "ଯାଜ୍ଞସେନୀ" ରେ କିଛି ଆବେଗ ପ୍ରବଣତା ଓ ନାଟକୀୟତା ପରିଲକ୍ଷିତ ହୁଏ ।

● ମୁଁ ଆବେଗ ପ୍ରବଣ ନହୋଇ କିଛି ଲେଖିପାରେନି । ମୁଁ ପ୍ରଥମ ଉପନ୍ୟାସରେ ଯେମିତି ଆବେଗ ପ୍ରବଣ ଥିଲି ମନେ ହେଉଛି ତାହା ଆସ୍ତେ ଆସ୍ତେ କମି କମି ଯାଉଛି । ଏଇଟାହିଁ ମୋର ପାଠକମାନଙ୍କର ଅଭିଯୋଗ । ତେବେ ଏହା ସତ୍ୟ ଯେ ଆବେଗଶୂନ୍ୟ ଭାବରେ ଉପନ୍ୟାସ ଲେଖିବା ମୋ ପକ୍ଷରେ ସମ୍ଭବ ନୁହେଁ ।

● ଔପନ୍ୟାସିକ କେବେବି ପାଠକ ପାଇଁ ଲେଖେନି, ପାଠକର ରୁଚିକୁ ସମ୍ମାନ ଦେଇପାରେ–

● ନିଜ ଭିତରର ଅନ୍ତଃପ୍ରେରଣା ମୂଳ କଥା । ନିଜ ଭିତରେ ଗୋଟିଏ ଯନ୍ତ୍ରଣା ସୃଷ୍ଟି ହେଲେ ନିଜ ଆନନ୍ଦ ପାଇଁ ଆମେ ଲେଖୁଛୁଁ । ପରେ ତାକୁ ପଢି ପାଠକ ଆନନ୍ଦପାଉଛି । ତେବେ ମୁଁ ପାଠକକୁ ପୂରା neglect କରେନି ।

● ଓଡ଼ିଆ ଉପନ୍ୟାସମାନଙ୍କରେ ଯେଉଁ ନାରୀ ମନର ଚିତ୍ର ଔପନ୍ୟାସିକମାନେ ଦେଇଛନ୍ତି, ସେ ବିଷୟରେ ଆପଣଙ୍କ ମତାମତ କଣ ?

● ନା, ମୋର କିଛି କହିବାର ନାହିଁ, ଔପନ୍ୟାସିକ ଭାବରେ ସେମାନେ ତାଙ୍କ ଅନୁଭୂତିକୁ ସତ୍ୟବଦ୍ଧ ଭାବରେ ପ୍ରକାଶ କରିଛନ୍ତି ବୋଲି ମୋର ବିଶ୍ୱାସ ।

● ଓଡ଼ିଶାରେ କେଉଁ ଔପନ୍ୟାସିକ ଆପଣଙ୍କୁ ଭଲ ଲାଗନ୍ତି ?

● ଏମିତି ତ ଅନେକ ଉପନ୍ୟାସ ଅଛି, ତେବେ କାହ୍ନୁ ମହାନ୍ତି, ମୋତେ ଖୁବ୍ ଭଲ ଲାଗନ୍ତି ।

● ଆପଣଙ୍କ କେଉଁ ବହି ଆପଣଙ୍କୁ ସବୁଠୁ ଭଲ ଲାଗେ ?

● "ଯାଜ୍ଞସେନୀ" । "ଯାଜ୍ଞସେନୀ" ଲେଖିଲାବେଳେ ମୁଁ ଯେପରି ସ୍ୱପ୍ନାବିଷ୍ଟ ହୋଇ ଲେଖିଛି ଆଉ କୌଣସି ଉପନ୍ୟାସ ଲେଖିଲାବେଳେ ସେମିତି ଲାଗିନି । "ଯାଜ୍ଞସେନୀ" ଲେଖିଲାବେଳେ ଆତ୍ମ ନିମଜ୍ଜିତ ହୋଇ ଯେଉଁ ସନ୍ତୋଷ ପାଇଛି ତାହା ଅନ୍ୟଠି ପାଇନାହିଁ ।

● "ଯାଜ୍ଞସେନୀ"ର କାହାଣୀ ପୂର୍ବରୁ ସ୍ୱୀକୃତ ବୋଲି ଆପଣଙ୍କ କିଛି ଅସୁବିଧା ହୋଇନି ?

- ନା, ମୂଳ କାହାଣୀର ଯେଉଁଠି ଫାଙ୍କ ରହିଯାଇଥିଲା ସେଠାରେ ମୁଁ ମୋର ଦୃଷ୍ଟିଭଙ୍ଗୀରେ, ମୋର କଳ୍ପନାରେ ତାହା ପୂରଣ କରିଛି ।

- ଆପଣ କେଉଁ European Novelist ଙ୍କୁ ଭଲ ପାଆନ୍ତି ?

- ଏମିତି ତ ଅନେକ ପଢ଼ିଛି । ମୋତେ ପର୍ଲ୍ ଏସ୍. ବକ୍ ଭଲ ଲାଗେ । ଟଲଷ୍ଟୟ, ଚେକ୍ଭ, ଆଲେକଜାଣ୍ଡର ଡୁମା—

- ଡୁମା ହେଉଛନ୍ତି କାହ୍ନୁ ମହାନ୍ତିଙ୍କ ପ୍ରିୟ ଔପନ୍ୟାସିକ ।

- ହଁ, ମୋତେ ସେ ବି ଭଲ ଲାଗନ୍ତି । ତାଙ୍କର "ଏମିଲି" ବହିଟା ମୋତେ ଏତେ ପ୍ରଭାବିତ କରିଥିଲା ଯେ ଏକଦା ମୁଁ ସାରା ରାତି ଶୋଇ ପାରିଲି ନାହିଁ ।

ଡକ୍ଟର ପ୍ରତିଭା ରାୟ,
"ଆଖ୍ୟାୟିକା"
ତୁଳସୀପୁର, କଟକ

-ମୋର ସୌଭାଗ୍ୟ ମୋର ଉପନ୍ୟାସ ଚୋର ସୃଷ୍ଟି କରିନାହିଁ-

☐ କିଶୋର ଦିନରୁ ଔପନ୍ୟାସିକ ଭୂପେନ୍ ଗୋସ୍ୱାମୀଙ୍କ ପ୍ରତିଥିଲା ଅସୀମ ଆକର୍ଷଣ । ନିସ୍ତବ୍ଧ ଗର୍ତ୍ତ, କଳା ପୋଷାକ ପରିହିତ ପିସ୍ତଲଧାରୀ ଜଣେ ଅପରିଚିତ, କଳା ରଂଗର କାର୍ ଏସବୁ ଫେଣ୍ଟା ଫେଣ୍ଟି ହୋଇ ଏକ ରହସ୍ୟ ବି ଯୋଡ଼ି ହୋଇଯାଇଥିଲା ସେ ନାମ ସହ । ଲିଙ୍ଗରାଜ ମନ୍ଦିରରୁ କେତେ ପାହୁଣ୍ଡ ଚାଲିବା ପରେ ଶ୍ୟାମା ଶଙ୍କର ମଠ । ସେ ମଠର ପୂଜକ ଭୂପେନ୍ ଗୋସ୍ୱାମୀ । ବାସ୍ତବତା ନିକଟରେ କଳ୍ପନା କିପରି ଲଜ୍ଜିତ ହୁଏ ଏହା ତାର ଏକ ଚରମ ଉଦାହରଣ । ଆଜି ବି ବିସ୍ମୟ ଲାଗେ, ସନ୍ଦେହ ବି ଲାଗେ ଉପନ୍ୟାସ ଜଗତର ରହସ୍ୟ ସମ୍ରାଟ ଭୂପେନ୍ ଗୋସ୍ୱାମୀ ସତେ କ'ଣ ମନ୍ଦିର ପୂଜକ ?

● ୧୯୫୫ ଠାରୁ ଆପଣ ଆରମ୍ଭ କଲେଣି ଲେଖା ଲେଖି, ଏ ଭିତରେ ଆପଣ ଶତାଧିକ ରହସ୍ୟ ଉପନ୍ୟାସ ଲେଖିଛନ୍ତି । ଏହି ରହସ୍ୟ ଉପନ୍ୟାସ ଲେଖିବାର ପ୍ରେରଣା ପାଇଲେ କେଉଁଠୁ ?

● ମୁଁ ଅବଶ୍ୟ ପିଲା ଦିନରୁ ଓଡ଼ିଆ ଡିଟେକ୍‌ଟିଭ ପ୍ରତି ଆସକ୍ତ ଥିଲି । ସେତେବେଳେ ବୀର କିଶୋର ଦାସ, କସ୍ତୁରୀ ଚରଣ ଦାସଙ୍କ ଡ଼ିଟେକ୍‌ଟିଭ ସବୁ ମତେ ଖୁବ୍ ଭଲ ଲାଗୁଥିଲା । ଆହୁରି ଅନେକ ଲେଖକଙ୍କ ରହସ୍ୟ ଉପନ୍ୟାସ ପଢ଼ିଛି, ଭଲ ଲାଗିଛି, ଯାହା ଏବେ ମନେ ପଡ଼ୁନି ।

● ଆପଣ ଯେଉଁ ଏତେ ଗୁଡ଼ିଏ ରହସ୍ୟ ଉପନ୍ୟାସ ଲେଖିଛନ୍ତି ସେ ଗୁଡ଼ିକ ସମାଜକୁ କ'ଣ ପ୍ରଭାବିତ କରୁଛି-ଆନନ୍ଦ ଦେଉଛି ନା ଆଉ କ'ଣ ?

● ଏଥିରେ କ'ଣ ଗୋଟାଏ ଥାଏ ଯାହା ପ୍ରତ୍ୟେକ ପାଠକକୁ ଆକୃଷ୍ଟ କରେ, ତାକୁ ଭାଷାର ଯାଦୁ କହିପାରନ୍ତି କିମ୍ବା ମଣିଷର ସ୍ୱାଭାବିକ ରହସ୍ୟପ୍ରିୟତା କହିପାରନ୍ତି । ପାଠକମାନେ ହିଁ ରହସ୍ୟ ଉପନ୍ୟାସଟିଏ ଦେଖିଲେ ଲୋଭ

ସମ୍ଭରଣ କରିପାରେ ନାହିଁ । ଏଣୁ ବହୁତ ପତ୍ରିକା ରହସ୍ୟ ଉପନ୍ୟାସ କିମ୍ବା ଗଳ୍ପ ଛାପିବା ପାଇଁ ଆଗ୍ରହୀ ।

● ଆପଣ ଇଂରେଜୀର କାହା କାହା ରହସ୍ୟ ଉପନ୍ୟାସ ପଢିଛନ୍ତି ?

● ଜର୍ଜ ଇଲିଅଟ୍, ସେର୍‌ଲକ୍ ହୋମ୍ ଏମିତି କେତେ ଜଣ ।

● ଆପଣ ଡିଟେକ୍‌ଟିଭ ଗଳ୍ପ ଲେଖି ନାହାନ୍ତି ?

● ଲେଖିଛି ।

● ଆପଣ ଏହି ଶ୍ୟାମା ଶଙ୍କର ମଠର ପୂଜକ ଭବରେ ରହିବା କେତେ ଦିନ ହେଲ ?

● ଛଅ ବର୍ଷ ।

● ଏଇଠି ଏହି ମନ୍ଦିରର ପୂଜକ ଭବରେ ରହି ହତ୍ୟା ଚୋରୀ, ଡକାୟତି ଏ ସମ୍ପର୍କରେ ଲେଖିଲ ବେଳେ ଥରେ ଥରେ ମନରେ ଗ୍ଲାନିବୋଧ ହୁଏ କି ?

● ଆମେ ଯାହା ଲେଖୁଛୁ ଲୋକଙ୍କୁ କେତେଟା ସୁବିଧା ହେଉଛି । ପାପ କାମ କଲେ ତା'ର ପରିଣାମ କ'ଣ ହୁଏ ଏଇଟା ସେମାନେ ଜାଣି ପାରୁଛନ୍ତି ।

● ନା, ଠିକ୍ ଏହାର ଓଲଟା ହିଁ ହୁଏ । ରହସ୍ୟ ଉପନ୍ୟାସ ଚୋରୀ କରିବା ପାଇଁ ପ୍ରେରଣା ଦିଏ, କାହିଁକି ନା ଏଥିରେ ପାପ କର୍ମର ବର୍ଣ୍ଣନା ଯେମିତି ସୁଦୀର୍ଘ, ପରିଣାମ ସେହିପରି ସଂକ୍ଷିପ୍ତ । ଚୋର ମରେ, ଡାକୁ ଧରପଡ଼େ କିନ୍ତୁ ତାର ଦୁଃଖର ବର୍ଣ୍ଣନା କମ୍ ଥାଏ ।

● ସେ ତ ବୁଝିପାରେ ନା ତା'ପରେ କ'ଣ ହେବ, ଏଣୁ ସେଗୁଡ଼ିକ କମ୍ ଥାଏ ।

● ଆପଣ କ'ଣ ଏମିତି କିଛି ଲେଖିଛନ୍ତି, ଚୋରମାନେ ଦଣ୍ଡ ପାଉଛନ୍ତି, ଫଳରେ ତାଙ୍କର ମନ ପରିବର୍ତ୍ତନ ଘଟୁଛି ?

● ହଁ, ଲେଖିଛି । ବହୁତ ଗୁଡ଼ିଏ ବହିରେ ସେ ବିଷୟଟି ଲେଖିଛି । ଏମିତିକି "ଯୋଗାସନ" ନାମରେ ଖଣ୍ଡିଏ ଧର୍ମ ପୁସ୍ତକ ବି ଲେଖିଛି ।

● ଖଣ୍ଡେ ଦୁଇ ଖଣ୍ଡ ସେମିତି ରହସ୍ୟ ଉପନ୍ୟାସର ନାମ କହିବେ କି ?

● ନା, ମନେ ନାହିଁ । ଥରେ ଲେଖିଲା ପରେ– ବହୁ ଗୁଡାଏ ଲେଖିଛି ତ ତେଣୁ ନା' ଗୁଡାକ ଭୁଲି ହୋଇଯାଏ ।

● ଇଂରାଜୀରେ କେତେ ଗୁଡ଼ିଏ ରହସ୍ୟ ଉପନ୍ୟାସ ସମ୍ପର୍କରେ ଶୁଣାଯାଏ ତାହା ପଢି ଓ ଅନୁପ୍ରାଣିତ ହୋଇ କିଛି ଲୋକ ଚୋରୀ ଡକାୟତି ଇତ୍ୟାଦି କରିଥାନ୍ତି, ଯାହା କି ସେମାନେ କୋର୍ଟରେ ବି ସ୍ୱୀକାର କରନ୍ତି । ଆପଣଙ୍କ କ୍ଷେତ୍ରରେ ଏମିତି କିଛି ଘଟିଛି କି ?

● ନା, ମୋର ସୌଭାଗ୍ୟ ମୋର ଉପନ୍ୟାସ ଚୋର ସୃଷ୍ଟି କରିନାହିଁ ।

ଭୂପେନ୍ଦ୍ର ଗୋସ୍ୱାମୀ

ଶ୍ୟାମା ଶଙ୍କର ମଠ, ପୁରୁଣା ଭୁବନେଶ୍ୱର

# ଅଲୌକିକ ଦର୍ପଣ

ରାଜକୁମାରୀର ଅଲୌକିକ ଦର୍ପଣରେ ଦିଶେ ସବୁ କିଛି, କେବଳ ଦିଶେନି ନିଜର ପାଦତଳ । ଉପନ୍ୟାସ ସେମିତି ଏକ ଦର୍ପଣ ନୁହେଁ; ଅନ୍ୟ ଏକ ଅଲୌକିକ ଦର୍ପଣ ।

ବିସ୍ତୃତ ଜୀବନର, ବିଚିତ୍ର ମଣିଷର, ଅସରନ୍ତି ସମୟ ଓ ବିପୁଳ ପୃଥିବୀର ସବୁ କିଛିକୁ ଯୋଡ଼ି ଯୋଡ଼ି ନୂଆ ଏକ ରୂପରେ, ଗୋଟିଏ ଆଧାରରେ ଦେଖାଏ ଉପନ୍ୟାସ । ଏଣୁ ଉପନ୍ୟାସର ଘଟଣା, ଚରିତ୍ର ଓ ସମୟ ଯେତିକି ଅପରିଚିତ ଲାଗେ ଆମକୁ, ତତୋଧିକ ପରିଚିତ ।